# ଜଗନ୍ନାଥ ଧାମକୁ ତୀର୍ଥଯାତ୍ରା

(ମୂଳ ଲେଖାର ସମୟ- ୧୮୬୮)

ଲେଖକ:
ଡାଭିଡ୍.ବି.ସ୍ମିଥ୍

ଅନୁବାଦକ:
ବଟକୃଷ୍ଣ ତ୍ରିପାଠୀ

ଏସ୍‌ବି ପବ୍ଲିକେଶନ୍‌ସ
ବିନୋଦ ବିହାରୀ, କଟକ-୭୫୩୦୦୨

# ଜଗନ୍ନାଥ ଧାମକୁ ତୀର୍ଥଯାତ୍ରା

(ମୂଳ ଲେଖାର ସମୟ- ୧୮୬୮)

ଲେଖକ:

ଡାଭିଡ୍. ବି. ସ୍ମିଥ୍

ଅନୁବାଦକ:

ବଟକୃଷ୍ଣ ତ୍ରିପାଠୀ

ପ୍ରକାଶକ:
ନଳିନୀ କାନ୍ତ ନନ୍ଦ
ଏସ୍‌ବି ପବ୍ଲିକେଶନ୍ସ
ବିନୋଦ ବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ- ୨୦୧୭

ମୂଲ୍ୟ- ୭୫.୦୦

---

# JAGANNATH DHAMAKU TIRTHAJATRA

written by :

**David. B. Smith**

Translation :

**Batakrushna Tripathy**

Published by :

**Nalini Kanta Nanda**

**SB PUBLICATIONS**

Binod Behari, Cuttack- 753002

D.T.P

**SB GRAPHICS**

**Price- Rs. 75.00**

**ISBN 81 7404 166 4**   **1st Edition- 2017**

# ଲେଖକଙ୍କ ସମ୍ପର୍କରେ.....

ଡକ୍ଟର ଡାଭିଡ୍ ବି. ସ୍ମିଥ୍-ଏମ୍‌ଡ଼ି ୧୮୬୮ ମସିହାରେ, ବେଙ୍ଗାଲ ସରକାରଙ୍କର ସାନିଟାରୀ କମିଶନର ଥିଲେ । ୧୮୬୬ ମସିହା, ନ'ଅଙ୍କ ଦୁର୍ଭିକ୍ଷ, ଓଡ଼ିଶାକୁ ସମଗ୍ର ବ୍ରିଟିଶ ସାମ୍ରାଜ୍ୟରେ ପରିଚିତ କରିଥିଲା । ଇଂରେଜ ସରକାର, ଠିକ୍ ସମୟରେ ଦୁର୍ଭିକ୍ଷ ଦାଉରୁ, ଓଡ଼ିଶାବାସୀଙ୍କୁ ସୁରକ୍ଷା ଦେବାରେ ବିଫଳ ହେବାରେ, ରାଜ୍ୟର ପ୍ରାୟ ଏକତୃତୀୟାଂଶ ଲୋକ (ଦଶଲକ୍ଷ) ମୃତ୍ୟୁବରଣ କରିଥିଲେ ଏବଂ ଶହ ଶହ ଲୋକ ନାପତା ହୋଇ ଯାଇଥିଲେ । ନ'ଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ସାମାଜିକ, ଅର୍ଥନୈତିକ ମେରୁଦଣ୍ଡକୁ ଭାଙ୍ଗି ଦେଇଥିଲା । ୧୮୬୭ ମସିହା ରଥଯାତ୍ରା ବେଳକୁ, ପୁରୀକୁ ତୀର୍ଥଯାତ୍ରୀ ମାନଙ୍କ ଆସିବା ଉପରେ କଟକଣା ସରକାର ଲଗାଇଥିଲେ । ସେହି ବର୍ଷ, ସରକାରୀ କଟକଣା ସତ୍ତ୍ୱେ ବହୁ କମ୍ ତୀର୍ଥଯାତ୍ରୀ, ରଥଯାତ୍ରା ସମୟରେ ପୁରୀ ସହରକୁ ଆସିଥିଲେ । ୧୮୬୭ ମସିହାରେ ରଥଯାତ୍ରା ଏବଂ ବାହୁଡ଼ା ଯାତ୍ରା ସମୟରେ ପୁରୀ ସହରରେ ଏବଂ ଯାତ୍ରା ପରବର୍ତ୍ତୀ ଫେରିବା ବାଟରେ ବହୁ ଯାତ୍ରୀ ହଇଜାରେ ମୃତ୍ୟୁବରଣ କରିଥିଲେ । ୧୮୬୮ ମସିହାରେ, ବେଙ୍ଗାଲ ସରକାରଙ୍କ ସାନିଟାରୀ କମିଶନର ଡକ୍ଟର ସ୍ମିଥ୍, ରଥଯାତ୍ରା ବେଳେ ପୁରୀ ସହର, ଏହାର ଆଖପାଖ ଅଞ୍ଚଳରେ ଆସିବା ଏବଂ ଫେରିବା ବାଟରେ ହଇଜା ବ୍ୟାପିବା ଏବଂ ଏହାର କାରଣ ସମ୍ପର୍କରେ ତଥ୍ୟ ଭିତ୍ତିକ ରିପୋର୍ଟ ପ୍ରସ୍ତୁତ କରିବା ସଙ୍ଗେ ପୁରୀ ସହର 'ସ୍ୱଚ୍ଛତା'- ସାନିଟାରୀ ବ୍ୟବସ୍ଥାକୁ ନିରିକ୍ଷଣ କରିବା ପାଇଁ ପୁରୀ ଆସିଥିଲେ । ସେ ବର୍ଷ ଜୁନ୍ ୨୩ ତାରିଖରେ ଶ୍ରୀଗୁଣ୍ଡିଚା ପଡ଼ିଥିଲା । ଶ୍ରୀଗୁଣ୍ଡିଚା ପୂର୍ବରୁ, ପୁରୀ ସହରରେ ପହଞ୍ଚିବା ପାଇଁ ଜୁନ୍ ମାସ ୧୧ ତାରିଖ ଦିନ ଷ୍ଟିମର ଯୋଗେ କଲିକତାରୁ ଫଲ୍‌ସ ପଏଣ୍ଟ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ, ମାତ୍ର ଦକ୍ଷିଣ-ପଶ୍ଚିମ ସାମୁଦ୍ରିକ ଝଡ଼ ଯୋଗୁ ତାଙ୍କ ଷ୍ଟିମର ମଡ଼ ପଏଣ୍ଟ ଠାରେ ଲଙ୍ଗର ପକାଇ ପାଞ୍ଚଦିନ ପର୍ଯ୍ୟନ୍ତ ରହିବାକୁ ବାଧ୍ୟ ହୋଇଥିଲା । ଦୀର୍ଘ ୬ ଦିନ ସମୁଦ୍ର ଯାତ୍ରା ପରେ ଜୁନ୍ ୧୮ ତାରିଖ ଦିନ ଅପରାହ୍ଣରେ ତାଙ୍କ ଷ୍ଟିମର ଫଲ୍‌ସ ପଏଣ୍ଟ ନିକଟରେ ପହଞ୍ଚି ଥିଲା । ଫଲ୍‌ସ ପଏଣ୍ଟ ନିକଟରେ ଲଙ୍ଗର ପକାଇବା ସ୍ଥାନରୁ ବହୁ ଦୂର ପର୍ଯ୍ୟନ୍ତ ସମୁଦ୍ର ପାଣି ଗୋଳିଆ ଦିଶୁଥିଲା ଯାହାକି ମହାନଦୀ ଅବବାହିକାରେ ପ୍ରବଳ ବର୍ଷା ଏବଂ ବନ୍ୟାର ସୂଚନା ଦେଇଥିଲା ।

୧୯ ତାରିଖ ସୂର୍ଯ୍ୟୋଦୟ ପୂର୍ବରୁ ଷ୍ଟିମର ସଙ୍ଗେ ଆସିଥିବା ଗୋଟିଏ ଡଙ୍ଗାରେ, ସେ କଟକ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ । ଡଙ୍ଗାରେ ଚାରିଘଣ୍ଟା କାଳ ଯାତ୍ରା କଲା ପରେ, ଡକ୍ଟର ସ୍ମିଥ୍, ତାଳଦଣ୍ଡା କେନାଲ ଦେଇ, କଟକ ଯିବାପାଇଁ ଗୋଟିଏ ଛୋଟ ଡଙ୍ଗାର ବ୍ୟବସ୍ଥା ହୋଇଥିଲା । ସେତେବେଳେ ମହାନଦୀରେ ପ୍ରବଳ ବନ୍ୟା । ତାଙ୍କ

ଡଙ୍ଗା ସ୍ରୋତର ବିପରୀତ ଦିଗରେ ଅତ୍ୟନ୍ତ ମନ୍ଥର ଗତିରେ ଯାତ୍ରା କରିଥିଲା । ଡଙ୍ଗାରେ ବସି ଗଲାବେଳେ, ଡକ୍ଟର ସ୍ମିଥ୍‌ଙ୍କ ମହାନଦୀ ବନ୍ୟାଜଳ ନିୟନ୍ତ୍ରଣକୁ ନେଇ ଯାହା ସେତେବେଳେ ଚିନ୍ତା କରିଥିଲେ ସ୍ୱାଧୀନତା ପରେ, ହୀରାକୁଦ ବହୁମୁଖୀ ବନ୍ଧ ଯୋଜନା ହେବାରେ ତାହା ପୂରଣ ହୋଇଥିଲା । ତାଳଦଣ୍ଡା କେନାଲରେ, ଆସିବାବେଳେ ସେ କେତେକ କେନାଲ କୂଳ ଗ୍ରାମ ନିକଟରେ ରାତ୍ରିଯାପନ କରିଥିଲେ । ଗ୍ରାମବାସୀଙ୍କ ସ୍ୱାସ୍ଥ୍ୟ, ଆର୍ଥିକାବସ୍ଥା, ଆତିଥ୍ୟ ସମ୍ପର୍କରେ ଯେଉଁ ମତାମତ ଦେଇଛନ୍ତି, ତାହା ସେ ସମୟର ସାମାଜିକ, ଆର୍ଥିକ ଅବସ୍ଥା ସମ୍ପର୍କରେ ମଧ୍ୟ ଉଲ୍ଲେଖ କରିଛନ୍ତି । ତାଳଦଣ୍ଡା କେନାଲ ଦେଇ, ୨୨ ତାରିଖ ଦିନ ୧୦ଟା ସମୟରେ ସେ କଟକର ଯୋବ୍ରା ଠାରେ ପହଞ୍ଚିଥିଲେ । ତାଙ୍କୁ ତତ୍‌କାଳୀନ ଓଡ଼ିଶା କମିଶନର ରେଭେନ୍ସା ପାଛୋଟି ନେବାକୁ ଆସିଥିଲେ । ସେ, ମାତ୍ର ଅଳ୍ପ ସମୟ ପାଇଁ ରେଭେନ୍ସାଙ୍କ ସରକାରୀ ବାସଭବନରେ ରହି, ଶଗଡ଼ ଯୋଗେ ପୁରୀ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ । ଫଲ୍‌ସ ପଏଣ୍ଟରୁ କଟକରେ ପହଞ୍ଚିବାକୁ, ତାଙ୍କୁ ପ୍ରାୟ ଚାରି ଦିନ ଲାଗି ଯାଇଥିଲା । କଟକରୁ ଶଗଡ଼ ଗାଡ଼ିରେ ଯାଇ ପୁରୀରେ ପହଞ୍ଚି ଥିଲେ ଜୁନ୍ ୨୩ ତାରିଖ ଅର୍ଦ୍ଧରାତ୍ରିରେ । ସେ ଦିନ ରଥଯାତ୍ରା ଥିବା ଯୋଗୁ ଶ୍ରୀଜୀଉମାନେ ପହଣ୍ଡି ହୋଇ ରଥ ଉପରେ ବସି ସାରିଥାନ୍ତି । କୌଣସି କାରଣରୁ ରଥଟଣା ହୋଇ ନପାରି, ସିଂହଦ୍ୱାର ସାମ୍ନାରେ ତିନିରଥ ରହିଥାଏ । ସହରର ମୁଖ୍ୟ ରାସ୍ତା, ବଡ଼ଦାଣ୍ଡ ଦେଇ ସିଂହଦ୍ୱାର ପର୍ଯ୍ୟନ୍ତ ଯିବା ବାଟରେ, ହଜାର ହଜାର ତୀର୍ଥଯାତ୍ରୀ ବଡ଼ଦାଣ୍ଡର ଦୁଇ କଡ଼ରେ ମୁକ୍ତ ଆକାଶ ତଳେ ନିଘୋଡ଼ ନିଦରେ ଶୋଇ ଯାଇଥିବା ଦୃଶ୍ୟ ତାଙ୍କ ମନରେ ବିଶେଷ ପ୍ରଭାବ ପକାଇଥିଲା । ତାରକା ଖଚିତ ଆକାଶରେ ଫିକା ଆଲୁଅରେ ବଡ଼ଦାଣ୍ଡ ଉପରେ ଶୋଇ ଯାଇଥିବା ଯାତ୍ରୀ, ବଡ଼ଦାଣ୍ଡ ଉପରେ ସୁସଜ୍ଜିତ ୩ ରଥ, ଫିକା ଆଲୁଅରେ ଦୃଶ୍ୟମାନ ଶ୍ରୀମନ୍ଦିର, ତାଙ୍କ ମନରେ ଏକ ଅପୂର୍ବ ଆନନ୍ଦ ଖେଳେଇ ଦେଇଥିଲା । ଦୀର୍ଘ ସମୟ ଧରି କଟକରୁ ପୁରୀକୁ ଶଗଡ଼ରେ ଆସିବା କ୍ଳାନ୍ତକୁ ସେ ଭୁଲି ଯାଇ ବିମୁଗ୍ଧ ନୟନରେ ରଥାରୂଢ଼ ଶ୍ରୀଜୀଉଙ୍କ ଆଡ଼ ଚାହିଁ ରହି ଭାବିଥିଲେ ଶ୍ରୀଜଗନ୍ନାଥଙ୍କ ପ୍ରତି ହିନ୍ଦୁମାନଙ୍କର କିପ୍ରକାର ଆକର୍ଷଣ । ଶ୍ରୀଜୀଉମାନଙ୍କ ପହଣ୍ଡି ଦେଖିବାର ସୁଯୋଗ ପାଇ ନଥିଲେ ମଧ୍ୟ ପରଦିନ ପୁରୀ ଜିଲ୍ଲାପାଳଙ୍କ ସହ ରଥଟଣା ଦେଖିବାର ସୁଯୋଗ ପାଇଥିଲେ ।

ପୁରୀରେ ରହଣିକାଳ ମଧ୍ୟରେ, ଡକ୍ଟର ସ୍ମିଥ୍ ତାଙ୍କ ପୂର୍ବରୁ ଯେଉଁ ଖ୍ରୀଷ୍ଟିୟାନ ପର୍ଯ୍ୟଟକମାନେ ପୁରୀକୁ ରଥଯାତ୍ରା ସମୟରେ ଆସି ରଥ ଚକ ତଳେ ପଡ଼ି ମୃତ୍ୟୁବରଣ କରିଥିବା ସମ୍ପର୍କରେ ବର୍ଣ୍ଣନା କରୁଥିଲେ ଓ ଯାତ୍ରୀମାନଙ୍କ ସଂଖ୍ୟା ଦେଇଥିଲେ ତାକୁ ସେ ଖଣ୍ଡନ କରିଥିଲେ । ୧୮୧୬ ମସିହାରୁ, ୧୮୩୮ ମସିହା ପର୍ଯ୍ୟନ୍ତ କେତେ ଯାତ୍ରୀ ରଥଯାତ୍ରା ସମୟରେ ପୁରୀ ସହରକୁ ଆସିଥିଲେ, ତା'ର ଏକ ଲିଷ୍ଟ୍ ପ୍ରସ୍ତୁତ କରିଥିଲେ । ତାଙ୍କ ରିପୋର୍ଟରେ ଦର୍ଶାଇଥିଲେ ଯେ, ୧୮୬୫ ମସିହାରେ ପୁରୀକୁ ମାତ୍ର ୪୫୦୦୦ ଯାତ୍ରୀ ଆସିଥିଲେ ଏବଂ ସେମାନଙ୍କ ମଧ୍ୟରୁ ୩୧୦୦୦ ହେଉଛନ୍ତି ବଙ୍ଗାଳୀ ଯାତ୍ରୀ । ସେ

ମଧ୍ୟ ଉଲ୍ଲେଖ କରିଛନ୍ତି, ପ୍ରତ୍ୟେକ ୪୦ ଜଣ ଯାତ୍ରୀଙ୍କ ମଧ୍ୟରୁ ୩୯ ଜଣ ହେଉଛନ୍ତି ବଙ୍ଗାଳୀ ମହିଳା । ଏତେ ସଂଖ୍ୟାରେ ମହିଳା, ବଙ୍ଗଳାରୁ ଦୀର୍ଘଦିନ ଧରି ଚାଲି ଚାଲି ପୁରୀ ଆସିବା ନିଶ୍ଚିତ ଭାବେ ଜଗନ୍ନାଥଙ୍କ ପ୍ରତି ପ୍ରଗାଢ଼ ଭକ୍ତିକୁ ସୂଚାଇ ଦିଏ । ୧୮୬୬ ମସିହାରେ, ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ପଡ଼ିଲା । ଏହି ପ୍ରଳୟଙ୍କାରୀ ଦୁର୍ଭିକ୍ଷରେ ରାଜ୍ୟର ଏକତୃତୀୟାଂଶ ଲୋକ ମୃତ୍ୟୁବରଣ କରିଥିଲେ । ସେହି ବର୍ଷ ରଥଯାତ୍ରାକୁ ଅଧିକ ସଂଖ୍ୟକ ଯାତ୍ରୀ ନଆସିବା ପାଇଁ ସରକାରଙ୍କ ପକ୍ଷରୁ ସତର୍କ କରାଇ ଦିଅଯାଇଥିଲା । ତେଣୁ ରଥବେଳକୁ ବହୁ କମ୍ ଯାତ୍ରୀ ପୁରୀକୁ ଆସିଥିଲେ । ଯାତ୍ରୀ ସଂଖ୍ୟା ବହୁଳ ଭାବେ କମିବାରେ ରଥଟଣାକୁ ନେଇ ଆଶଙ୍କା ଦେଖା ଯାଇଥିଲା । ଡକ୍ଟର ସ୍ମିଥ୍ ରଥଯାତ୍ରା ସମୟରେ ପୁରୀକୁ ଆସିଥିବା ୧୮୪୨ରୁ ୧୮୬୮ ପର୍ଯ୍ୟନ୍ତ ପ୍ରତ୍ୟେକ ବର୍ଷ କେତେ ଯାତ୍ରୀ ହଇଜାରେ ଆକ୍ରାନ୍ତ ହୋଇ ପୁରୀ ସହର ଏବଂ ସହରକୁ ରଥଯାତ୍ରା ପରେ ଗଲା ବାଟରେ ମୃତ୍ୟୁବରଣ କରିଥିଲେ ସେ ସମ୍ପର୍କରେ ତଥ୍ୟ ରଖିଛନ୍ତି ଯାହାକି ଆଜିର ପାଠକମାନଙ୍କ ପାଇଁ ଏକ 'ଇତିହାସ' । କେବଳ ତଥ୍ୟ ରଖି ନାହାନ୍ତି, କେଉଁ କାରଣ ଯୋଗୁ ଯାତ୍ରୀମାନେ ହଇଜା ରୋଗରେ ପଡ଼ିଥିଲେ ଏବଂ ପୁରୀ ସହର ଓ ରାସ୍ତାରେ ଚିକିତ୍ସା ପାଇଁ କିପ୍ରକାର ବ୍ୟବସ୍ଥା ଥିଲା, ସେ ସମ୍ପର୍କରେ ମଧ୍ୟ ବର୍ଣ୍ଣନା କରିଛନ୍ତି । ପୁରୀ ସହର ସ୍ୱଚ୍ଛତା ସମ୍ପର୍କରେ ସ୍ମିଥ୍ ତାଙ୍କ ପୁସ୍ତକରେ ଯେଉଁ ସୂଚନା ପ୍ରଦାନ କରିଛନ୍ତି, ୧୫୦ ବର୍ଷ ପରେ ମଧ୍ୟ ସ୍ୱଚ୍ଛତାକୁ ନେଇ ପୁରୀ ସହରରେ ସେପରି କିଛି ଉନ୍ନତି ହୋଇନାହିଁ । ୧୫୦ ବର୍ଷ ତଳେ ସେ ଉଲ୍ଲେଖ କରିଥିଲେ 'ହିନ୍ଦୁ ଯାତ୍ରୀମାନେ ବିଶ୍ୱାସ କରନ୍ତି, ନରେନ୍ଦ୍ର ପୁଷ୍କରିଣୀର ଜଳ ଅମୃତ ସଦୃଶ । ଯେ ଏହି ପୁଷ୍କରିଣୀର ଜଳ ପାନ କରନ୍ତି, ସେମାନଙ୍କର ସ୍ୱର୍ଗପ୍ରାପ୍ତି ହୁଏ । ନରେନ୍ଦ୍ର ପୁଷ୍କରିଣୀର ଜଳକୁ ମୁଁ ପରୀକ୍ଷା କରିବାରେ ଜାଣିଲି, ପ୍ରକୃତରେ ଏହି ପୁଷ୍କରିଣୀରୁ ଏକ ଗ୍ଲାସ ଜଳ ଯେ ପାନ କରିବେ, ତା'ର ସ୍ୱର୍ଗପ୍ରାପ୍ତି ହେବ । ସେ କହିଥିଲେ, ପୁଷ୍କରିଣୀର ଜଳ ଏତେ ପରିମାଣରେ ପ୍ରଦୂଷିତ ଯେ, ପାନ କରିବା ସ୍ୱାସ୍ଥ୍ୟ ପକ୍ଷେ ଅତ୍ୟନ୍ତ କ୍ଷତିକାରକ ।' ୧୫୦ ବର୍ଷ ବିତି ଯାଇଥିଲେ ମଧ୍ୟ ନରେନ୍ଦ୍ର ପୁଷ୍କରିଣୀକୁ ପ୍ରଦୂଷଣ ମୁକ୍ତ କରିବାକୁ କିଛି ବ୍ୟବସ୍ଥା ହୋଇ ପାରିଲା ନାହିଁ । ପୁରୀ ସହର ଗଳିକନ୍ଦିର ସ୍ୱଚ୍ଛତା ସମ୍ପର୍କରେ ସେ ଯାହା ବର୍ଣ୍ଣନା କରିଥିଲେ, ଏବେବି ସେଥିରେ ବିଶେଷ କିଛି ଉନ୍ନତି ଘଟିନାହିଁ । ଡକ୍ଟର ସ୍ମିଥ୍- ତାଙ୍କ ପୁସ୍ତକରେ ପୁରୀ ସହର ସମ୍ପର୍କରେ ଯେଉଁ ତଥ୍ୟ ଦେଇଛନ୍ତି ଏବଂ ଉନ୍ନତି କଳ୍ପେ ଯେଉଁ ପ୍ରସ୍ତାବ ଦେଇ ଯାଇଛନ୍ତି ତାହା ଆଜି ମଧ୍ୟ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ଉଚିତ୍ ।

ପୁରୀ ସହରରେ ସେ ତତ୍କାଳୀନ ପୁରୀ ଜିଲ୍ଲାପାଳଙ୍କ ଅତିଥି ଭାବେ ରହିଥିଲେ ଏବଂ ତାଙ୍କ ସଙ୍ଗେ ଘୋଡ଼ା ଗାଡ଼ିରେ ବୁଲି ସହର ପରିକ୍ରମା କରିଥିଲେ, ନିଜ ଆଖିରେ ସହରର ବାସିନ୍ଦା, ଯାତ୍ରୀମାନଙ୍କ ରହଣିକାଳର ଦୂରାବସ୍ଥା, ପଣ୍ଡା ପଢ଼ିଆରୀମାନଙ୍କ ଯାତ୍ରୀମାନଙ୍କ ପ୍ରତି ବ୍ୟବହାର, ସହରର ଐତିହାସିକ ସ୍ଥାନ, ମନ୍ଦିର, ପୁଷ୍କରିଣୀ ସମ୍ପର୍କରେ

ମଧ୍ୟ ବିଶଦ ଭାବେ ବର୍ଣ୍ଣନା କରିଛନ୍ତି । ୧୫୦ ବର୍ଷ ତଳେ ପୁରୀ, ସହରର ଅବସ୍ଥା ଏବଂ ବର୍ତ୍ତମାନର ଅବସ୍ଥାକୁ ପାଠକ, ତାଙ୍କ ରଚିତ ଏହି ପୁସ୍ତକ ପାଠ କଲେ ଜାଣିପାରିବେ ଯେ, ଦେଢ଼ ଶହ ବର୍ଷ ମଧ୍ୟରେ ସହରର ଉନ୍ନତି, ସ୍ୱଚ୍ଛତା, ଯାତ୍ରୀମାନଙ୍କର ରହଣି ଏବଂ ପଣ୍ଡା ପଢ଼ିଆରୀମାନଙ୍କ ବ୍ୟବହାରରେ ଦେଢ଼ଶହ ବର୍ଷ ମଧ୍ୟରେ ସହରର ପରିମଳ ବ୍ୟବସ୍ଥା, ଯାତ୍ରୀମାନଙ୍କ ରହଣି ଏବଂ ସେବାୟତମାନଙ୍କ ବ୍ୟବହାରରେ କେତେ ପରିବର୍ତ୍ତନ ଆସିଛି । ପୁରୀରୁ ଫେରିବା ବାଟରେ (ଶଗଡ଼ରେ) ସେ ପିପିଲି, ଭୁବନେଶ୍ୱର, କଟକ, ଯାଜପୁର, ଭଦ୍ରକ, ବାଲେଶ୍ୱର ଦେଇ ମେଦିନାପୁର ଯାଇଥିଲେ । ମେଦିନାପୁରରୁ ସେ କଲିକତା ଆସିଥିଲେ । ଫେରିଲା ବାଟରେ ଡକ୍ଟର ସ୍ମିଥ୍ ଉପରୋକ୍ତ ସ୍ଥାନ ମାନଙ୍କରେ କିଛି ସମୟ କଟାଇ, ସେଠାକାର ପରିମଳ ଅବସ୍ଥା, ଡାକ୍ତରଖାନାମାନଙ୍କର ଅବସ୍ଥା, ପିପିଲି, କଟକ ଏବଂ ବାଲେଶ୍ୱର ଠାରେ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କ ଦ୍ୱାରା ପରିଚାଳିତ 'ଅରଫାନେଜ' ମାନଙ୍କରେ ପିତୃମାତୃହୀନ ପିଲାମାନଙ୍କ ସ୍ୱାସ୍ଥ୍ୟ, ଶିକ୍ଷା ଖାଦ୍ୟ ଓ ଅରଫାନେଜ୍ ପରିଚାଳନା ସମ୍ପର୍କରେ ମଧ୍ୟ ତଥ୍ୟ ପ୍ରଦାନ କରିଛନ୍ତି । ୧୮୬୬ ପ୍ରଳୟଙ୍କରୀ ଦୁର୍ଭିକ୍ଷ ସମୟରେ ବହୁ ଶିଶୁ ଅନାଥ ହୋଇ ଯାଇଥିଲେ । ଖ୍ରୀଷ୍ଟିୟାନ ମିସନାରୀମାନେ ସେମାନଙ୍କୁ ଆଣି ଏହି ଅନାଥାଶ୍ରମମାନଙ୍କରେ ରଖି ସେମାନଙ୍କୁ ଲାଳନ ପାଳନ, ଶିକ୍ଷା ଏବଂ ବହୁ କ୍ଷେତ୍ରରେ କର୍ମ ନିଯୁକ୍ତିର ବ୍ୟବସ୍ଥା କରିଥିଲେ । ପିପିଲି, କଟକରେ ଥିବା ଅନାଥାଶ୍ରମ, ତା'ର ପରିଚାଳନା ଏବଂ ପରିଚାଳକମାନଙ୍କ ସମ୍ପର୍କରେ ମଧ୍ୟ ବିଶେଷ ସୂଚନା ଦେଇଛନ୍ତି । ଆଜି କଟକ, ପିପିଲିରେ ସେହି ମିଶନାରୀ ପରିଚାଳକମାନଙ୍କ ନାମରେ 'ସାହିମାନ' ଅଛି । ଫେରିବା ବାଟରେ କିଛି ସମୟ ପାଇଁ ଡକ୍ଟର ସ୍ମିଥ୍ ଭୁବନେଶ୍ୱର (ପୁରୁଣା ଭୁବନେଶ୍ୱର)ରେ କଟାଇ ଥିଲେ । ବହୁ ପୁରାତନ ମନ୍ଦିର ଏବଂ ବିନ୍ଦୁସାଗର ପୁଷ୍କରିଣୀର ଅବସ୍ଥାକୁ ଦେଖି, ତାଙ୍କ ମନରେ ଯେଉଁ ଆଘାତ ଲାଗିଥିଲା ଦେଢ଼ଶହ ବର୍ଷ ପରେ, ସେଥିରେ କେତେ ଉନ୍ନତି ଘଟିଛି ଆମର ଐତିହ୍ୟକୁ ଆମେ କେତେ ସୁରକ୍ଷିତ ରଖି ପାରିଛେ, ପାଠକେ ତାଙ୍କ ପୁସ୍ତକ ପାଠ କଲେ ବୁଝି ପାରିବେ । ସେ ମଧ୍ୟ ତାଙ୍କ ପୁସ୍ତକରେ ଗୋଟିଏ ଅଧ୍ୟାୟରେ 'ଓଡ଼ିଆ ମାନଙ୍କ ଚରିତ୍ର'କୁ ନେଇ ଲେଖିଛନ୍ତି । ତାଙ୍କ ପୂର୍ବରୁ ଆକବରଙ୍କ ସମୟରେ ତୋଡ଼ରମଲ, ଓଡ଼ିଶା ଗସ୍ତରେ ଆସି ଯେଉଁ ଆଇନ୍-ଇ-ଆକବରୀରେ ଏବଂ ହଣ୍ଟର ସାହେବ ତାଙ୍କ ଓଡ଼ିଆ ଇତିହାସ୍ ପୁସ୍ତକରେ ଯାହା ଓଡ଼ିଆଙ୍କ ଚରିତ୍ରକୁ ନେଇ ଲେଖିଛନ୍ତି, ତାକୁ ବହୁଳ ଭାବେ ଖଣ୍ଡନ କରିଛନ୍ତି ସ୍ମିଥ୍ । ଏହାଛଡ଼ା ଫେରିଲା ବାଟରେ ସେ ପଥପ୍ରାନ୍ତ ବହୁ ବ୍ରାହ୍ମଣ ଶାସନ, ବିଲମାଳ, ପାହାଡ଼, ପର୍ବତ ଦେଖି ଭାବ ବିହ୍ୱଳ ହୋଇ ଓଡ଼ିଶା ପୁରପଲ୍ଲୀର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି ଯାଇଛନ୍ତି ଯାହାକି ସେ ସମୟ ଗ୍ରାମାଞ୍ଚଳର ପରିବେଶକୁ ନେଇ ପାଠକଙ୍କୁ ସମ୍ୟକ ଧାରଣା ଦେବ ।

ଓଡ଼ିଶା ଗସ୍ତରୁ ଫେରିବା ପରେ, ଡକ୍ଟର ସ୍ମିଥ୍ ତାଙ୍କ ଗସ୍ତ ସମୟର ଅନୁଭୂତିକୁ ନେଇ ବେଙ୍ଗାଲ ସରକାରଙ୍କୁ ଏକ ତଥ୍ୟଭିତ୍ତିକ ରିପୋର୍ଟ ପ୍ରଦାନ କରିଥିଲେ । ସେହି

ରିପୋର୍ଟକୁ, କାଲକାଟା ସେଣ୍ଟ୍ରାଲ ପ୍ରେସ୍, ଏକ ପୁସ୍ତକ ଆକାରରେ ଛଅଟି ବିଭାଗରେ ପ୍ରକାଶ କରିଥିଲେ । ଏହି ଛଅଟି ବିଭାଗ ହେଲା-

୧- ପୁରୀ ସହର ପରିମଳ ବ୍ୟବସ୍ଥାକୁ ନେଇ ଏକ ଅନୁଧ୍ୟାନ ଏବଂ ସ୍ୱଚ୍ଛତାର ଉନ୍ନତି ଲାଗି ନିଜର ମତାମତ ।

୩- ଓଡ଼ିଶା ଗସ୍ତ ସମୟରେ, ପୁରୀ ମନ୍ଦିର ଏବଂ ଭୁବନେଶ୍ୱର, ଯାଜପୁର ସମ୍ପର୍କରେ ବର୍ଣ୍ଣନା ସହ ଓଡ଼ିଶାର ଲୋକ ଚରିତ୍ର, ସ୍ୱାସ୍ଥ୍ୟ, ଶିକ୍ଷା ଇତ୍ୟାଦି ସମ୍ପର୍କରେ ମତାମତ ।

୩- ପୁରୀ ଲଜିଂ ହାଉସ୍ ବିଲ୍ ।

୪- ପୁରୀକୁ ଆସୁଥିବା ତୀର୍ଥଯାତ୍ରୀମାନଙ୍କୁ ପଣ୍ଡା ପଡ଼ିଆରୀମାନଙ୍କର ବ୍ୟବହାର ଏବଂ ଯାତ୍ରୀମାନଙ୍କ ନିକଟରୁ ସ୍ୱଚ୍ଛତା ପାଇଁ 'ପିଲିଗ୍ରିମିଜ୍ ସାନିଟାରୀ ଟାକ୍ସ' ବସାଇବା ପାଇଁ ପ୍ରସ୍ତାବ ।

୫- ହଇଜା ଏବଂ ଯାତ୍ରୀ ଓ ଯାତ୍ରାକୁ ନେଇ କ୍ୱାରେଣ୍ଟାଇନ ବ୍ୟବସ୍ଥା ।

୬- ଓଡ଼ିଶା ଦେଇ ଆସୁଥିବା ତୀର୍ଥଯାତ୍ରୀମାନଙ୍କ ପାଇଁ ରାସ୍ତାଘାଟରେ ସୁରକ୍ଷା ଏବଂ ପୁରୀ ସହରରେ ରହିବା ଲାଗି ଉପଯୁକ୍ତ ବ୍ୟବସ୍ଥା ପାଇଁ ଆବଶ୍ୟକୀୟ ଆର୍ଥିକ ବରାଦ ଲାଗି ପ୍ରସ୍ତାବ ।

ସମସ୍ତ ରିପୋର୍ଟଟି ପ୍ରାୟ ୫ ପୃଷ୍ଠାରୁ ଊର୍ଦ୍ଧ୍ୱ । ସେଥି ମଧ୍ୟରୁ ଦ୍ୱିତୀୟ ପାର୍ଟକୁ ଛାଡ଼ିଦେଲେ ଅନ୍ୟ ପାର୍ଟଗୁଡ଼ିକ ତଥ୍ୟଭିତ୍ତିକ ଅନୁଧ୍ୟାନ ଏବଂ ବହୁଳ ଭାବେ ସୁପାରିଶ୍ ହୋଇଥିବା ଯୋଗୁ, ଦ୍ୱିତୀୟ ଅଧ୍ୟାୟଟି ପାଠକମାନଙ୍କ ପାଇଁ ଅଧିକ ପଠନଯୋଗ୍ୟ ହେବ ବୋଲି ସେହି ଅଧ୍ୟାୟକୁ କେବଳ ଅନୁବାଦ କଲି । ଆଶାକରେ ପାଠକମାନେ କ୍ଷମା ଦେବେ ।

ଅନୁବାଦକ

ବଟକୃଷ୍ଣ ତ୍ରିପାଠୀ

ଶ୍ରୀ ବଟକୃଷ୍ଣ ତ୍ରିପାଠୀ

## ପ୍ରଥମ ପରିଚ୍ଛେଦ

# ୧୮୬୮ ମସିହା ରଥଯାତ୍ରା ଉପଲକ୍ଷେ, ଓଡ଼ିଶା ପ୍ରଦେଶ ଦେଇ ଜଗନ୍ନାଥ ଧାମ ଯାତ୍ରା ବିବରଣୀ

ଜୁନ୍ ମାସ ୧୧ ତାରିଖ ଦିନ ଷ୍ଟିମର ଯୋଗେ କଲିକତାରୁ ଏକୁଟିଆ ଫଲ୍‌ସ ପଏଣ୍ଟ୍ ଅଭିମୁଖେ ଯାତ୍ରା ଆରମ୍ଭ କଲି । ଖରାପ ପାଗ ସାଙ୍ଗକୁ ପ୍ରବଳ ବର୍ଷା ଯୋଗୁଁ ତାପମାତ୍ରାରେ ହ୍ରାସ ଦେଖାଦେଇଥିଲା । ଦକ୍ଷିଣ-ପଶ୍ଚିମ ସାମୁଦ୍ରିକ ଝଡ ଏତେ ପ୍ରଖର ଥିଲା ଯେ, ପରଦିନ ଅପରାହ୍ନ ୨ଟା ବେଳକୁ, ଆମ ଷ୍ଟିମର ମଡ୍ ପଏଣ୍ଟ୍ ନିକଟରେ ଲଙ୍ଗର ପକାଇବାକୁ ବାଧ୍ୟ ହେଲା । ଦୀର୍ଘ ପାଞ୍ଚଦିନ କାଳ ଷ୍ଟିମର ଏଇ ସ୍ଥାନରୁ ସମୁଦ୍ର ମଧ୍ୟକୁ ପ୍ରବେଶ କରିବାକୁ ସାହସ କଲାନି । ସାମୁଦ୍ରିକ ଝଡ ସାଙ୍ଗକୁ ପ୍ରବଳ ବର୍ଷା ହେଉଥାଏ । ବର୍ଷା ପବନ କମିବାରୁ ୧୭ ତାରିଖ ଦିନ ଆମେ ପୁଣି ଯାତ୍ରା ଆରମ୍ଭ କଲୁ । ସାଗର ଦୀପ ନିକଟରେ ବହୁ ଛୋଟ ବଡ ଷ୍ଟିମର ଡବଲ ଲଙ୍ଗର ପକାଇ ରହିଥାନ୍ତି । ସେମାନେ ଜାଗା ଛାଡି ନଦୀମୁହାଣ ମଧ୍ୟକୁ ପ୍ରବେଶ କରିବାକୁ ସାହସ କରୁନଥାନ୍ତି । ସେଇଠି ଦେଖିଲି ଦୁଇଟି ଜାହାଜ ସଂପୂର୍ଣ୍ଣ ଭାବେ କ୍ଷତିଗ୍ରସ୍ତ ହୋଇ ଅଚଳ ଅବସ୍ଥାରେ ପଡିଛି, ଆଉ କେତୋଟି ଅଳ୍ପ ଭଙ୍ଗାରୁଜା ଅବସ୍ଥାରେ ଲଙ୍ଗର ପକାଇ ଅପେକ୍ଷା କରିଥାନ୍ତି । ପୂର୍ବ ଚ୍ୟାନେଲ ଦେଇ ଆମ ଷ୍ଟିମର ସମୁଦ୍ର ମଧ୍ୟକୁ ପ୍ରବେଶ କଲା ।

ରିଜ୍ ବୟ ଅତିକ୍ରମ କଲାପରେ, ପାଇଲଟ ସତର୍କ ଘଣ୍ଟି ଦେଇ ଯାତ୍ରା ଆରମ୍ଭ କଲେ । ଜୁନ୍ ୧୮ ତାରିଖ, ଦିନ ୩ଟା ସମୟରେ ଷ୍ଟିମର ଫଲ୍‌ସ ପଏଣ୍ଟ୍ ନିକଟରେ ପହଞ୍ଚି ଥିଲା । ଫଲ୍‌ସ ପଏଣ୍ଟ୍ ନିକଟରେ ଲଙ୍ଗର ପକାଇ ଥିବା ସ୍ଥାନକୁ ବହୁ ଦୂର ପର୍ଯ୍ୟନ୍ତ ସମୁଦ୍ର ପାଣି ଗୋଳିଆ ଦିଶୁଥାଏ । ସେଇଥିରୁ ଜଣାପଡୁଥିଲା, ମହାନଦୀ ଅବବାହିକାରେ କେତେ ପରିମାଣରେ ଏଥିମଧ୍ୟରେ ବର୍ଷା ହୋଇଛି ।

୧୯ ତାରିଖ ସୂର୍ଯ୍ୟୋଦୟ ପୂର୍ବରୁ କ୍ୟାପ୍‌ଟେନ୍ ପିୟରସନ୍ ଷ୍ଟିମର ସହିତ ଆସିଥିବା ଗୋଟିଏ ଡଙ୍ଗା ଦେବାରେ ମୁଁ କଟକ ଅଭିମୁଖେ ବାହାରିଲି । ଏଇ ଡଙ୍ଗାରେ ଚାରିଘଣ୍ଟା କାଳ ଯାତ୍ରା କଲାପରେ ମୁଁ ତାଳଦଣ୍ଡା କେନାଲ ଦେଇ ଯିବା ପାଇଁ ଆଉ ଗୋଟିଏ ଛୋଟ ଡଙ୍ଗାର ବ୍ୟବସ୍ଥା କରାଯାଇଥିଲା ।

ମହାନଦୀରେ ପ୍ରବଳ ବନ୍ୟା ଆସିଥିବା ଯୋଗୁଁ ଏହାର ଦୁଇ କୂଳ ବନ୍ୟା ଜଳରେ ସମ୍ପୂର୍ଣ୍ଣ ବୁଡି ଯାଇଥାଏ । ଏପରିକି ବଡ ବଡ ଗଛମାନ ଅଧା ପର୍ଯ୍ୟନ୍ତ ବୁଡି ଯାଇଥାନ୍ତି । ନଦୀରେ ପ୍ରବଳ ସୁଅର ବିପରୀତ ଦିଗରେ ଆମ ଡଙ୍ଗା ଯାଉଥିବା ଯୋଗୁଁ ଡଙ୍ଗାର ଗତି

ଶିଥିଳ ଥାଏ । ଏପରିକି ବହୁ ଜାଗାରେ କାତ ମାରି, କେତେବେଳେ କେମିତି ଗଛ ଡାଳକୁ ଧରି ଆମ ଡଙ୍ଗା ଖୁବ୍ ମନ୍ଥରେ ଗତିରେ ନଦୀ ଧାର ଦେଇ ଆଗକୁ ଆଗକୁ ଚାଲିଥାଏ ।

ମହାନଦୀ ବକ୍ଷରେ ପ୍ରବଳ ବନ୍ୟାଜଳ, ଏହାର ଦୁଇ କୂଳ ଘଞ୍ଚ ଜଙ୍ଗଲର ସବୁଜିମା ଦୃଶ୍ୟ ଅତ୍ୟନ୍ତ ମନୋରମ ଦେଖାଯାଉଥାଏ । ନଦୀରେ ଗଲାବେଳେ ମୋତେ ଲାଗୁଥିଲା, ଆଫ୍ରିକା ମହାଦେଶର କୌଣସି ଏକ ନଦୀଗର୍ଭ ଦେଇ ଆମ ଛୋଟ ନୌକାଟି ଆସ୍ତେ ଆସ୍ତେ ଗତି କରୁଛି । ନଦୀର ଦୁଇ କୂଳର ଘଞ୍ଚ ସବୁଜିମା, ପତ୍ର ବହୁଳ ଗଛର ଡାଳ ପାଣିରେ ବୁଡ଼ି ରହି ଏକ ବିରାଟ ସନ୍ତସନ୍ତିଆ ଅଞ୍ଚଳ ପରି ଦିଶୁଥାଏ । ଚତୁଃପାର୍ଶ୍ୱରେ ନିଷ୍ଠୁର ନିରବତା । ମଝିରେ ମଝିରେ ମାଛରଙ୍କା ଚଢ଼େଇଙ୍କ କର୍ଣ୍ଣଭେଦୀ ରାବ, ଶଙ୍ଖଚିଲମାନଙ୍କର କେଁ କେଁ ଶବ୍ଦ ଦୂର ଦିଗନ୍ତରୁ ଭାସି ଆସୁଥାଏ । ଆଉ କେତେବେଳେ ଅଜଣା ପାଣି ଚଢ଼େଇଙ୍କ ରାବର ପ୍ରତିଧ୍ୱନୀ ନଦୀକୂଳ ଜଙ୍ଗଲ ମଧ୍ୟରୁ କ୍ଷୀଣ ଭାବେ ଶୁଣାଯାଉଥାଏ । ମୁଁ ଡଙ୍ଗାରେ ବସିଥିବା ସ୍ଥାନରୁ ମହାନଦୀର ଉତ୍ପତ୍ତି ସ୍ଥଳ ପ୍ରାୟ ୫୦୦ ମାଇଲ୍ । ଓଡ଼ିଶାର ସର୍ବବୃହତ୍ ନଦୀ ମହାନଦୀର ବନ୍ୟାଜଳ କେତେ ଯେ ପ୍ରବଳ, ବ୍ୟାପକ, ଏଇ କ୍ଷୁଦ୍ର ନୌକାରେ ବସି ଭାବିଲା ବେଳେ ପ୍ରକୃତିର ପ୍ରଚଣ୍ଡତା ଆଗରେ ମାନବର କ୍ଷୁଦ୍ରତା, ମୋ ମାନସପଟରେ ଭାସି ଯାଉଥିଲା । ଦିନେନା ଦିନେ ମହାନଦୀର ବନ୍ୟାଜଳକୁ ନିୟନ୍ତ୍ରଣ କରାଯିବ, ତାହାହିଁ ମୁଁ ଆଜି ଆଶା କରୁଛି । କଟକ ନିକଟରେ ଆନିକଟ ନିର୍ମାଣ କରି ଏ ଦିଗରେ ପବ୍ଲିକ୍ ୱାର୍କସ୍ ବିଭାଗ ପ୍ରଥମ ସୋପାନ ପକାଇଛି ବୋଲି ମୁଁ ଭାବୁଛି । ଭବିଷ୍ୟତରେ ସେଇ ବହୁ ଆକାଂକ୍ଷିତ ମହାନଦୀ ବନ୍ୟାଜଳ ନିୟନ୍ତ୍ରଣ ଯୋଜନା ନିଶ୍ଚିତ ଭାବେ କାର୍ଯ୍ୟକାରୀ ହେବା ମୋର ଆଶା । ଯେତେବେଳେ ମହାନଦୀର ବିପୁଳ ଜଳ ସମ୍ପଦକୁ ନିୟନ୍ତ୍ରଣ କରି କେନାଲ, ଜଳଭଣ୍ଡାର ମାଧ୍ୟମରେ ସାରା ପ୍ରଦେଶରେ ବାଣ୍ଟି ଦିଆଯିବ, ସେତେବେଳେ ଓଡ଼ିଶାର ଆର୍ଥିକ ଅବସ୍ଥା, ବର୍ତ୍ତମାନର ଅବସ୍ଥାର ଦଶଗୁଣ ବଢ଼ିଯିବ । ଆଉ ସେତେବେଳେ ବନ୍ୟାଜଳରେ ଗାଁ ଗଣ୍ଡା ବୁଡ଼ି ଯିବନି କମ୍ବା ମରୁଡ଼ିର କଥା ଶୁଣା ଯିବନି । ଓଡ଼ିଶା, ଯେଉଁଠି ଜଳସମ୍ପଦ ପ୍ରଚୁର ପରିମାଣରେ ପୂରି ରହିଛି, ତା'ପାଇଁ ବିଜ୍ଞାନ ପ୍ରଯୁକ୍ତି ବିଦ୍ୟାର ଆବଶ୍ୟକତା ଯଥେଷ୍ଟ ଦରକାର । ଇଜିପ୍ଟରେ କେନାଲ ନିର୍ମାଣ ଦ୍ୱାରା ଯେପରି ପ୍ରଭୂତ ଉନ୍ନତି ଘଟିଛି, ଓଡ଼ିଶା ସେହିପରି ଅବସ୍ଥାରେ ପହଞ୍ଚି ପାରିବ ।

ସକାଳ ୯ଘଣ୍ଟା ସମୟରେ ଆମେ ଖରିନାସୀ ଦେଇ (KHARANASA) ଅପରାହ୍ନ ୨ଟା ସମୟରେ ବକୁଟ୍ (BAKOOT)ରେ ପହଞ୍ଚିଲୁ । ବକୁଟ୍ ପାର ହେବା ପରେ ଆମ ଡଙ୍ଗା ଦକ୍ଷିଣ ମୁହାଁ ହେଲା । ଚାରିଆଡେ ଜଳାର୍ଣ୍ଣବ । ଧାନ ବିଲମାନଙ୍କ ଉପରେ ୪ରୁ ୮ ଫୁଟ ଉଚ୍ଚରେ ବନ୍ୟା ଜଳ । ବନ୍ୟାଜଳ ଯୋଗୁଁ ଗାଁରୁ ଗାଁକୁ ରାସ୍ତା ବିଚ୍ଛିନ୍ନ ହୋଇଯାଇଥାଏ । କେତେ ଗାଁରେ ଗ୍ରାମବାସୀମାନେ ସେମାନଙ୍କ ଘର ଉପରେ

ମଞ୍ଚା କରି, ବନ୍ୟାଜଳ ଛାଡିବା ପାଇଁ ଅପେକ୍ଷା କରି ବସିଥାନ୍ତି । କେତେକ, ଘର ଭିତରେ ମଞ୍ଚା କରି, ମଞ୍ଚା ଉପରେ ପିଲା କବିଲା ଧରି ବସିଥାନ୍ତି । ସନ୍ଧ୍ୟା ୬ଟା ସମୟରେ ଆମେ ବରାହୀ (BURHAIE) ଗାଁ ନିକଟରେ ପହଞ୍ଚିଲୁ । ଗାଁଟି ପାଣି ଘେର ଭିତରେ ଥାଏ । ମୁଁ ଗ୍ରାମବାସୀମାନଙ୍କ ସଙ୍ଗେ କଥାବାର୍ତ୍ତା କରିବାରେ ବୁଝିଲି ଯେ, ସେମାନେ ଅତ୍ୟନ୍ତ ଭଦ୍ର, ଅତିଥି ପରାୟଣ । ରାତ୍ରିରେ ରହିବା ପାଇଁ ସେମାନେ ସବୁ ପ୍ରକାର ସାହାଯ୍ୟ କରିବେ ବୋଲି କହିଲେ । ମୁଁ ସେମାନଙ୍କୁ ଗାଁ ଲୋକମାନଙ୍କର ସ୍ୱାସ୍ଥ୍ୟ ସମ୍ପର୍କରେ ପ୍ରଶ୍ନ କରିଥିଲି । ମୁଁ ଜାଣି ଆଶ୍ଚର୍ଯ୍ୟ ହେଲି ଯେ, ଗାଁର କେହି ଲୋକ ଜ୍ୱର କିମ୍ବା ପ୍ଲୀହା ରୋଗରେ ଆକ୍ରାନ୍ତ ହୋଇନାହାଁନ୍ତି । ସାଧାରଣରେ ସେମାନଙ୍କ ସ୍ୱାସ୍ଥ୍ୟ ଭଲ ଥିଲା । ସେମାନଙ୍କ ମଧ୍ୟରୁ ଜଣେ ଲୋକ ଆଣ୍ଠୁଗଣ୍ଠି  ରୋଗରେ ପୀଡିତ ଥିବାର ଦେଖିଲି । ବର୍ଷା, ବନ୍ୟା ଯୋଗୁଁ କେତେକ ଯୁବକ, ପିଲାମାନେ କାଶ ଶର୍ଦ୍ଦି ରୋଗରେ ପଡିଥିଲେ । ସାଙ୍ଗରେ ନେଇଥିବା ହାତ ଔଷଧ ବାକ୍ସରୁ କିଛି ଔଷଧ ବାହାର କରି ସେମାନଙ୍କୁ ଦେଲି । ଏଇ ଗାଁର ଲୋକମାନେ ତାଳଦଣ୍ଡା ପାଖ ସରକାରୀ ଚାଉଳ ଗୋଲାରୁ ଚାଉଳ ସୁବିଧା ଦରରେ ପାଉଥିଲେ ବୋଲି କହିଥିଲେ । ସେଦିନ ରାତିଟା ସେଇ ଗାଁ ମୁଣ୍ଡ ଆମ୍ବତୋଟା ପାଖ ନଦୀକୂଳରେ ଡଙ୍ଗା ଉପରେ ଶୋଇଲି ।

ଜୁନ୍ ୨୦ ତାରିଖ ଦିନ ସକାଳୁ ସକାଳୁ ଆମ ଡଙ୍ଗା ବରେହୀ ଗାଁରୁ ବାହାରି ଦିନ ୧୦ଟା ବେଳକୁ ତାଳଦଣ୍ଡା ପାଖେ ପହଞ୍ଚିଲା । ତାଳଦଣ୍ଡା ପାଖରେ କିଛି ସମୟ କଟାଇ, ସନ୍ଧ୍ୟା ସୁଦ୍ଧା ଚାନ୍ଦପୁର (CHANDPORE) ପାଖେ ପହଞ୍ଚି ସେଦିନ ରାତିଟି ସେଇ ଗାଁ ପାଖେ ଡଙ୍ଗା ଉପରେ କଟାଇଲି । ଏଇ ଗାଁ ପାଖରେ ମୋ ପାଖକୁ ଆସିଥିବା ସମସ୍ତ ଚିଠିପତ୍ର କଟକ ମାଜିଷ୍ଟ୍ରେଟ୍, ଡାକ ପିଅନ ହାତରେ ପଠାଇ ଦେଇଥିଲେ । ମୋ ଆସିବାରେ ସାତଦିନ ଡେରି ଏବଂ ବନ୍ୟା ଯୋଗୁଁ ବହୁ ଅଞ୍ଚଳ ବିଛିନ୍ନ ହୋଇଯାଇଥିବା ଯୋଗୁଁ ମୁଁ ତାଳଦଣ୍ଡାରେ ପୂର୍ବ ନିର୍ଦ୍ଧାରିତ ଦିନରେ ପହଞ୍ଚିପାରି ନଥିଲି । ଡାକ ରନର ଚିଠିପତ୍ର ଥୋଇଦେଇ ତାଙ୍କ ଗାଁକୁ ଚାଲି ଯାଇଥିଲା । ଚାନ୍ଦପୁର ଠାରୁ ଡାକ ରନରକୁ ଡକାଇ ପଠାଇଲି । ଡାକ ରନର ପରଦିନ ସକାଳେ ମୋତେ ତାଳଦଣ୍ଡା ନିକଟରେ ଦେଖାକଲା । ସେ ଆସିବା ପୂର୍ବରୁ ମୁଁ ଡଙ୍ଗାରୁ ଓହ୍ଲାଇ, ଗାଁ ମୁଣ୍ଡ ଓସ୍ତ ଗଛମୂଳେ ବସିଥାଏ । ଗାଁ ଚାରିପଟେ ବୁଲିଲା ବେଳେ ଜାଣିବାକୁ ପାଇଲି, ଏଇ ଗାଁର ଗୋଟିଏ ଛୋଟ ପଡ଼ା ୧୮୬୬ ମସିହା ଦୁର୍ଭିକ୍ଷରେ ସମ୍ପୂର୍ଣ୍ଣ ଭାବେ ଜନଶୂନ୍ୟ ହୋଇଯାଇଛି । ଚାନ୍ଦପୁର ପାଖେ ଯେଉଁ ନୌକା ମୋତେ ଫଲସ୍ ପଏଣ୍ଟ୍ ପାଖରୁ ଆଣିଥିଲା, ତାକୁ ଛାଡିଦେଲି ।

୨୧ ତାରିଖ ଦିନ ୧୨ଟା ପୂର୍ବରୁ ଚାନ୍ଦପୁର ଛାଡି, ଅପରାହ୍ନ ୩.୩୦ ମିନିଟ୍‌ରେ ଜୟପୁରରେ ପହଞ୍ଚିଥିଲି, ମାନପୁର (MOUNPORE)ରେ ପହଞ୍ଚିଲା ବେଳକୁ ରାତି ଅଧ । ସେଦିନ ରାତିରେ ଯାତ୍ରା କରି ସକାଳ ୭ଟା ବେଳକୁ ଫକୀରପୁର ପାଖେ ପହଞ୍ଚିଲୁ ।

ଫକୀରପୁର ଠାରେ ଅଳ୍ପ ସମୟ ପାଇଁ ବିଶ୍ରାମ ନେଇ କଟକରେ ପହଞ୍ଚିଲା ବେଳକୁ (୨୨ ତାରିଖ) ଦିନ ୧୦ଟା । କଟକ ସହରରେ ମୋତେ ଓଡ଼ିଶା କମିଶନର ମିଃ ରେଭେନ୍‌ସା ପାଛୋଟି ନେଇଥିଲେ । କିଛି ସମୟ ମୁଁ ମିଃ ରେଭେନ୍‌ସାଙ୍କ ସରକାରୀ ବଙ୍ଗଳାରେ କଟାଇଥିଲି । ମୋର ଯାତ୍ରାରେ ଅହେତୁକ ଡେରି ଯୋଗୁଁ ମୁଁ କଟକରେ ରେଭେନ୍‌ସାଙ୍କ ସଙ୍ଗେ ବେଶୀ ସମୟ ରହିନପାରି, ପୁରୀ ଅଭିମୁଖେ ଯାତ୍ରା ଆରମ୍ଭ କଲି । ଜୁନ୍ ମାସ ୨୩ ତାରିଖ ଅର୍ଦ୍ଧରାତ୍ରିରେ ମୁଁ ଜଗନ୍ନାଥ ଧାମ ପୁରୀରେ ପହଞ୍ଚିଥିଲି ।

## ଅର୍ଦ୍ଧ ରାତ୍ରିର ମନ୍ଦିର ସନ୍ନିକଟ ଦୃଶ୍ୟ

ପୁଣ୍ୟ କ୍ଷେତ୍ର ପୁରୀରେ ସନ୍ଧ୍ୟା ପୂର୍ବରୁ ପହଞ୍ଚିବା ପାଇଁ ମୋର ସମସ୍ତ ଚେଷ୍ଟା ବିଫଳ ହୋଇଥିଲା । ତାରକା ଖଚିତ ମଧ୍ୟରାତ୍ରିରେ ହିଁ ମୁଁ ଏଇ ସହରର ଦୃଶ୍ୟ ପ୍ରଥମଥର ପାଇଁ ଦେଖିବାର ସୁଯୋଗ ପାଇଥିଲି । ସହରର ପ୍ରଧାନ ରାସ୍ତା ବଡଦାଣ୍ଡରେ ଗଲାବେଳେ ଦେଖିଲି, ହଜାର ହଜାର ତୀର୍ଥଯାତ୍ରୀ ଏକ ମାଇଲ୍ ଲମ୍ବ, ବେଶ୍ ପ୍ରଶସ୍ତ ବଡଦାଣ୍ଡର ଦୁଇ କଡରେ ମୁକ୍ତ ଆକାଶ ତଳେ ନିଘୋଡ ନିଦରେ ଶୋଇ ଯାଇଥାନ୍ତି । କାଁ ଭାଁ କେଉଁଠି କିଏ ଜଣେ ଅଧେ ଯାତ୍ରୀ ଡିବିରିଟିଏ ଜଳାଇ ଥାଏ । ହଜାର ହଜାର ଯାତ୍ରୀ ରାସ୍ତାର ଦୁଇ କଡରେ ଶୋଇଥିଲେ ମଧ୍ୟ କାହାର ସୋର ଶବ୍ଦ ନଥାଏ । ଏଇ ଦୃଶ୍ୟ ଖୁବ୍ ଇଂପ୍ରେସିଭ୍ ଥିଲା । ନିଦ୍ରିତ ହଜାର ହଜାର ତୀର୍ଥଯାତ୍ରୀ କେବଳ ଜଗନ୍ନାଥଙ୍କ ଦର୍ଶନାର୍ଥେ ବହୁ ଦୂରଦୂରାନ୍ତ ରାଜ୍ୟରୁ ଆସିଥାନ୍ତି । ଏହି ମହିଳା, ପୁରୁଷ ଯାତ୍ରୀମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା କିପରି ଶ୍ରୀକ୍ଷେତ୍ରରେ ପହଞ୍ଚିବା । ପହଞ୍ଚିଲା ପରେ ସେମାନେ ଶହ ଶହ ମାଇଲ୍ ରାସ୍ତା ଅତିକ୍ରାନ୍ତ କରି ଆସିଥିବା ପଥକ୍ଳାନ୍ତ କ୍ଲେଶ ଭୁଲିଯାଇ ବଡଦାଣ୍ଡ ଉପରେ ନିଘୋଡ ନିଦରେ ଶୋଇ ଯାଇଥାନ୍ତି । ତାରକା ଖଚିତ ଆକାଶର ଫିକା ଆଲୁଅରେ, ନିଃଶବ୍ଦରେ ନିଦ୍ରା ଯାଇଥିବା ହଜାର ହଜାର ଲୋକଙ୍କୁ ଦେଖି ମୋତେ ସେଇ ସ୍ଥାନଟି ସ୍ୱପ୍ନବତ୍ ଜଣାପଡୁଥିଲା । ପ୍ରକୃତରେ ହିନ୍ଦୁମାନଙ୍କର ଜଗନ୍ନାଥଙ୍କ ଉପରେ କେତେ ବିଶ୍ୱାସ ଏହି ଦୃଶ୍ୟ ହିଁ ମତେ ସୂଚନା ଦେଉଥିଲା । ନିଦ୍ରିତ ଯାତ୍ରୀମାନଙ୍କ ମଝି ରାସ୍ତା ଦେଇ ଚାଲି ଚାଲି ମୁଁ ମନ୍ଦିର ସାମ୍ନାରେ ପହଞ୍ଚିଥିଲି । ରଥଯାତ୍ରା ସଂପର୍କରେ ଯେତେକଥା ଶୁଣିଥିଲି, ଆଗରୁ ପଢ଼ିଥିଲି, ସେଇ ତିନିରଥକୁ ମୁଁ ଅର୍ଦ୍ଧରାତ୍ରିରେ ମନ୍ଦିର ସାମ୍ନାରେ ଦେଖିବାକୁ ପାଇଥିଲି ।

କଲିକତାରୁ ବାହାରି ପୁରୀରେ ପହଞ୍ଚିବା ପରେ ମୋର ବିଳମ୍ବ ଯୋଗୁଁ ତିନି ଠାକୁରଙ୍କ ପହଣ୍ଡି ଯାତ୍ରା ଦେଖିବାର ସୁଯୋଗ ପାଇନଥିଲି । ମୁଁ ପୁରୀରେ ପହଞ୍ଚିବା ପୂର୍ବରୁ ଠାକୁରମାନେ ରଥ ଉପରେ ବସି ସାରିଥିଲେ । ସେ ଯାହାହେଉ, ରଥଯାତ୍ରା ଦେଖିବାର ସୁଯୋଗ ପାଇଥିବା ଯୋଗୁଁ ଯାହା ଦେଖିପାରି ନଥିଲି, ସେ ସଂପର୍କରେ ବୁଝିବା ପାଇଁ ବେଶୀ କଷ୍ଟ ହେଲାନି ।

ଓଡ଼ିଶା ସଂପର୍କରେ ଓଡ଼ିଶାରେ ବହୁଦିନ ଧରି ରହିଥିବା ଜଣେ ବ୍ୟକ୍ତି ଏଇ ପ୍ରକାର ବର୍ଣ୍ଣନା କରିଛନ୍ତି । ଜେରୁଜେଲମ୍, ଯେପରି ସମସ୍ତ ଇଜ୍‌ରାଇଲ୍ ବାସିନ୍ଦାମାନଙ୍କ ପାଇଁ ଏକ ମହାନ୍ ତୀର୍ଥ ସ୍ଥାନ, ସେହିପରି ପୁରୀ ପ୍ରତ୍ୟେକ ଭାରତୀୟମାନଙ୍କ ପାଇଁ ଏକ ମହାନ୍ ତୀର୍ଥ । ହିନ୍ଦୁମାନଙ୍କର ଏହା ଏକ ପବିତ୍ର ସ୍ଥାନ । ଜେରୁଜେଲମ୍ ଅଧିବାସୀମାନେ ଯେପରି ପବିତ୍ର ମାଉଣ୍ଟ୍‌ଜିୟନ୍‌କୁ (ZION) ଯାଇଥାନ୍ତି, ଜଗନ୍ନାଥ ମନ୍ଦିର ଦର୍ଶନ ପାଇଁ ଭାରତର ପ୍ରତ୍ୟେକ କୋଣରୁ ହିନ୍ଦୁ ତୀର୍ଥଯାତ୍ରୀମାନେ ଆସିଥାନ୍ତି । (ସୁଟନ୍)

ହିନ୍ଦୁମାନଙ୍କର ଜଣେ ଆରାଧ୍ୟ ଋଷି ଭରଦ୍ୱାଜ ମୁନି, ତାଙ୍କର ଶିଷ୍ୟମାନଙ୍କ ଆଗରେ ଏହି ଦେଶ ସଂପର୍କରେ କହିବାକୁ ଯାଇ କହିଥିଲେ "ପୃଥିବୀର ସବୁ ଦେଶମାନଙ୍କ ମଧ୍ୟରେ ଭାରତଖଣ୍ଡ ଏବଂ ଭାରତଖଣ୍ଡ ମଧ୍ୟରେ ଉତ୍କଳ ଦେଶ ସର୍ବଶ୍ରେଷ୍ଠ । ଏହାର ପ୍ରତ୍ୟେକ ସ୍ଥାନ ପବିତ୍ର । ଯେଉଁମାନେ ଏଇ ପବିତ୍ର ଭୂମିରେ ଜନ୍ମଗ୍ରହଣ କରିଛନ୍ତି, ସେମାନେ ଧନ୍ୟ ଏବଂ ଯେଉଁମାନେ ଏହି ପବିତ୍ର ଭୂଖଣ୍ଡର ନଦନଦୀ ପୁଷ୍କରିଣୀର ଜଳରେ ସ୍ନାନ କରିଛନ୍ତି, ଏ ଦେଶର ମାଟିରେ ପଦାର୍ପଣ କରିଛନ୍ତି, ସେମାନଙ୍କର ସମସ୍ତ ପାପର ବିନାଶ ଘଟେ ।"

ସାର୍ ଆର୍କିବାଲ୍ଡ ଆଲିସନ (Sir Archibala Alison) ତାଙ୍କର 'ୟୁରୋପର ଇତିହାସ' ପୁସ୍ତକରେ ଓଡ଼ିଶା ବିଷୟରେ ଲେଖିଛନ୍ତି । 'ବେଳାଭୂମି ସଂଲଗ୍ନ ଏହି ସମୃଦ୍ଧ, ଗୁରୁତ୍ୱପୂର୍ଣ୍ଣ ରାଜ୍ୟ ମାଡ୍ରାସ ଓ ବେଙ୍ଗଲ ପ୍ରୋଭିନ୍ସ ମଧ୍ୟରେ ଯୋଗସୂତ୍ର ।'

## ପୁରୀ ସହରର ଅବସ୍ଥିତି

ପୁରୀ ଓଡ଼ିଶାର ଦକ୍ଷିଣ ସମୁଦ୍ରକୂଳ ୧୯.୪୯ ଲାଟିଚୁଡ ନର୍ଥ ଓ ୮୫.୫୪ ଲଙ୍ଗିଚୁଡ ଇଷ୍ଟ, କଲିକତା ଠାରୁ ୩୦୦ ମାଇଲ୍ ଏବଂ କଟକଠାରୁ ୪୯ ମାଇଲ୍ ଦୂରରେ ଅବସ୍ଥିତ । ପୁରୀ ସହର ସମଗ୍ର ଓଡ଼ିଆଙ୍କ ସ୍ନେହ, ଶ୍ରଦ୍ଧା ଓ ଭକ୍ତିର ସହର । ସହରର ମଧ୍ୟଭାଗରେ ଜଗନ୍ନାଥଙ୍କ ମନ୍ଦିର ଅବସ୍ଥିତ୍ । ମୋର ମନେ ପଡୁଛି ୧୮୬୬ ମସିହା ପ୍ରଥମ ଭାଗରେ ମୁଁ କନଷ୍ଟାଣ୍ଟିନୋପୁଲ ଠାରେ ଆନ୍ତର୍ଜାତୀୟ ସାନିଟାରୀ ସମ୍ମିଳନୀରେ ଯୋଗ ଦେଇଥିବା ବେଳେ ପୁରୀ ସହର, ଜଗନ୍ନାଥ ମନ୍ଦିର ନିକଟରେ ଅବସ୍ଥିତ ବୋଲି ଶୁଣିଥିଲି ।

"In the neighbourhood of Jagannath" (vide P-73 of the proceedings of conference) ଲାଭରୀ, (LAVRIE) ଜଗନ୍ନାଥ, ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ଭାବେ ବର୍ଣ୍ଣନା କରିଛନ୍ତି । ହିନ୍ଦୁ ଧର୍ମରେ ପୁରୀକୁ ଆସିବା, ଜଗନ୍ନାଥ ଦର୍ଶନ କରିବା ଏକ ମହାନ ଧାର୍ମିକ କାର୍ଯ୍ୟ ବୋଲି କୁହାଯାଇଛି । ସୁଟନଙ୍କ ମତରେ "ପୁରୀରେ ଜଗନ୍ନାଥଙ୍କ ରଥଯାତ୍ରା- ଭାରତର ହିନ୍ଦୁମାନଙ୍କ ପାଇଁ ଏକ ମିଳନ ସ୍ଥାନ ।" ହିନ୍ଦୁମାନଙ୍କ ପାଇଁ କେବଳ ପୁରୀ ସହର ନୁହେଁ, ଏହାର ୧୦ କୋଶ ଅଞ୍ଚଳ ମଧ୍ୟ ମହାନ

ପବିତ୍ର ସ୍ଥାନ ଯାହାର ପରିକ୍ରମାରେ ମହାପାତକ ନାଶ ଯାଇଥାଏ । ଜଗନ୍ନାଥଙ୍କ ସେବକମାନେ କୁହନ୍ତି, ପୁରୀ ସହର ହେଉଛି "ମର୍ତ୍ତ୍ୟରେ ସ୍ୱର୍ଗ" । ବୃକ୍ଷରେ ଫଳ ସଦୃଶ, ଜୀବନ ବୃକ୍ଷର ଫଳ ପ୍ରାପ୍ତି, ପୁରୀ ଦର୍ଶନରେ ମିଳିଥାଏ । ପୁରୀର ପବିତ୍ର ପୁଷ୍କରିଣୀମାନଙ୍କରେ ସ୍ନାନ କଲେ ଯେଉଁ ଫଳପ୍ରାପ୍ତି ହୁଏ, ଭାରତର ସବୁ ପବିତ୍ର ନଦୀରେ ସ୍ନାନ କଲେ ତାହା ମିଳେନାହିଁ । ଏଇ ସହରର ବାସିନ୍ଦାମାନେ ପବିତ୍ର, ଏଠାରେ ଲକ୍ଷ୍ମୀ ବାସ କରନ୍ତି- ତୀର୍ଥଯାତ୍ରୀମାନେ ପୁରୀରେ ରହଣିକାଳ ମଧ୍ୟରେ ଲକ୍ଷ୍ମୀଙ୍କ ହାତରନ୍ଧା ପ୍ରସାଦ ସେବନ କରିବାର ସୁଯୋଗ ପାଇଥାନ୍ତି । ସ୍ୱର୍ଗର ଦେବତାମାନେ ଏହି ସହର ଉପରେ ସୁଗନ୍ଧିଯୁକ୍ତ ପୁଷ୍ପ ବର୍ଷଣ କରନ୍ତି । ସ୍ୱର୍ଗର ଦେବତାମାନେ ଏଇ ସହରକୁ ଆସିବା ପାଇଁ ଅବତାର ଗ୍ରହଣ କରିବାକୁ ଆଗ୍ରହୀ ହୋଇଥାନ୍ତି । ଏହି ସହରର ପ୍ରତ୍ୟେକ ଧୂଳିକଣା ସୁବର୍ଣ୍ଣ ପ୍ରାୟ, ଏହାର ଦେବତା ଏତେ ଦୟାଳୁ, କ୍ଷମାଶୀଳ ଯେ, ଜଣେ ହଜାରେ ବ୍ରାହ୍ମଣ ହତ୍ୟା କରିଥିଲେ ମଧ୍ୟ ସେ ତାଙ୍କୁ କ୍ଷମା ଦେଇଥାନ୍ତି ଏବଂ ପାପମୁକ୍ତ କରିଥାନ୍ତି ।' (vide-sketch of the Orissa mission).

ମୁଁ ମୋର ଯାତ୍ରା ବିବରଣୀରେ ପୁରୀ ସହର ସଂପର୍କରେ ସବୁକଥା କହିଛି । ଉଲ୍ଲେଖ ମଧ୍ୟ କରିଛି, ମାତ୍ର ପ୍ରକୃତ କ୍ଷେତ୍ରରେ 'ପୁରୀ ଆଉ କିଛି ହୋଇପାରେ କିନ୍ତୁ 'ମର୍ତ୍ତ୍ୟର ସ୍ୱର୍ଗ ନୁହଁ' । ସ୍ୱଚ୍ଛକର ଦୃଷ୍ଟିରୁ (ପରିମଳ) ଏହାର ପ୍ରତ୍ୟେକ ପୁଷ୍କରିଣୀରେ 'ମୃତ୍ୟୁର ଜଳ' ଭରପୁର ହୋଇ ରହିଛି- ଅମରତ୍ୱର ଅମୃତ ନୁହଁ, ଏହାର ରାସ୍ତାରୁ ଯେଉଁ ଗନ୍ଧ ନିର୍ଗତ ହୁଏ, ଏହା ପୁଷ୍ପର ସୁରଭି ନୁହଁ ।

## ଜଗନ୍ନାଥଙ୍କ ପବିତ୍ରତା

ଏଇ ପୁରୀ ସହର ଏହାର ଏଇ ମନ୍ଦିର ଏବଂ ଜଗନ୍ନାଥଙ୍କ ମୂର୍ତ୍ତି ଦୀର୍ଘ ୭୦୦ ବର୍ଷ ଧରି ଭାରତର ପ୍ରତ୍ୟେକ କୋଣରୁ ହିନ୍ଦୁମାନଙ୍କୁ ଆକର୍ଷଣ କରିଛି । ହଜାର ହଜାର ତୀର୍ଥଯାତ୍ରୀ ଶହ ଶହ ମାଇଲ୍ ରାସ୍ତା ଚାଲି ଚାଲି ପାଦରେ ଫୋଟକା, ଦେହରେ ଜ୍ୱର ଏବଂ ପଥଶ୍ରାନ୍ତ କଷ୍ଟକୁ ଭ୍ରୂକ୍ଷେପ ନକରି ସେଇ ଦେବତାଙ୍କ ଦର୍ଶନ ପାଇଁ ଦଉଡି ଆସିଛନ୍ତି, ଯାହାର ଦର୍ଶନରେ ସେମାନେ ବିଶ୍ୱାସ କରନ୍ତି ଯେ, ଆଉ ପୁର୍ନଜନ୍ମ ହୁଏନାହିଁ । ସେମାନଙ୍କର ବିଶ୍ୱାସ ଯାହା ଥାଉନା କାହିଁକି, ମୋତେ ଆଶ୍ଚର୍ଯ୍ୟ ଲାଗେ ଯେ, ଏଇ ସ୍ଥାନର କି ମାହାତ୍ମ୍ୟ ଅଛି, ଯାହା ସେମାନଙ୍କ ଅନ୍ତର ମଧ୍ୟରେ ଏହି ପବିତ୍ର ସ୍ଥାନକୁ ଆସିବା ପାଇଁ, ଅଦୃଶ୍ୟ ଉନ୍ମାଦନା ସୃଷ୍ଟି କରେ ।

ନିଶାର୍ଦ୍ଧରେ ଏହିପରି ଏକ ସ୍ଥାନରେ ମୁଁ ନିଜକୁ ଦେଖିବାକୁ ପାଇଥିଲି । ମୋ' ସାମ୍ନା ରାସ୍ତା ଉପରେ ସେଇ ଚିତ୍ର ବିଚିତ୍ର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରଥ ଠିଆ ହୋଇଥାଏ । ତିନିରଥର ପଛପଟେ ଅର୍ଦ୍ଧ ରାତ୍ରିର ସ୍ଲାନ ଆଲୋକରେ ବୈଷ୍ଣବ ସଂପ୍ରଦାୟର

ଚିରଉପସ୍ଥିତ ଶ୍ରୀମନ୍ଦିର ଦେଖାଯାଉଥାଏ । ରଥର ଚାରିପଟେ ରଙ୍ଗିଲା ଠାକୁରଙ୍କୁ ଦର୍ଶନ କରିବା ପାଇଁ ଆସିଥିବା ତୀର୍ଥଯାତ୍ରୀମାନେ ନିଃଶବ୍ଦରେ ଶୋଇ ଯାଇଥାନ୍ତି । ଏହି ଚିତ୍ରିତ ଦାରୁମୂର୍ତ୍ତିଙ୍କୁ ଦେଖି ଏମାନେ ଜଗତର ନାଥ ଜଗନ୍ନାଥ ବୋଲି ବିଶ୍ୱାସ କରନ୍ତି । ଦୂରଦୂରାନ୍ତରୁ ଦର୍ଶନ ପାଇଁ ଆସିଥିବା ହଜାର ହଜାର ନିଦ୍ରିତ ଯାତ୍ରୀଙ୍କ ଚାରିପଟେ ଠିଆ ହୋଇଥିବା ସୁସଜ୍ଜିତ ତିନିରଥ, ପଛପଟେ କ୍ଷୀଣ ଆଲୋକରେ ଦୃଶ୍ୟମାନ ଶ୍ରୀମନ୍ଦିର, ଅର୍ଦ୍ଧରାତ୍ରିର ନିରବତା, ଏସବୁ ଏକ ରହସ୍ୟାବୃତ୍ତ ଘଟଣା ପରି ବିଦ୍ୟମାନ ହେଉଥାଏ ।

ମୋ' ସାମ୍ନାରେ ଶୋଇ ଯାଇଥିବା ତୀର୍ଥଯାତ୍ରୀମାନେ ବହୁ ଲେଖକଙ୍କ ଲେଖାରେ ସେମାନଙ୍କର କର୍ମ ପାଇଁ ଭର୍ତ୍ସିତ ହୋଇଛନ୍ତି । ସେମାନଙ୍କର ଅନ୍ଧବିଶ୍ୱାସ, ଧର୍ମାନ୍ଧତା, ସେମାନଙ୍କର ବର୍ବରତା ଏବଂ ନୈତିକ ଅଧୋପତନ ସଂପର୍କରେ ମୋ'ପୂର୍ବରୁ ବହୁ ଲେଖକ, ଦରକାର ନଥିଲେ ମଧ ଏହାର ସମାଲୋଚନା କରିଛନ୍ତି । ମୋ' ମତରେ ଏପରି ଅନୌପଚାରିକ ଲେଖା ଅତ୍ୟନ୍ତ ନିନ୍ଦନୀୟ, ଦୁଃଖଦାୟକ ମଧ । ସେମାନଙ୍କର ଧାର୍ମିକ, ସାହସ, ବିଶ୍ୱାସ, ସେମାନଙ୍କୁ ବହୁ ଦୂରରୁ ଜଗନ୍ନାଥଙ୍କ ଦର୍ଶନ ପାଇଁ ଟାଣି ଆଣିଛି । ସବୁଠାରୁ ଭଲ ହେବ, ଆମେ ଯଦି ସେମାନଙ୍କର ସାହସ, ବିଶ୍ୱାସକୁ ଘୃଣା ନକରି ପ୍ରଶଂସା କରିବା । ମୁଁ କହିବାକୁ ଚାହେଁ, ସରକାର ସେମାନଙ୍କ ପ୍ରତି ଦୟାପରବଶ ହୋଇ ସେମାନଙ୍କ ପୁରୀରେ ରହିବା, ଯାତ୍ରା ସମୟରେ ରାସ୍ତାଘାଟରେ ସୁବିଧା ଯୋଗାଇ ଦେବା ସଂଗେ ସ୍ୱାସ୍ଥ୍ୟସେବା ଯୋଗାଇ ଦେଲେ ତାହା ଶ୍ରେୟସ୍କର ହୁଅନ୍ତା ।

ମୋ'ର ଏଇ ରିପୋର୍ଟରେ ମୁଁ ପର୍ଯ୍ୟାୟକ୍ରମେ ପୁରୀରେ ତୀର୍ଥଯାତ୍ରୀମାନେ ଯେଉଁପରି ଭାବେ ଅକଥନୀୟ ଅସୁବିଧାର ସମ୍ମୁଖୀନ ହେଉଛନ୍ତି ସେ ସଂପର୍କରେ ତଥ୍ୟ ଉପସ୍ଥାପିତ କରିବି । ଯଦିଓ ଯାତ୍ରୀମାନଙ୍କ ଉଦ୍ଦେଶ୍ୟରେ ସରକାର କିଛି କାର୍ଯ୍ୟ କରିଛନ୍ତି ତାହା ସମୁଦ୍ରକୁ ଶଙ୍ଖେ ମାତ୍ର- ଆହୁରି ବହୁତ କିଛି କରିବାକୁ ବାକି ଅଛି । ଓଡ଼ିଶାକୁ ଆସିଥିବା ଏହି ହତଭାଗ୍ୟ ତୀର୍ଥଯାତ୍ରୀମାନଙ୍କୁ ଦେଖି ମୋ'ର ମନେହୁଏ, ଏମାନଙ୍କ ପ୍ରତି ବୀତସ୍ପୃହ ମନୋଭାବ ଓ ରୁକ୍ଷ ବ୍ୟବହାର ପରିବର୍ତ୍ତେ ସହାନୁଭୂତି, ମାନବିକତା ଏବଂ ସାହାଯ୍ୟ କରିବା ମନୋଭାବ ପ୍ରଦର୍ଶନ କରିବା ଦରକାର । ସୁରକ୍ଷା, ସାହାଯ୍ୟ, ସହାନୁଭୂତି, ଯାହା ଜଲେ ବି ଭାରତୀୟ ତୀର୍ଥଯାତ୍ରୀଙ୍କ 'ଭାଗ୍ୟ' ଏତେ ଆନନ୍ଦଦାୟକ ନୁହେଁ ବୋଲି ମୁଁ ବର୍ତ୍ତମାନ ଅବସ୍ଥାରୁ ବୁଝୁଛି ।

ମନ୍ଦିର ଓ ମନ୍ଦିର ସଂଲଗ୍ନ ଦୃଶ୍ୟ କିଛି ସମୟ ପାଇଁ ନିରୀକ୍ଷଣ କରି ମୁଁ ପୁରୀ ଡାକବଙ୍ଗଳା ଆଡେ ବାହାରିଥିଲି, ଯେଉଁଠି ମୋ'ର ରହିବା ପାଇଁ ବନ୍ଦୋବସ୍ତ ହୋଇଥିଲା । ପରଦିନ ସକାଳୁ ମୁଁ ପୁରୀ କଲେକ୍ଟର ଓ ଜିଲ୍ଲା ମାଜିଷ୍ଟ୍ରେଟ୍ ମିଃ ରାବନଙ୍କୁ ବେଙ୍ଗଲ ସରକାର ମୋତେ କେଉଁ ଉଦ୍ଦେଶ୍ୟରେ ଏଠାକୁ ପଠାଇଛନ୍ତି, ସେ ବିଷୟରେ ଖବର ଦେଇ ଜଣାଇଲି, ସେ ମୋତେ ତାଙ୍କ ସହିତ ରହିବା ପାଇଁ ଅନୁରୋଧ କରିବା ସଙ୍ଗେ

ସଙ୍ଗେ ମୁଁ ଯେଉଁ କାର୍ଯ୍ୟ ପାଇଁ ଆସିଛି ସେଇ କାର୍ଯ୍ୟରେ ନିଜେ ଜଡିତ ହୋଇ ମୋତେ ସବୁ ପ୍ରକାର ସାହାଯ୍ୟ ଯୋଗାଇ ଦେବେ ବୋଲି କହିଲେ । ମୁଁ ତାଙ୍କର ଆତିଥ୍ୟ ଗ୍ରହଣ କରି ମୋର ପୁରୀରେ ରହିବା ଦିନତକ, ତାଙ୍କର ଅତିଥି ହେଲି । ୧୦ଦିନ ଧରି ମୁଁ ତାଙ୍କ ବାସଭବନରେ ରହିଥିଲି । ମୁଁ ସରକାରଙ୍କ ଦୃଷ୍ଟି ଆକର୍ଷଣ ନକରି ରହିପାରୁନି ଯେ, ମିଃ ରାବନ୍, ମୋତେ ମୋ'ର ତଦନ୍ତ କାର୍ଯ୍ୟରେ ସମସ୍ତ ଅଫିସିଆଲ ସାହାଯ୍ୟ ଯୋଗାଇ ଦେଇଥିଲେ । ଏପରିକି ସେ ମୋତେ ଏପରି ଅବସ୍ଥାରେ ରଖିଥିଲେ ଯେ, ମୁଁ ନିଜେ ପୁରୀ ସହର ବୁଲି ସହରର ଅବସ୍ଥା ସଂପର୍କରେ ସିଧାସଳଖ ପଣ୍ଡା, ସେବକ, ମଠର ମହନ୍ତମାନଙ୍କ ସଂଗେ ଆଲୋଚନା କରି ସମସ୍ତ ତଥ୍ୟ ସଂଗ୍ରହ କରିଥିଲି । ପ୍ରତ୍ୟେକ ଦିନ ସେ ମୋ ସାଙ୍ଗରେ ପୁରୀ ସହରର ଆବର୍ଜନାପୂର୍ଣ୍ଣ ଗଳିକନ୍ଦି ବୁଲିଥିଲେ । କର୍ତ୍ତବ୍ୟକୁ ସେ ଦୁର୍ଗନ୍ଧ, ଆବର୍ଜନାପୂର୍ଣ୍ଣ ଅଞ୍ଚଳଠାରୁ ବହୁ ଉପରେ ରଖିଥିଲେ । ଜଗନ୍ନାଥ ଏବଂ ତାଙ୍କର ଭକ୍ତମାନଙ୍କ ବିଷୟରେ ଯାହାସବୁ ତଥ୍ୟ ମୋ'ପାଖରେ ଅଛି, ସେସବୁ ସମ୍ଭବ ହୋଇଥିଲା କେବଳ ମିଃ ରାବନଙ୍କ ଏକାନ୍ତ ସାହାଯ୍ୟ ଯୋଗୁଁ । ପ୍ରତ୍ୟେକ ବର୍ଷ ରଥଯାତ୍ରା ସମୟରେ ଦୂରଦୂରାନ୍ତରୁ ଆସୁଥିବା ତୀର୍ଥଯାତ୍ରୀମାନଙ୍କ ବହୁଳ ସମସ୍ୟାର ସମ୍ଭାବ୍ୟ ଦୂରୀକରଣ ପାଇଁ ମିଃ ରାବନଙ୍କ ଯଥେଷ୍ଟ ଆନ୍ତରିକତା ଥିଲା ।

ମୋ ମନରେ ଯେଉଁ ବିଷୟରେ ଜାଣିବାକୁ ଇଚ୍ଛା ହୁଏ, ଆମେ ସେଇ ବିଷୟରେ ବିସ୍ତୃତ ଆଲୋଚନା କରୁ । ଅପରାହ୍ଣରେ ଆମେ ରଥଟଣା ଦେଖିବାକୁ ବଡଦାଣ୍ଡ ଆଡେ ଗଲୁ । ରଥଯାତ୍ରା କିପରି ଭାବେ ଆଗେଇ ଚାଲିଛି ଏବଂ ତିନିରଥକୁ କେଉଁପରି ଭାବେ ଟଣା ଯାଉଛି, ମିଃ ରାବନ୍ ବଡଦାଣ୍ଡରେ ଉପସ୍ଥିତ ରହି ସୁପରଭାଇଜ୍ କରୁଥିଲେ । ପୂର୍ବଦିନ ରାତ୍ରିରେ ମୁଁ ଯେଉଁ ସ୍ଥାନରେ ଠିଆହୋଇ ହଜାର ହଜାର (ବଡଦାଣ୍ଡ ଉପରେ) ନିଦ୍ରିତ ଯାତ୍ରୀମାନଙ୍କୁ ଦେଖିଥିଲି, ଏବେ ସେଇମାନଙ୍କୁ ମୋ ଆଖି ଆଗରେ ଦେଖୁଛି । ଯଦିଓ ସେଇ ସ୍ଥାନ, ସେଇ ପରିବେଶ, ସେଇ ଯାତ୍ରୀ, ସେଇ ତିନିରଥକୁ ମୁଁ ଦେଖିଥିଲି କିନ୍ତୁ ଏବେ ମୁଣ୍ଡଫଟା ଖରା ସାଙ୍ଗକୁ ପରିବେଶ ଅତ୍ୟନ୍ତ କୋଳାହଳ ହୋଇ ଉଠିଥିଲା । ଯାତ୍ରୀମାନଙ୍କ ମନରେ ଧାର୍ମିକ ମନୋଭାବ ବେଳକୁ ବେଳ ବଢୁଥାଏ । ରଥଟଣା ଆରମ୍ଭ ହେବ । ଦଶ ହଜାରରୁ ଉର୍ଦ୍ଧ୍ୱ ଭକ୍ତ ଏଥିପାଇଁ ଅପେକ୍ଷା କରି ରହିଥାନ୍ତି । ସମସ୍ତ ଆଖି ସେଇ ତିନି ଠାକୁରଙ୍କ ରଥ ଉପରେ । ରଥମାନଙ୍କ ଉପରେ କ୍ରମଶଃ ସେବକ, ବ୍ରାହ୍ମଣମାନେ ଏକାଠି ହେଲେ, ରଥ ଚାରିପଟେ ଘଣ୍ଟୁଆ, କାହାଳିଆ, ଶଙ୍ଖୁଆ, ସେମାନଙ୍କର ବାଦ୍ୟଯନ୍ତ୍ର ଧରି ଠିଆ ହେଲେ । ସେଇ ବାଦ୍ୟଯନ୍ତ୍ର ମାନଙ୍କରୁ ସେମାନେ ଏକ ପ୍ରକାର ଅଜଣା, ଅସାମଞ୍ଜସ୍ୟ ଶବ୍ଦ ସୃଷ୍ଟି କରୁଥାନ୍ତି । ରଥଟଣା ଯିବା ପାଇଁ ସବୁ ପ୍ରକାର କାର୍ଯ୍ୟ ଆସ୍ତେ ଆସ୍ତେ ଶେଷ ହେଉଥାଏ । ଶେଷକୁ ସଂକେତ ଦିଆଯାଇ କୁହାଗଲା ଯେ, ଜଗନ୍ନାଥ ମହାପ୍ରଭୁ, ଭକ୍ତମାନେ ରଥ ଟାଣିବାକୁ ଇଚ୍ଛା ପ୍ରକଟ କଲେଣି । ସଂଗେ ସଂଗେ ବଡଦାଣ୍ଡ

ଉପରେ ରଥ ଟାଣିବାକୁ ଅପେକ୍ଷା କରିଥିବା ଭକ୍ତମାନେ ଆନନ୍ଦ ଉଲ୍ଲାସରେ ପାଟିକଲା ବେଳେ କେତେକ ସେଇ ଦାଣ୍ଡ ଉପରେ ଆଣ୍ଠୁମାଡି ଦାଣ୍ଡ ଧୂଳି ଉପରେ ମୁଣ୍ଡ ଲଗାଇ ନିରବରେ ଜଗନ୍ନାଥଙ୍କୁ ତାଙ୍କର ଭକ୍ତିପୂର୍ଣ୍ଣ ନିବେଦନ ଜଣାଉଥାନ୍ତି । ପ୍ରତ୍ୟେକ ରଥଟଣା ହେବା ପାଇଁ ଦୁଇ ଦୁଇଟା ମୋଟା କତା ଦଉଡି ରଥର ଦୁଇ ପାଖରେ ଲାଗିଥାଏ । ଦଉଡି ଗୁଡିକ ବହୁତ ଲମ୍ବା ଏବଂ ଭକ୍ତମାନେ ଟାଣିବା ପାଇଁ ସବୁ ଦଉଡିକୁ ଆଗକୁ ଲମ୍ବାଇ ଦିଆଯାଇଥାଏ । ରଥ ଟାଣିବା ପାଇଁ ମନ୍ଦିର ତରଫରୁ ଯେଉଁମାନେ ନିଯୁକ୍ତି ହୋଇଥାନ୍ତି, ସେମାନଙ୍କୁ କଳାବେଠିଆ କହୁଥିଲେ । କଳା ବେଠିଆମାନଙ୍କୁ ଭକ୍ତମାନେ ରଥ ଟାଣିବାରେ ସାହାଯ୍ୟ କରୁଥିଲେ । ପ୍ରଥମେ ଗୋଟିଏ ରଥ ଟଣା ଆରମ୍ଭ ହୁଏ । କେଁ କଟର ଶବ୍ଦକରି ରଥ ଦାଣ୍ଡରେ ଆସ୍ତେ ଆସ୍ତେ ଆଗେଇ ଚାଲେ । ପ୍ରଥମ ରଥ ଆଗେଇଲା ପରେ ବଡଦାଣ୍ଡ ଉପରେ ଭକ୍ତମାନେ ଭାବବିହ୍ୱଳ ଚିତ୍ତରେ ପାଟିକରି ଉଠନ୍ତି । ସେଇ ସମୟରେ ଦଇତା କିମ୍ବା ଡାହୁକ ରଥ ଆଗରେ ବନ୍ଧା ହୋଇଥିବା କାଠ ଉପରେ ହାତରେ ବେତଧରି ରଥ ଟାଣୁଥିବା ଭକ୍ତମାନଙ୍କୁ ପ୍ରୋତ୍ସାହନ ଦିଅନ୍ତି । କୁହାଯାଏ - ସେମାନେ ଅଶ୍ଳୀଳ ଇଙ୍ଗିତ ପ୍ରଦର୍ଶନ କରି - ଗୀତ ଗାଇଥାନ୍ତି (With obscene, ithiophallic) ରଥ ଚାଲିବାର ଘର ଘର ଶବ୍ଦ ସାଙ୍ଗକୁ ବାଦ୍ୟକାରମାନେ ଘଣ୍ଟ ଘଣ୍ଟା, ଶଙ୍ଖ, ମହୁରୀ, ଖୋଳ, କରତାଳ ବଜାଇ ଆସୁରିକ (Demoniacal) ଶବ୍ଦ ସୃଷ୍ଟି କରନ୍ତି । ବଡଦାଣ୍ଡ ଉପରୁ ଏହାର କାନ ଅତଡା ପ୍ରତିଧ୍ୱନୀ ଆସୁଥିଲେ ମଧ୍ୟ ଭକ୍ତମାନଙ୍କର 'ଜୟ ଜଗନ୍ନାଥ' 'ଜୟ ଜଗନ୍ନାଥ' ଧ୍ୱନି ସଂପୂର୍ଣ୍ଣ ଭାବେ ବାରିହୋଇ ପଡୁଥାଏ । 'ଜୟ ଜଗନ୍ନାଥ' - ଡାକ ସାଙ୍ଗକୁ ସମବେତ ମହିଳାମାନଙ୍କ ହୁଳହୁଳି ଶବ୍ଦରେ ମଧ୍ୟ ବଡଦାଣ୍ଡ ଉଚ୍ଛୁଳି ପଡୁଥାଏ । ଏଇ ସମୟରେ ଭକ୍ତମାନେ ଭାବବିହ୍ୱଳ ହୋଇ ପାଗଳଙ୍କ ପରି ବ୍ୟବହାର କରନ୍ତି । ପୂର୍ବବର୍ଷମାନଙ୍କରେ କେତେ ଭକ୍ତ ଧାର୍ମିକ ଉନ୍ମାଦନାର ବଶବର୍ତ୍ତୀ ହୋଇ ରଥ ଚକତଳେ ଆତ୍ମବିସର୍ଜନ କରିବାକୁ ରଥ ଚାଲିଲା ବେଳେ ଚକାତଳକୁ ଡେଇଁପଡି ବିରାଟ ରଥର ଚକାତଳେ ପେଶିହୋଇ ମୃତ୍ୟୁବରଣ କରିଥିବା ମୁଁ ଶୁଣିଛି । ଖୁସିର କଥା ଯେ, ବର୍ତ୍ତମାନ ସରକାର ଏପରି ନରହତ୍ୟା ବିରୋଧରେ ପ୍ରତ୍ୟେକ ରଥ ଚାରିପଟେ ଏବଂ ରଥ ସାମ୍ନାକୁ କିଛିବାଟ ପର୍ଯ୍ୟନ୍ତ ଶକ୍ତ ଜାଲିର ବ୍ୟବସ୍ଥା କରିଛନ୍ତି, ଯାହାକି ଜଣେ ଆତ୍ମହତ୍ୟା କରିବାକୁ ଡେଇଁଲେ ମଧ୍ୟ ଚକା ତଳକୁ ଯାଇପାରିବ ନାହିଁ । ରଥ ଚକ ତଳକୁ ଡେଇଁ ମୃତ୍ୟୁବରଣ କରିଥିବା ମର୍ମନ୍ତୁଦ ଘଟଣା ଦେଖିଥିବା କେତେକ ଲୋକ ଏବେବି ବଞ୍ଚିଛନ୍ତି । ସେମାନଙ୍କ ପାଖରୁ ଏଇ ଘଟଣା ଶୁଣିଲା ବେଳେ ଦେହ ଶିତେଇ ଉଠେ । ଏପରି ମର୍ମନ୍ତୁଦ ଘଟଣା ଜଗନ୍ନାଥଙ୍କ ପବିତ୍ର ରଥଯାତ୍ରାରେ କଳଙ୍କ ଲଗାଇଥାଏ । ୧୮୫୦ ମସିହାରେ ଲାଓରୀ ଲେଖିଛନ୍ତି 'ରଥ ଚକ ତଳେ ପଡି ମୃତ୍ୟୁବରଣ କରିବା ଘଟଣା ବହୁ ଦିନରୁ ବନ୍ଦ ହୋଇଗଲାଣି ବୋଲି କହିବା ବୃଥା' । ସେଇବର୍ଷ ସ୍ଟୁଟନ ତାଙ୍କ ପ୍ରକାଶିତ ପୁସ୍ତକରେ ଉଲ୍ଲେଖ କରିଥିଲେ ଯେ, ସେତେବେଳେ ମଧ୍ୟ ବେଳେ ବେଳେ ଭକ୍ତମାନେ ରଥ ଚକ ତଳକୁ ଡେଇଁ

ଆତ୍ମବିସର୍ଜନ କରୁଥିଲେ । ମୁଁ ଭାବୁଛି, ସୁଟନଙ୍କ ଏ ସଂପର୍କରେ ପ୍ରତ୍ୟକ୍ଷ ଜ୍ଞାନ ନାହିଁ କାରଣ ଷ୍ଟର୍ଲିଂ ୧୮୨୫ ମସିହାରେ ଲେଖିଛନ୍ତି 'ମୋର ଚାରିବର୍ଷ କାଳ ରଥଯାତ୍ରା ଦେଖିଥିବା ସମୟରେ ତିନୋଟି ଆତ୍ମାହୂତି ଘଟଣା ମୋ' ନଜରକୁ ଆସିଥିଲା । ସେଥିମଧ୍ୟରୁ ପ୍ରଥମ ଘଟଣା ପ୍ରକୃତରେ ଆତ୍ମାହୂତି କି ନୁହେଁ ମୋର ସନ୍ଦେହ - ବୋଧେ ଦୁର୍ଘଟଣା ହୋଇପାରେ । ଅନ୍ୟ ଦୁଇଟି ଘଟଣାରେ ଆତ୍ମାହୂତି ଦେଇଥିବା ୨ଜଣ ବ୍ୟକ୍ତି ଦୀର୍ଘଦିନ ଧରି ଦୁରାରୋଗ୍ୟ ରୋଗରେ ପୀଡିତ ଥିଲେ । ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ସେମାନେ ଅନ୍ୟ ପ୍ରକାର ଆତ୍ମହତ୍ୟା ଠାରୁ ଏପରି କାର୍ଯ୍ୟକୁ ଗୁରୁତ୍ୱ ଦେଇଥିଲେ ।' ପୂର୍ବେ ଇଜିପ୍ଟ ଏବଂ ଫୋଏନସିଆରେ ପୂଜା ସମୟରେ ଯେପରି ଘଟଣାମାନ ଘଟୁଥିଲା, ଜଗନ୍ନାଥ ଧାମରେ ମଧ୍ୟ ସେହିପରି ଘଟଣା ରଥଟଣା ସମୟରେ ଘଟୁଥିଲା । ରଥଚକା ତଳେ ଆତ୍ମାହୂତି ଦେଉଥିବା ଲୋକର ରକ୍ତ, ମାଂସରେ ବଡଦାଣ୍ଡ ରକ୍ତରଞ୍ଜିତ ହେଉଥିଲା । ହଜାର ହଜାର ଭକ୍ତ, ଖଣ୍ଡ ବିଖଣ୍ଡିତ ମାନବ ଶରୀର ଉପରେ ଦଳିଚକଟି ଚାଲି ଯାଉଥିଲେ । ଲୋକମାନଙ୍କର ବିଶ୍ୱାସ, ଏପରି ପବିତ୍ର ମାଟି ଉପରେ ମୃତ୍ୟୁବରଣରେ ସେମାନେ ସ୍ୱର୍ଗପ୍ରାପ୍ତି ଲାଭ କରନ୍ତି । ବର୍ତ୍ତମାନ ମୁଁ ଭାବୁଛି, ଭାରତ ବର୍ଷରେ ଅନ୍ୟ କୌଣସି ସ୍ଥାନରେ ଏପରି ଘଟଣା ସର୍ବସାଧାରଣରେ ଘଟୁନି । ସରକାର ଏପରି ବର୍ବର କାର୍ଯ୍ୟ ପାଇଁ ନିର୍ଦ୍ଦିଷ୍ଟ ପଦକ୍ଷେପ ଗ୍ରହଣ କରି ଏହାର ନିବାରଣ କରିଛନ୍ତି । ଯଦି କେଉଁ ସ୍ଥାନରେ 'ସତୀ', ଶିଶୁବଳୀ କିମ୍ବା କାଳୀ, ଶିବ ମନ୍ଦିରରେ ନରବଳୀ ପରି ଘଟଣା ଘଟୁଛି, ତାହା ଲୋକଲୋଚନର ଅଗୋଚରରେ ଘଟୁଛି, କାରଣ ଏପରି କାର୍ଯ୍ୟ କରୁଥିବା ବ୍ୟକ୍ତିମାନେ ଭଲଭାବେ ଜାଣନ୍ତି ଯେ, ଏହା ଜଘନ୍ୟ ବର୍ବରୋଚିତ ହତ୍ୟା, ବେଆଇନ ଏବଂ ଦଣ୍ଡନୀୟ । ଯଦିଓ ଆଜିକାଲି ଜଗନ୍ନାଥଙ୍କ ରଥଚକ ତଳେ ଆତ୍ମାହୂତି ଦେବା ଘଟଣା ଆଉ ଘଟୁନି କିନ୍ତୁ ଏହି ସ୍ଥାନ, ଏହି ଯାତ୍ରା ସହିତ ସଂପୃକ୍ତ ବହୁ ଘଟଣା ଏବଂ ଯାତ୍ରାର ସମୟ, ତୀର୍ଥଯାତ୍ରୀମାନଙ୍କ ଜୀବନ ପ୍ରତି ବିପଦ ସୃଷ୍ଟି କରୁଛି । ଏ ସଂପର୍କରେ ମୁଁ ସ୍ୱତନ୍ତ୍ର ଭାବେ ବର୍ଣ୍ଣନା କରିବି ।

## ଜଗନ୍ନାଥ ମନ୍ଦିର

ଜଗନ୍ନାଥଙ୍କର ଏହି ମହାନ ମନ୍ଦିରକୁ ସଠିକ୍ ଭାବେ କାଲକାଟା ଖ୍ରୀଷ୍ଟିଆନ ଅବଜରଭର ରେଭରେଣ୍ଡ, ଏ.ଏଫ୍.ଲାକ୍ରୋଇସ୍ (A.F.LACROIX) ସେପ୍ଟେମ୍ବର ୧୮୪୯ ମସିହାରେ ବର୍ଣ୍ଣନା କରିଥିଲେ । ବଡଦେଉଳ, ମୁଖଶାଳା, ଭୋଗମଣ୍ଡପ, ଜଗମୋହନ ସଂପର୍କରେ ତାଙ୍କର ଟିପ୍ପଣୀ ନିମ୍ନରେ ପ୍ରଦତ୍ତ କରାଗଲା ।

ପୁରୀ ସହରର ମଧ୍ୟଭାଗରେ ୬୨୦ ଫୁଟ X ୬୦୦ ଫୁଟ ପରିବେଷ୍ଟନୀ ମଧ୍ୟରେ ୨୦ ଫୁଟ ଉଚ୍ଚ ପଥର ପାଚେରୀ ଘେର ଭିତରେ ଜଗନ୍ନାଥଙ୍କ ମନ୍ଦିର ଅବସ୍ଥିତ । ପାଚେରୀର ଚାରି ଦିଗରେ ଚାରୋଟି ଦ୍ୱାର ଅଛି । ସବୁଠାରୁ ବନ୍ଦନୀୟ ଦ୍ୱାର ହେଲା ମନ୍ଦିରର ପୂର୍ବ

ଦିଗରେ ବଡଦାଣ୍ଡକୁ ମୁହଁ କରିଥିବା ଦ୍ୱାର, ଯାହାର ଦୁଇ ପାର୍ଶ୍ୱରେ ଦୁଇଟି ବିରାଟକାୟ ପଥର ନିର୍ମିତ ସିଂହମୂର୍ତ୍ତି ଥିବା ଯୋଗୁଁ 'ସିଂହଦ୍ୱାର' ନାମରେ ନାମିତ । ସିଂହଦ୍ୱାର ସାମ୍ନା ବଡଦାଣ୍ଡ ଉପରେ ୪୦ଫୁଟ ଉଚ୍ଚର ଏକ ସୁନ୍ଦର କାରୁକାର୍ଯ୍ୟ ଖଚିତ କଳାମୁଗୁନି ପଥରର ସ୍ତମ୍ଭ ଦଣ୍ଡାୟମାନ । ସବୁଠାରୁ ଆଶ୍ଚର୍ଯ୍ୟ କଥା ଯେ, ସ୍ତମ୍ଭଟିର କଳାକୃତି ଗ୍ରୀସିୟାନ ଝାଇଲି । ପୁରୀଠାରୁ ୪୦ ମାଇଲ୍ ଦୂର କୋଣାର୍କ (ବ୍ଲାକ୍ ପାଗୋଡା) ଠାରୁ ଏହି ସ୍ତମ୍ଭକୁ କିଛିବର୍ଷ ତଳେ ଅଣାଯାଇ ବର୍ତ୍ତମାନ ସ୍ଥାନରେ ସ୍ଥାପିତ କରାଯାଇଛି । ଏହି ସ୍ତମ୍ଭର ଉପର ଭାଗରେ ଗୋଟିଏ ଛୋଟ ମୁଗୁନି ପଥରର ହନୁମାନ ମୂର୍ତ୍ତି ଅଛି । ମନ୍ଦିର ପରିସର ମଧ୍ୟରେ ହିନ୍ଦୁମାନଙ୍କର ମୁଖ୍ୟ ଦେବାଦେବୀଙ୍କର ୫୦ରୁ ଉର୍ଦ୍ଧ୍ୱ ଛୋଟବଡ ମନ୍ଦିରମାନ ଅଛି । କିନ୍ତୁ ସବୁଠାରୁ ପରିଷ୍କାର ଭାବେ ଜଣାପଡୁଥିବା ୨୦୦ ଫୁଟ ଉଚ୍ଚ ଏବଂ ୪୨ଫୁଟ ବ୍ୟାସାର୍ଦ୍ଧର ପଥର ନିର୍ମିତ ମନ୍ଦିର 'ବଡ ଦେଉଳ' ଭାବେ ଜଣାଶୁଣା । ଏହି ମନ୍ଦିର ମଧ୍ୟରେ ମାର୍ବଲ ନିର୍ମିତ ଏକ ଉଚ୍ଚ ପ୍ଲାଟଫର୍ମ ଅଛି, ଯାହାକୁ ହିନ୍ଦୁମାନେ 'ରତ୍ନ ସିଂହାସନ' ବୋଲି କୁହନ୍ତି । ଏହି ପ୍ଲାଟଫର୍ମ ଉପରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ସବୁବେଳ ପାଇଁ ଦଣ୍ଡାୟମାନ ଅବସ୍ଥାରେ ରହିଛନ୍ତି । ମୁଖ୍ୟ ମନ୍ଦିର ସହିତ ଆଉ ଦୁଇଟି ପିରାମିଡ୍‌କାଲ ମନ୍ଦିର ଅଛି, ଯାହାକୁ ମୁଖଶାଳା ଓ ଭୋଗ ମଣ୍ଡପ ବୋଲି କୁହାଯାଏ । ଏହି ଦୁଇଟି ପିରାମିଡ୍‌କାଲ ମନ୍ଦିର ମଝିରେ 'ଜଗମୋହନ' ଅବସ୍ଥିତ । ଏହି ତିନୋଟି ସମ୍ମିଶ୍ରଣରେ ସଂପୂର୍ଣ୍ଣ ହୁଏ 'ବଡ ଦେଉଳ' । ପ୍ରତ୍ୟେକ ଦିନ ଭୋଗ ମଣ୍ଡପ ଉପରେ ତୀର୍ଥଯାତ୍ରୀମାନଙ୍କ ପାଇଁ ରନ୍ଧା ହୋଇଥିବା ପବିତ୍ର ଖାଦ୍ୟ, ଦେବତାମାନଙ୍କର ଭୋଗ ପାଇଁ ଅଣାଯାଏ । ଜଗମୋହନରେ ପ୍ରତ୍ୟେକ ଦିନ ନୃତ୍ୟାଙ୍ଗନାମାନେ ଠାକୁର ଏବଂ ସେବକମାନଙ୍କ ଉଦ୍ଦେଶ୍ୟରେ ନୃତ୍ୟ ପରିବେଷଣ କରନ୍ତି । ଗମ୍ଭୀରାର ଉପରି ଭାଗ ଛାତ ଦେହରେ ବିଭିନ୍ନ ପ୍ରକାର ମୂର୍ତ୍ତି, ହାତୀ, ଗ୍ରୀଫିନ୍ସ ଏବଂ ବଡ ବଡ ମୂର୍ତ୍ତିମାନ ମନ୍ଦିରର ଶୋଭା ବର୍ଦ୍ଧନ ପାଇଁ ରଖାଯାଇଛି । ମନ୍ଦିରର ବାହାର କାନ୍ଥମାନଙ୍କରେ ବହୁ ସ୍ଥାନରେ ଅଶ୍ଳୀଳ ମୂର୍ତ୍ତିମାନ ଖୋଳା ଯାଇ ଖଞ୍ଜା ହୋଇଛି । ଓଡ଼ିଶାର ଛୋଟ ହେଉକି ବଡ ହେଉ, ପ୍ରତ୍ୟେକ ମନ୍ଦିର ଗାତ୍ରରେ ଏପରି ଅଶ୍ଳୀଳ ମୂର୍ତ୍ତିମାନ ଦେଖିବାକୁ ମିଳେ । ଯେତେବଡ ଅଫିସର ହେଲେ ମଧ୍ୟ ୟୁରୋପୀୟାନ ମାନଙ୍କୁ ମନ୍ଦିର ମଧ୍ୟକୁ ପ୍ରବେଶ ନିଷେଧ । ସେମାନେ ପ୍ରବେଶ କଲେ ମନ୍ଦିର ଅପବିତ୍ର ହୋଇଯାଏ ବୋଲି ପୂଜକମାନେ କହନ୍ତି ।

## ମନ୍ଦିର ପ୍ରତିଷ୍ଠାନ

ଦୈନନ୍ଦିନ ମନ୍ଦିର ପରିଚାଳନା ସଂପର୍କ ସେଇ ଲେଖକ କହିଛନ୍ତି 'ମନ୍ଦିର ପରିଚାଳନା ପାଇଁ ୩୬ଗୋଟି ନିଯୋଗର ବ୍ୟବସ୍ଥା କରାଯାଇଛି । ଏଥିମଧ୍ୟରୁ ଗୋଟିଏ ଗୋଟିଏ ନିଯୋଗ ଭାଗ ଭାଗ ହୋଇ ବହୁ ସେବାରେ ବିଭକ୍ତ ହୋଇଛି । ପ୍ରାୟ ୬୪୦ଜଣ ସେବକ ଦୈନନ୍ଦିନ କାର୍ଯ୍ୟ ପାଇଁ ନିୟୋଜିତ ହୋଇଥାନ୍ତି । ସେମାନଙ୍କ ମଧ୍ୟରୁ କେତେକଙ୍କ

ସେବା ସଂପର୍କରେ ନିମ୍ନରେ କୁହାଗଲା । ଖଟସଜ ମେକାପ ପ୍ରତ୍ୟେକ ଦିନ ରାତ୍ରିରେ ଜଗନ୍ନାଥଙ୍କ ଶୋଇବାର ବ୍ୟବସ୍ଥା କରନ୍ତି । ପଶୁପାଳକ ତାଙ୍କୁ ସକାଳୁ ଉଠାଇଥାନ୍ତି । ମୁଖ ପ୍ରକ୍ଷାଳନ ସେବକ ହେଲେ ପ୍ରତିହାରୀ, ତାଙ୍କ ମୁହଁ ଧୋଇବା ପାଇଁ ପାଣି, ଦାନ୍ତ ଘଷିବା ପାଇଁ ଦାନ୍ତକାଠି, ପ୍ରତ୍ୟେକ ଦିନ ଯୋଗାଇ ଦିଆଯାଏ । ଚିତ୍ରକର ସେବକ ମୁହଁ ଏବଂ ଆଖି ଚିତ୍ର କରିବା, ଆଉଜଣେ ଅଧିକାରୀ ତାଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତି କରିବା, ଅନ୍ୟଜଣେ ସେବକ ପାନ ପ୍ରସ୍ତୁତ କରିଦେବା, ତାଙ୍କ ଅଙ୍ଗବସ୍ତ୍ର ସଫା କରିବା ପାଇଁ ଧୂଆ ସେବକ, ତାଙ୍କ ଲୁଗାପଟା ଗଣି ରଖିବାକୁ ଚାଙ୍ଗଡା, ଛତ୍ରଧାରଣ କରିବାକୁ ଛତ୍ରାରୁହ, ପୂଜା ପାଇଁ ନୀତି ନିର୍ଘଣ୍ଟ ଜଣାଇ ଦେବାକୁ ଖୁଣ୍ଟିଆ ସେବକମାନେ ନିୟୋଜିତ ହୋଇଥାନ୍ତି । ଏହାଛଡା ଜଗନ୍ନାଥଙ୍କ ରୋଷଘରେ, ପ୍ରସାଦ ପ୍ରସ୍ତୁତ କରିବାକୁ ୪୦୦ ସୁଆର ପରିବାର ଅଛନ୍ତି । ୧୨୦ଜଣ ନାଚୁଣୀ (Dancing Girl) ସେବିକା ଅଛନ୍ତି । ମନ୍ଦିରରେ ପୂଜାପଣ୍ଡା-ପ୍ରତିହାରୀଙ୍କ ସଂଖ୍ୟା ୩୦୦୦ ପର୍ଯ୍ୟନ୍ତ ହେବ ଯେଉଁମାନଙ୍କ ମଧ୍ୟରେ ବିଭିନ୍ନ ଗ୍ରେଡେସନର କାର୍ଯ୍ୟକ୍ରମ ଥାଏ । ସେମାନଙ୍କ ମଧ୍ୟରୁ ବହୁତ ଅଛନ୍ତି, ଯେଉଁମାନେ ଖୁବ୍ ଧନାଢ୍ୟ ବ୍ୟକ୍ତି । ସ୍ୱତନ୍ତ୍ର ଭାବେ ଦୁଇଗୋଷ୍ଠୀଙ୍କ ସଂପର୍କ କୁହାଯାଇପାରେ, ପ୍ରତିହାରୀ ଯେଉଁମାନେ ମନ୍ଦିର ଭିତର କାର୍ଯ୍ୟମାନ ସଂପାଦନ କରିଥାନ୍ତି ଏବଂ ତୀର୍ଥଯାତ୍ରୀମାନଙ୍କୁ ନେଇ ଠାକୁର ଦର୍ଶନ କରାଇଥାନ୍ତି ଏବଂ ଧୂଳିଆ (Pilgrim hunters) ପଣ୍ଡାମାନେ ଉପରୋକ୍ତ ସେବକ ଗୋଷ୍ଠୀ ଦ୍ୱାରା ବିଭିନ୍ନ ସ୍ଥାନକୁ ପ୍ରେରିତ ହୋଇ, ପୁରୀକୁ ତୀର୍ଥଯାତ୍ରୀମାନଙ୍କୁ ଆଣିବା ପାଇଁ ପ୍ରବର୍ତ୍ତାଇଥାନ୍ତି । କିନ୍ତୁ ତୀର୍ଥଯାତ୍ରୀମାନେ ସବୁ ପୂଜକ ଗୋଷ୍ଠୀକୁ 'ପଣ୍ଡା' ଆଖ୍ୟା ଦେଇ ଡାକିଥାନ୍ତି ।

## ଭିନ୍ନ ଭିନ୍ନ ବର୍ଷରେ ଜଗନ୍ନାଥ ଧାମକୁ ଆସିଥିବା ଯାତ୍ରୀମାନଙ୍କ ସଂଖ୍ୟା

ପ୍ରତ୍ୟେକ ବର୍ଷ ହଜାର ହଜାର ସଂଖ୍ୟାରେ ତୀର୍ଥଯାତ୍ରୀ ପୁରୀକୁ ରଥଯାତ୍ରା ସମୟରେ ଆସିଥାନ୍ତି । ଏ ବର୍ଷ ରଥଯାତ୍ରାକୁ ମୋ' ଅନୁମାନରେ ଏବଂ ଅନ୍ୟମାନଙ୍କ ହିସାବରୁ ପ୍ରାୟ ୫୦ହଜାର ଯାତ୍ରୀ ଆସିବାର ଜଣାପଡିଛି । ଏମାନଙ୍କ ଛଡା ପୁରୀ ସହରର ସ୍ଥାୟୀ ଲୋକ ସଂଖ୍ୟା ୨.୫ରୁ ୩୦ ହଜାର ହେବେ । ମୋର ମନେ ହେଉଛି, ପୁରୀକୁ ଆସୁଥିବା ଯାତ୍ରୀ ସଂଖ୍ୟା ବର୍ଷକୁ ବର୍ଷ କିପରି କମି କମି ଯାଉଛି । ୧୮୪୯ ମସିହାରେ, ୟୁରୋପୀୟାନ ମିଶନାରୀମାନେ ଯେଉଁମାନେ ରଥଯାତ୍ରା ସମୟରେ ପୁରୀରେ ଉପସ୍ଥିତ ଥିଲେ ସେମାନଙ୍କ ହିସାବରେ ସେ ବର୍ଷ ରଥଯାତ୍ରାକୁ ୧ଲକ୍ଷ ୫୦ ହଜାର ଯାତ୍ରୀ ଆସିଥିଲେ (ସୁଟନ) ୧୮୨୫ ମସିହା, ଜୁଲାଇ ମାସରେ ହୋଇଥିବା ରଥଯାତ୍ରାରେ ୨,୨୫୦୦୦ ଯାତ୍ରୀ ଆସିଥିବା କଥା "India's Cries to British Huminity" by - PEGGS " ରେ ଉଲ୍ଲେଖ କରାଯାଇଛି ।

ଷ୍ଟର୍ଲିଂ ଦେଇଥିବା ବିଭିନ୍ନ ବର୍ଷରେ ପୁରୀକୁ ରଥଯାତ୍ରା ସମୟରେ ଆସିଥିବା ଯାତ୍ରୀଙ୍କ ସଂଖ୍ୟା ନିମ୍ନରେ ପ୍ରଦତ୍ତ କରାଗଲା ।

୧୮୧୭-୧୮ = ୭୫,୬୪୧
୧୮୧୮-୧୯ = ୪୧,୧୧୧
୧୮୧୯-୨୦ = ୧,୩.୮୭୪
୧୮୨୦-୨୧ = ୩୩,୪୪୬
୧୮୨୧-୨୨ = ୫୨,୧୬୦

ପୁରୀ ଜିଲ୍ଲାପାଳ ମିଃ ରାବନ, ତାଙ୍କ ଚିଠି ନମ୍ବର ୯୩୧ ତାରିଖ ୧୯ ଫେବୃୟାରୀ ୧୮୬୮ରେ କଟକ କମିଶନରଙ୍କ ପାଖକୁ ଦେଇଥିବା ଚିଠିରେ ପୁରୀକୁ ବିଭିନ୍ନ ବର୍ଷ ରଥଯାତ୍ରା ସମୟରେ ଆସିଥିବା ଯାତ୍ରୀଙ୍କ ଏବଂ ସେମାନଙ୍କ ପାଖରୁ ଯାତ୍ରୀ କର ଆଦାୟ କରାଯାଇଥିବା ଯାତ୍ରୀଙ୍କ ସଂଖ୍ୟା ନିମ୍ନରେ ପ୍ରଦାନ କରାଗଲା । ଟ୍ୟାକ୍ସ ଦେଇଥିବା ଯାତ୍ରୀମାନଙ୍କ ସଂଖ୍ୟା

୧୮୧୬-୧୭ - ୨୮,୮୪୯
୧୮୧୭-୧୮- ୩୩,୭୭୪
୧୮୧୮-୧୯- ୩୩,୦୧୫
୧୮୧୯-୨୦- ୬୨,୪୩୫
୧୮୨୦-୨୧- ମିଳିନି
୧୮୨୧-୨୨- ୪୨,୬୬୨
୧୮୨୨-୨୩- ୮୫,୮୦୨
୧୮୨୩-୨୪- ୨୯,୧୨୩
୧୮୨୪-୨୫- ୩୧,୧୦୧
୧୮୨୫-୨୬- ୯୮,୭୨୩
୧୮୨୬-୨୭- ୩୧,୨୬୫
୧୮୨୭-୨୮- ୩୬,୩୯୭
୧୮୨୮-୨୯- ୬୦,୦୪୧
୧୮୨୯-୩୦- ୪୦,୩୮୯
୧୮୩୦-୩୧- ୬୬,୪୯୪
୧୮୩୧-୩୨- ୨୧,୨୪୩
୧୮୩୨-୩୩- ୨୮,୦୧୨
୧୮୩୩-୩୪- ୨୮,୫୭୯

୧୮୩୪-୩୫- ୩୫,୩୧୪
୧୮୩୫-୩୬- ୩୭,୯୦୯
୧୮୩୬-୩୭- ୨୭,୬୮୧
୧୮୩୭-୩୮- ୨୯,୩୩୪

ମୁଁ ପୁରୀରେ ଅବସ୍ଥାନ କରୁଥିବା ସମୟରେ ସରକାରୀ ପୁରୁଣା ଫାଇଲରୁ ମିଳିଥିବା ତଥ୍ୟ ଅନୁସାରେ ଟିକସ ଦେଇଥିବା ଓ ନଦେଇଥିବା ଯାତ୍ରୀଙ୍କ ସଂଖ୍ୟା-

୧୮୧୬ = ୬୯,୬୩୬
୧୮୧୮ = ୬୬,୬୦୫
୧୮୧୯ = ୭୫,୮୭୬
୧୮୨୦ = ୧,୦.୬୭୪
୧୮୨୧ = ୮୫,୭୨୬
୧୮୨୨ = ୧,୦.୬୮୮
୧୮୨୩ = ୧,୨.୯୭୬
୧୮୨୪ = ୭୧,୭୦୨
୧୮୨୫ = ୭୨,୭୨୯
୧୮୨୬ = ୧,୬.୮୬୧
୧୮୨୭ = ୭୬,୭୧୯
୧୮୨୮ = ୯୧,୧୩୧
୧୮୨୯ = ୧,୨.୪୨୨

ଦି ବାପିଷ୍ଟ ମିଶନାରିଜ୍ ଓଡ଼ିଶା, ୧୮୫୮ ମସିହାରେ ପ୍ରକାଶ କରିଥିବା ସେମାନଙ୍କ ରିପୋର୍ଟରେ ଦର୍ଶାଇଛନ୍ତି ଯେ, ପ୍ରତ୍ୟେକ ବର୍ଷ ମନ୍ଦିରର ପ୍ରତିନିଧିମାନେ ଲକ୍ଷାଧିକ ଯାତ୍ରୀଙ୍କୁ ପୁରୀ ଆଣିଥାନ୍ତି । ଆଜି ସେ କଥା ଆଉ ସମ୍ଭବ ଦିଶୁନି । ସେମାନେ ତାଙ୍କର ୧୮୬୪-୬୫ ମସିହାର ରିପୋର୍ଟରେ ଦର୍ଶାଇଛନ୍ତି, ୧୮୬୪ ମସିହା ଜୁଲାଇ ୬ ତାରିଖ ଦିନ ପଡିଥିବା ରଥଯାତ୍ରାକୁ ୪୦,୦୦୦ରୁ ଅଧିକ ଯାତ୍ରୀ ଆସିନଥିଲେ । ସେ ବର୍ଷ ହଇଜାରେ ବହୁ କମ୍ ଯାତ୍ରୀ ମୃତ୍ୟୁବରଣ କରିଥିବା କଥା ସେମାନେ ମଧ୍ୟ ଉଲ୍ଲେଖ କରିଛନ୍ତି ।

ସେଇ ବାପିଷ୍ଟି ମିଶନ ରିପୋର୍ଟ ୧୮୬୫-୧୮୬୬ରେ ସେମାନେ ଦର୍ଶାଇଛନ୍ତି ଯେ, ୧୮୬୫ ମସିହାରେ ମାତ୍ର ୪୫୦୦୦ ଯାତ୍ରୀ ରଥଯାତ୍ରାକୁ ଆସିଥିଲେ । ଏଇ ଯାତ୍ରୀମାନଙ୍କ ମଧ୍ୟରୁ ୩୧୦୦୦ ହେଉଛନ୍ତି ବଙ୍ଗାଳୀ' ଯାତ୍ରୀ । ପ୍ରତ୍ୟେକ ୪୦ଜଣ ଯାତ୍ରୀରେ ୩୯ଜଣ ମହିଳା ଥିବାବେଳେ ଜଣେ ମାତ୍ର ପୁରୁଷ ଯାତ୍ରୀ ଥିଲେ । ସେ ବର୍ଷ

୧,୩୭୨ ଜଣ ଯାତ୍ରୀ ମୃତ୍ୟୁବରଣ କରିଥିବା କଥା ରିପୋର୍ଟରେ କୁହାଗଲା ବେଳେ ସେହି ରିପୋର୍ଟରେ ଦର୍ଶାଇଛନ୍ତି 'ସେମାନଙ୍କ ମଧ୍ୟରୁ ଫେରିବା ବାଟରେ କେତେ ମଲେ ଗଲେ- ସେକଥା କିଏ କହିବ ।'

ଓଡ଼ିଶା ମିଶନ ରିପୋର୍ଟ - ୧୮୬୬-୬୭ରୁ ମୁଁ ଜାଣିବାକୁ ପାଇବି, ୧୮୬୬ ମସିହା ରଥଯାତ୍ରା ସମୟରେ ଆଙ୍ଗୁଠି ଆଗରେ ଗଣା ହେବା ଭଳି କେତେଜଣ ଯାତ୍ରୀ ଆସିଥିଲେ । ଏତେ କମ୍ ସଂଖ୍ୟାର ଯାତ୍ରୀ ରଥଯାତ୍ରା ଦିନ ଥିଲେ ଯେ, ଲୋକାଭାବରୁ ସେଦିନ ରଥଟଣା ହୋଇପାରିବ କି ନାହିଁ ଗୋଟେ ସମୟରେ ସନ୍ଦେହ ସୃଷ୍ଟି ହୋଇଥିଲା । ପଣ୍ଡା ପ୍ରତିହାରୀମାନେ ଅବସ୍ଥାକୁ ଦେଖି ଚିନ୍ତାରେ ପଡି ଯାଇଥିଲେ । ସେହିବର୍ଷ (୧୮୬୬ ମସିହା) ଓଡ଼ିଶାରେ ପ୍ରଳୟଙ୍କରୀ ଦୁର୍ଭିକ୍ଷ ପଡିଥିଲା । ଯାହା ସଂପର୍କରେ ମୁଁ ପରେ ବର୍ଣ୍ଣନା କରିବି ।

୧୮୬୭ ମସିହା ରଥଯାତ୍ରା ଦିନ ରେଭଣ୍ଡର ମିଃ ଗଡବାଏ ପୁରୀରେ ଉପସ୍ଥିତ ଥିଲେ । ସେ ଲେଖିଛନ୍ତି 'ମୋର ପୁରୀକୁ ଆସିବା ଏଥିମଧ୍ୟରେ ଆଠବର୍ଷ ବିତିଗଲାଣି । ଯେଉଁ କାରଣରୁ ରଥଯାତ୍ରା ବେଳେ ପୁରୀକୁ ଯାତ୍ରୀ ଆସିବା କମି ଯାଇଛି, ମୁଁ ଆଶାକରେ ଭବିଷ୍ୟତ ବର୍ଷମାନଙ୍କରେ ଏହି ସଂଖ୍ୟା ନିଶ୍ଚିତ ଭାବେ ବୃଦ୍ଧି ପାଇବ ।' (ରିପୋର୍ଟ - ୧୮୬୭-୬୮)

ମୁଁ ଭାବୁଛି, ଏବେ ମଧ୍ୟ ନିଃସନ୍ଦେହରେ କୁହାଯାଇପାରେ ଯେ, ବିଗତ ବର୍ଷ ତୁଳନାରେ ପୁରୀରେ ଯାତ୍ରୀମାନଙ୍କ ସଂଖ୍ୟା କମିଛି । ବର୍ତ୍ତମାନ ହାରାହାରି ୫୦ ହଜାର ଯାତ୍ରୀ ଆସୁଛନ୍ତି । ଆଗେ ଏହା ଯଥେଷ୍ଟ ଅଧିକା ଥିଲା । ୧୮୦୪-୦୫ ମସିହା ବେଳେ ଇଂରେଜ ସରକାର ଯାତ୍ରୀ ଟିକସ ବସାଇ ନଥିଲେ । ଯାତ୍ରୀଙ୍କ ସଂଖ୍ୟା ଯଥେଷ୍ଟ ଅଧିକ ଥିଲା ଏବଂ ସେହି ତୁଳନାରେ ମୃତ୍ୟୁ ସଂଖ୍ୟା ମଧ୍ୟ ବେଶ୍ ବହୁତ ଥିଲା । ୧୮୨୧ ମସିହାରେ ଯାତ୍ରୀଙ୍କ ସଂଖ୍ୟା ବହୁଳ ଭାବେ କମି ଯାଇଥିଲା । ଏତେ କମ୍ ସଂଖ୍ୟାର ଯାତ୍ରୀ ଏବଂ ଯାତ୍ରାକାଳୀନ ପୀଡନ ଓ ମୃତ୍ୟୁକୁ ଦେଖି ବ୍ରାହ୍ମଣମାନେ ଜଗନ୍ନାଥଙ୍କ ପୂଜାକୁ ପୁରୀରୁ ଉଠାଇ ନେଇ ଭାରତର କେନ୍ଦ୍ରସ୍ଥଳୀ ରାଜ୍ୟରେ କରିବାକୁ ପରାମର୍ଶ ଦେଇଥିଲେ । ଭାଗ୍ୟର କଥା, ଏପରି ପଦକ୍ଷେପ ନିଆଯାଇ ନଥିଲା । ପୁରୀ ଅପରିଷ୍କାର, ଜନବହୁଳ ହୋଇପାରେ ମାତ୍ର ଅନ୍ୟାନ୍ୟ ସୁବିଧା ଏଠାରେ ଅଧିକ । ଦେଶର ପୂର୍ବ ଉପକୂଳରେ ଏହାର ଅବସ୍ଥିତି ଯୋଗୁଁ ବର୍ଷକର ପ୍ରାୟ ସମୟରେ ଏଠାରେ ସୁଶୀତଳ କଲ୍ଲୋଳ ପ୍ରବାହମାନ ହୋଇଥାଏ ।

ରଥଯାତ୍ରା ସଂପର୍କରେ ସବୁକିଛି କୁହାଗଲେ ମଧ୍ୟ ଆଗ ଦିନର ଆଡମ୍ବର ଆଉ ନାହିଁ । ସବୁ ଦେଶର ଇତିହାସ କୁହେ, ଏପରି ଆଡମ୍ବରପୂର୍ଣ୍ଣ ପୂଜା ପଦ୍ଧତି, ଯାତ୍ରାରେ ଦିନେନା ଦିନେ ଅବକ୍ଷୟ ଆସିଥାଏ । ଧୂଳିଆ ପଣ୍ଡାମାନେ ଯେପରି ପୂର୍ବେ ଦେଶର

ବିଭିନ୍ନ ସ୍ଥାନକୁ ବୁଲି ଯାତ୍ରୀମାନଙ୍କୁ ଶ୍ରୀଜୀଉଙ୍କ ଦର୍ଶନକୁ ଆସିବା ପାଇଁ ପ୍ରବର୍ତ୍ତାଉଥିଲେ, ଏବେ ସେମାନଙ୍କ ପାଖେ ସେ ପୂର୍ବ ଆଗ୍ରହ ଆଉ ଦେଖିବାକୁ ମିଳୁନି । ତା'ଛଡା ଯାତ୍ରୀମାନେ ବୋଧେ ଶେଷରେ ଜାଣିପାରିଲେଣି ଯେ, ଶ୍ରୀଜୀଉଙ୍କ ଦର୍ଶନରେ, ପୂଜାର୍ଚ୍ଚନାରେ ଯେତିକି ଆନନ୍ଦ ମିଳୁନି, ତା'ଠାରୁ ବଳି କଷ୍ଟ ସହିବାକୁ ପଡୁଛି । ଜଗନ୍ନାଥଙ୍କ ଦର୍ଶନ ଭୟଙ୍କର ରୋଗ ଓ ମୃତ୍ୟୁର ଗାଥା ହୋଇପଡିଲାଣି । ସରକାର ଏ ଦିଗରେ ଯେତିକି ସୁବିଧା ଯୋଗାଇ ଦେବା କଥା, ତାହା ଯୋଗାଇ ଦେଉନାହାଁନ୍ତି । ମନ୍ଦିରର ଅବସ୍ଥା ଯାହା ହେବାକୁ ବସିଲାଣି, କେବଳ ଆଶା କରିବା କଥା ଯେ, ମନ୍ଦିର ତିଷ୍ଠି ରହୁ । ଯେଉଁ ଦେଶର ଲୋକମାନେ ଆଧୁନିକ ଶିକ୍ଷାକୁ ବିରୋଧ କରନ୍ତି, ସେଠାରେ ମୂର୍ତ୍ତି ପୂଜା ଆଗ୍ରହର ସହ ତିଷ୍ଠି ରହେ । ଜଗନ୍ନାଥଙ୍କ ରଥ ଉପରେ ଟିପ୍ପଣୀ ଦେଇ ମିଃ ପେଗ୍ କହିଥିଲେ 'ଏହି ରଥ ଗୋଟିଏ ଟଳମଳ ଅର୍କ' । କେଉଁ ଦୃଷ୍ଟିରୁ ଏପରି ହୋଇପାରେ ।

ରଥମାନଙ୍କ ମଧ୍ୟରୁ ମୁଖ୍ୟ ରଥର ଉଚ୍ଚତା ୪୫ଫୁଟ, ଏହାର ୧୬ଟି ଚକ, ପ୍ରତ୍ୟେକ ବ୍ୟାସ ୭ଫୁଟ (ବ୍ୟାସ) ଏବଂ ରଥ ଉପର ପ୍ଲାଟଫର୍ମର ଗୋଲେଇ ପ୍ରାୟ ୩୫ ସ୍କୋୟାରଫୁଟ । ଅନ୍ୟ ଦୁଇଟି ରଥ ମୁଖ୍ୟ ରଥଠାରୁ ଉଚ୍ଚତାରେ ଏବଂ ଆୟତନରେ ଛୋଟ । (History of Puri by Brij Kisora Ghose - Head Clerk-CTC. 1848) କାଠରେ ନିର୍ମିତ ଏସବୁ ରଥ ଶଙ୍କୁ ଆକାରର । ରଥଗୁଡିକ ରଙ୍ଗବେରଙ୍ଗ କନାରେ ସୁନ୍ଦର ଭାବେ ସଜ୍ଜା ହୋଇଥାଏ । ପ୍ରତ୍ୟେକ ରଥରେ ବିଭିନ୍ନ ପ୍ରକାର କାରୁକାର୍ଯ୍ୟ ଖଚିତ କାଠ ଓ ରୂପାର ମୂର୍ତ୍ତିମାନ ଖଞ୍ଜା ଯାଇଥାଏ । ରଥକୁ ଯେଉଁସବୁ ରଙ୍ଗବେରଙ୍ଗ କନାରେ ସଜ୍ଜା ଯାଇଥାଏ, ସେଇ କନାଗୁଡିକରେ ପଟାପଟା ଗାରମାନ ଉପରୁ ତଳକୁ ଲମ୍ବ ଭାବେ ପଡିଥାଏ । ରଥରେ ବ୍ୟବହୃତ ହୋଇଥିବା କନାର ମାନ ଏତେ ଉତ୍କୃଷ୍ଟ ଧରଣର ବୋଲି ମନେ ହେଉନଥିଲା । ଯେତେବେଳେ ବ୍ରିଟିଶ ସରକାର ରଥକନା ଯୋଗାଇ ଦେଉଥିଲେ, ସେ କନା ଉଚ୍ଚକୋଟୀର ଥିଲା । ଯାହା ଜଣାପଡୁଛି, ଆଗେ ଯେପରି ଜାକଜମକରେ ରଥଯାତ୍ରା ପାଳନ କରାଯାଉଥିଲା, ଏବେ ଅର୍ଥାଭାବରୁ ସେଥିରେ ଅବକ୍ଷୟ ଦେଖାଦେଇଛି । ରଥଯାତ୍ରାର ଗ୍ରାଣ୍ଡିଓର ବର୍ତ୍ତମାନ ଆଉ ନାହିଁ - ସେସବୁ ଅତୀତ ଦିନର ଘଟଣାରେ ପରିଣତ ହେଲାଣି । ଆସ୍ତେ ଆସ୍ତେ ପୁରୀଠାରେ ଅନୁଷ୍ଠିତ ହେଉଥିବା ଏହି ଯାତ୍ରାର ଗୁରୁତ୍ୱ କମିବାରେ ଲାଗିଲାଣି ।

ରଥମାନଙ୍କ ସାମ୍ନାରେ କିଛି ଅଂଶ ଖୋଲା ରଖାଯାଇଥାଏ । ଯାହାର ଠିକ୍ ପଛରେ ପାଞ୍ଚଫୁଟ ଉଚ୍ଚର ମୂର୍ତ୍ତିମାନ ବସିଥାନ୍ତି । ଜଗନ୍ନାଥଙ୍କ ମୁହଁ କଳା, ଆଖି ଦୁଇଟି ଅସାଧାରଣ ଭାବେ ବଡ ବଡ, ଆଖି ଚାରିପଟେ ଧଳା ରଙ୍ଗର ଗାର, ଡୋଳାଗୁଡିକ କଳା ରଙ୍ଗର ଗୋଲାକାର, ନାକ ତୀକ୍ଷ୍ଣ ଏବଂ ଚେପ୍ଟା, ରଙ୍ଗା ଅଧର, ନାଲି ରଙ୍ଗର ଅଧର ମୁହଁ କୋଣରେ ବଙ୍କା ହୋଇ ସାମାନ୍ୟ ଉପରକୁ ଉଠିଥାଏ, ଚିବୁକହୀନ ମୁଖ, କପାଳରେ ହୀରାଖଚିତ

ବହୁ ମୂଲ୍ୟର ଟିକା । ଜଗନ୍ନାଥଙ୍କ ମୁହଁକୁ ଯେକୌଣସି କୋଣରୁ ଦେଖିଲେ ସଂପୂର୍ଣ୍ଣ ଦେଖାଯାଏ । କିନ୍ତୁ କୌଣସି ମୂର୍ତ୍ତିଙ୍କର ହାତ ନାହିଁ । ସମୁଦାୟ ମୂର୍ତ୍ତିର ଆକାର ପ୍ରକାର ଅତ୍ୟନ୍ତ ଭୟଙ୍କର ଓ ବିକଟାଳ । କେବଳ ସେତିକି ନୁହେଁ, ମୂର୍ତ୍ତି ସହିତ ଜଡ଼ିତ ଏହାର ଚତୁର୍ଦ୍ଦିଗର ଘଟଣା ପ୍ରବାହ ମଧ୍ୟ ସେତିକି କଦାକାର । ପୁରୀରେ ମୂର୍ତ୍ତି ପୂଜାକୁ ଦେଖିଲେ ଜଣେ ଚିନ୍ତା କରିପାରିବନି, ମଣିଷର ମନ କେତେଦୂର ନିମ୍ନଗାମୀ ହୋଇପାରେ । ମଣିଷର ସମସ୍ତ ଆଶା, ଭୟ, ଅଭିଳାଷକୁ ଅନ୍ଧାର ଗହ୍ୱର ମଧ୍ୟରେ ବୁଡ଼ିଯିବା ପାଇଁ ଫେଟିସିଜମ୍ ଏପରି ଭାବେ କେବେ ନିର୍ଦ୍ଦେଶ ଦେବା ସନ୍ଦେହଜନକ । ମଣିଷ ରକ୍ତକୁ ନେଇ ପୂଜା ପଦ୍ଧତି, ଅତ୍ୟନ୍ତ ଜଘନ୍ୟ ଅସଭ୍ୟ ହୋଇଥିଲେ ମଧ୍ୟ ସେପରି ପୂଜା ପୁରୀର ଜାନିଯାତ୍ରା ମାନଙ୍କରେ ପ୍ରଚଳନ ଥିଲା । ସମସ୍ତ ମାନବିକତା ଆଇନ କାନୁନ୍‌କୁ ଜଳାଞ୍ଜଳି ଦେଇ ଯେପର୍ଯ୍ୟନ୍ତ ଦେଶର ଶାସକ ଗୋଷ୍ଠୀ ଏ ପ୍ରକାର ପୂଜା ପଦ୍ଧତିର ପ୍ରତିରୋଧ କରିନଥିଲେ, ସେପର୍ଯ୍ୟନ୍ତ ଏ ପ୍ରକାର ପୂଜା ପ୍ରଚଳିତ ଥିଲା । ଏସବୁର ପରିସମାପ୍ତି ସମୟ ହିଁ କହିବ । ଯେତେବେଳ ପର୍ଯ୍ୟନ୍ତ ଲୋକମାନେ ପୂଜକ ଗୋଷ୍ଠୀଙ୍କ ଦ୍ୱାରା କବଳିତ ସେମାନଙ୍କର ଦାସତ୍ୱ ସ୍ୱୀକାର କରି ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ କପୋଳକଳ୍ପିତ ଗାଥା ଉପରେ ବିଶ୍ୱାସ କରି ଆଧୁନିକ ଶିକ୍ଷା ସଂସ୍କୃତି ଠାରୁ ଦୂରେଇ ରହି ପଥର, ମାଙ୍କଡ, ପାଣି, ପବନ, ଗାଈ, ଷଣ୍ଢ, ପକ୍ଷୀ, ମାଛ ଏବଂ ସରିସୃପମାନଙ୍କୁ ପୂଜା କରୁଥିବେ, ସେପର୍ଯ୍ୟନ୍ତ ଏପରି ଅବସ୍ଥାର ପରିବର୍ତ୍ତନ ହେବନାହିଁ ।

ରଥଯାତ୍ରାକୁ ଆସିଥିବା ଯାତ୍ରୀମାନଙ୍କର ବ୍ୟବହାର ଅତ୍ୟନ୍ତ ଶୃଙ୍ଖଳିତ ଏବଂ ଉଚ୍ଚମାନର । ସାଧାରଣରେ ସେମାନେ ଭଦ୍ର । ଉପସ୍ଥିତ ଥିବା ସମସ୍ତ ଯାତ୍ରୀମାନେ ଅତ୍ୟନ୍ତ କଷ୍ଟ ସ୍ୱୀକାର କରି ଆସିଥାନ୍ତି । ଯୁଦ୍ଧରୁ ଫେରିଥିବା ସୈନ୍ୟମାନଙ୍କ ମୁହଁରେ ଥକି ଯିବାର ଛାପ ଦୃଶ୍ୟମାନ ହେଲାପରି ଶହ ଶହ ମାଇଲ ପଥ ଅତିକ୍ରମ କରି ଆସିଥିବା ଏମାନଙ୍କ ମନରେ ଦୃଢ଼ ସଂକଳ୍ପର ଭାବ ପ୍ରଚ୍ଛନ୍ନ ଭାବେ ଫୁଟି ଉଠୁଥାଏ । ଦୀର୍ଘକାୟ, ବର୍ଷିୟାନ, ମସ୍ତକରେ ସଜ୍ଜିତ ପକ୍ୱକେଶ, କପାଳରେ ଚନ୍ଦନର ଗାର, ମୁହଁ ଉପରେ ବୟସର ଛାପ ହାତରେ ଦଣ୍ଡଧରି, ଯାତ୍ରୀମାନଙ୍କ ସାମ୍ନାରେ ଠିଆ ହୋଇ ସେମାନଙ୍କୁ ନିର୍ଦ୍ଦେଶ ଦେଉଥିବା ଗ୍ରାମୀଣ ହିନ୍ଦୁ ମୁରବୀମାନଙ୍କୁ ଦେଖିବା କଥା । ଚିତ୍ରକରମାନଙ୍କ ପାଇଁ ସେମାନେ ଜଣେ ଜଣେ ସୁନ୍ଦର ବିଷୟବସ୍ତୁ । ଜନଗହଳି ମଧ୍ୟରେ ମହିଳାମାନେ ମଧ୍ୟ କମ୍ କୌତୁହଳୀ ନଥିଲେ । ସେମାନେ ଅସୁନ୍ଦରୀ ହୋଇପାରନ୍ତି, ନିଶ୍ଚିତ ଭାବେ ବହୁ ସଂଖ୍ୟାରେ ଅସୁନ୍ଦରୀ, ସେମାନଙ୍କ ଶରୀରରେ ଶକ୍ତି ନଥାଏ ଏବଂ ସମସ୍ତେ ପଥଶ୍ରାନ୍ତ ଯୋଗୁଁ ଥକି ଯବାର ଛାପ ବହନ କରିଥାନ୍ତି, ମାତ୍ର ସେମାନେ ସମସ୍ତେ ଆଶ୍ଚର୍ଯ୍ୟଜନକ ଭାବେ ଦୃଢ଼ ମନୋଭାବାପନ୍ନ ପରି ଜଣାପଡୁଥାନ୍ତି । ଯେତେଦୂରରୁ ଆସିଥିଲେ ମଧ୍ୟ ଯେତେ ପଥ କ୍ଲାନ୍ତ ଶ୍ଲାନ୍ତ ହୋଇଥିଲେ ମଧ୍ୟ ଜଗନ୍ନାଥ ମୂର୍ତ୍ତି ଦର୍ଶନରେ ସେମାନେ ସେତିକି ସୁସ୍ଥ ସବଳ ହୋଇ ଉଠୁଥିବା ପରି

ଜଣାପଡୁଥାନ୍ତି । ଜଣେ ସେହି ଜନସମୁଦ୍ର ଆଡକୁ ଦୃଷ୍ଟି ନିକ୍ଷେପ କଲେ ଦେଖିପାରିବ, ଯେଉଁ ଭକ୍ତମାନେ ଯାତ୍ରା ସ୍ଥଳକୁ ଆସୁଥାନ୍ତି, ସମସ୍ତଙ୍କ ମନରେ ଆନନ୍ଦ, ସମସ୍ତଙ୍କ ଦୃଷ୍ଟି ସେହି ରଥାରୁଢ଼ ମୂର୍ତ୍ତିମାନଙ୍କ ଉପରେ । ଶେଷରେ ସେମାନେ ତାଙ୍କ ସମସ୍ତ ଦୁଃଖ, କଷ୍ଟ, ପଥଶ୍ରାନ୍ତର ପୁରସ୍କାର ପାଇଥିବାର ମହାନନ୍ଦ ଅନୁଭବ କରୁଥାନ୍ତି । ଦର୍ଶନ ପରେ ସେମାନଙ୍କ ମଧ୍ୟରୁ କେତେକ ଦଳବାନ୍ଧି ଏକାଠି ହୋଇ ଫେରିବା ପାଇଁ ପ୍ରସ୍ତୁତ ହେଉଥାନ୍ତି । ଫେରୁଥିବା ଯାତ୍ରୀମାନେ ସାଙ୍ଗରେ ପୁରୀରୁ ଚିତ୍ରପଟ, ଅନ୍ୟାନ୍ୟ ସ୍ମୃତି ସନ୍ତକ, ପୁରୀର ପବିତ୍ର ରିଲିକ୍ ଧରିଥାନ୍ତି, ଯେପରି ଖ୍ରୀଷ୍ଟିୟାନମାନେ ଗାଜାରୁ ଦର୍ଶନ ସାରି ଫେରିଲା ବେଳେ ସାଙ୍ଗରେ ମୂଲ୍ୟବାନ ପଥର ଏବଂ ଗାଜାର ୱାଇନ୍ ସାଙ୍ଗରେ ନେଇଥାନ୍ତି । ପ୍ରାୟ ପ୍ରତ୍ୟେକ ଯାତ୍ରୀ ଗୋଟିଏ ଗୋଟିଏ ପତଳା ଗୋଲେଇ ପେଡି ଦେହରେ ମହାପ୍ରସାଦ କୁଡୁଆମାନ ଭରିକରି ମୁଣ୍ଡେଇ ଚାଲିବା ଦୃଶ୍ୟ ଦେଖାଯାଏ । ମହିଳାମାନେ ଗଣ୍ଠିଲିମାନ କାଖେଇକରି ଯାଉଥାନ୍ତି । ଏଇ ପବିତ୍ର ପ୍ରସାଦକୁ ସେମାନେ ଘରେ ପହଞ୍ଚିଲା ପରେ ତାଙ୍କର ବନ୍ଧୁ, ବାନ୍ଧବମାନଙ୍କ ପାଖରେ ବାଣ୍ଟିବେ । ପୁରୀ ଛାଡିବା ବେଳକୁ ସେମାନଙ୍କ ମଧ୍ୟରୁ ବହୁଲୋକ ଭକ୍ତିପୂତ ମନରେ 'ହରିବୋଲ' ପକାଇ ପକାଇ ଚାଲିବା ଆରମ୍ଭ କରିଥାନ୍ତି । ବର୍ତ୍ତମାନ ଏଇ ଫେରନ୍ତା ଯାତ୍ରୀମାନଙ୍କ ସାମ୍ନାରେ ଗୃହ ବାହୁଡା ଯାତ୍ରାର ଦୀର୍ଘ ଯନ୍ତ୍ରଣା, କଷ୍ଟ, ବାଟରେ ନଦୀ, ନାଳରେ ବନ୍ୟା ଜଳ, ଖାଦ୍ୟାଭାବ ସାଙ୍ଗକୁ ରୋଗ, ମହାମାରୀରେ ପ୍ରପୀଡିତ ହୋଇ ମୃତ୍ୟୁର କରାଳ ଛାୟା । କଠିନ ହୃଦୟର ବ୍ୟକ୍ତିମାନେ ଆଗକୁ ଥିବା କଷ୍ଟକୁ ଏଡାଇ ଦେବା ପାଇଁ ପ୍ରସ୍ତୁତ ହୋଇପାରନ୍ତି ମାତ୍ର ସାଧାରଣ ଯାତ୍ରୀମାନେ ଯଦିଓ କ୍ଲାନ୍ତ, କେତେକାଂଶରେ ଭଗ୍ନ ହୃଦୟ, ତଥାପି ସେମାନେ ମନ ଭିତରେ ଅମାପ ଶାନ୍ତି, ଜଗନ୍ନାଥଙ୍କ ଦର୍ଶନରେ ସେମାନେ ତାଙ୍କର ଚିରଈପ୍ସିତ ବାସନାକୁ ଚରିତାର୍ଥ କରିପାରିଛନ୍ତି, ଏହି ମହାନ ଭାବନା, ସେମାନଙ୍କ ଭଗ୍ନ ହୃଦୟରେ ପୁଣି ଫେରିବା ପଥଶ୍ରାନ୍ତ ସମସ୍ତ କଷ୍ଟକୁ ପାର କରିବା ପାଇଁ ଶକ୍ତି ଓ ସାହସ ଯୋଗାଇ ଦିଏ । ଶ୍ରୀକ୍ଷେତ୍ର ଛାଡିବା ପୂର୍ବରୁ ସଂଧ୍ୟାକାଶରେ ଶ୍ରୀମନ୍ଦିର ଚୂଡାରେ ଫରଫର ହୋଇ ଉଡୁଥିବା ପତିତ ପାବନ ବାନା ଆଡେ ଟିକିଏ ମୁହଁ ଫେରାଇ ଚାହିଁ ଭକ୍ତିପୂତ ନମସ୍କାର କରି ଫେରନ୍ତା ବାଟରେ ଆଗେଇ ଚାଲନ୍ତି ।

ରଥଯାତ୍ରା ସମୟରେ ଯେତେ ସଂଖ୍ୟାର ଯାତ୍ରୀ ଆସିଥାନ୍ତି, ସେମାନଙ୍କ ମଧ୍ୟରେ ବଙ୍ଗଳାରୁ ଆସିଥିବା ଯାତ୍ରୀଙ୍କ ସଂଖ୍ୟା ବେଶୀ ଏବଂ ଏହି ଯାତ୍ରୀଙ୍କ ମଧ୍ୟରେ ମହିଳାଙ୍କ ସଂଖ୍ୟା ସର୍ବାଧିକ । ମୁଁ ଜନଗହଳି ଭିତର ଦେଇ ଗଲାବେଳେ ଦେଖିଲି ଗୋଟିଏ ଦଳ ଯାତ୍ରୀ ୨୦୦୦ ମାଇଲ୍ ଦୂର ପଞ୍ଜାବର 'ହଜାରା' ଅଞ୍ଚଳରୁ ଆସିଥାନ୍ତି । ସେମାନେ ମୋତେ କହିଲେ, ଗତ ଚାରି ପାଞ୍ଚ ମାସ ଧରି ସେମାନେ ଚାଲି ଚାଲି ଆସିଛନ୍ତି । ପୁରୀରେ ୨/୩ ଦିନ ରହି ଜଗନ୍ନାଥ ଦର୍ଶନ କଲାପରେ ସଂଗେ ସଂଗେ ଘରକୁ ଫେରିବେ । ତାଙ୍କ କଥାଶୁଣି ମୋ'ର ସେକ୍ସପିୟରଙ୍କ କେତେପଦ ମନେ ପଡିଲା ।

"A true-hearted pilgrims does not fear to measure Kingdoms with his feeble steps" ସେଇ ଜନସମାଗମ ଭିତରେ ମୁଁ ଦେଖିଲି, ବହୁ ସଂଖ୍ୟାରେ ଲୋକମାନେ ଫାଇଲେରିଆ ରୋଗରେ ଆକ୍ରାନ୍ତ ହୋଇଛନ୍ତି । ପ୍ରତ୍ୟେକ ପାଞ୍ଚ ମିନିଟ୍‌ରେ ମୋ' ଆଖି ଆଗରେ ଗୋଦରା ଗୋଡ ଥିବା ଲୋକ ଯିବା ମୁଁ ଦେଖିଥିଲି । ସ୍ତ୍ରୀ, ପୁରୁଷ ଉଭୟ ଏହି ରୋଗରେ ଆକ୍ରାନ୍ତ । ପଚାରି ବୁଝିଲି, କେତେକ ଅଞ୍ଚଳରେ ଏହି ରୋଗ ସୀମାବଦ୍ଧ, ଏହି ରୋଗରେ ଆକ୍ରାନ୍ତ ବ୍ୟକ୍ତି ବିକଳାଙ୍ଗ ଦେଖାଯାଏ । କେଉଁ କାରଣରୁ ଏଇ ରୋଗରେ ଲୋକମାନେ ଆକ୍ରାନ୍ତ ହେଉଛନ୍ତି, ତା'ର ଉପରୋକ୍ତ ତଦନ୍ତ ହେବା ଦରକାର । ମୁଁ ଭାବୁଛି, ରୋଗ ସଂପର୍କରେ ଉପଯୁକ୍ତ ଦାୟିତ୍ୱ ସଂପନ୍ନ ତଦନ୍ତ ହେଲେ ଏହାର କାରଣ ଜଣାପଡିବ । ଯେଉଁମାନେ ଏହି ରୋଗରେ ପୀଡିତ ହୋଇଛନ୍ତି, ସେମାନେ ରୋଗମୁକ୍ତ ହେବାର ଆଶା ଛାଡି ଦେଇଛନ୍ତି । ମୁଁ ଭାବୁଛି, ସ୍ୱାସ୍ଥ୍ୟସେବୀମାନେ ଏହି ରୋଗ ସହିତ ଜଡ଼ିତ ସମସ୍ତ ବିଷୟ ସଂପର୍କରେ ଭଲଭାବେ ପରୀକ୍ଷା ନିରୀକ୍ଷା କରି ଦେଖିବା ଦରକାର । ଏଇଟା ଏତେ ଛୋଟ ଘଟଣା ନୁହେଁ । ବର୍ତ୍ତମାନ ସାରା ଭାରତ ବର୍ଷରେ ହଜାର ହଜାର ସଂଖ୍ୟାର ବିକଳାଙ୍ଗ ଲୋକ ଅଛନ୍ତି । ଜଣେ ସ୍ଥାନୀୟ ଜଣାଶୁଣା ବ୍ୟକ୍ତି ଗୋଦରା ରୋଗର ପ୍ରତିକାର ସଂପର୍କରେ ଜାଣିଥିବା କଥା ମୋତେ କହିଲେ, ମାତ୍ର ପ୍ରତିକାର ସଂପର୍କୀୟ ତଥ୍ୟକୁ ସେ କାହା ଆଗରେ ପ୍ରକାଶ କରିବାକୁ ଚାହାଁନ୍ତି ନାହିଁ । ସେ ମୋତେ ଏତିକି କହିଲେ ଯେ, ଏ ରୋଗର ପ୍ରତିକାର ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଗଛର (ଯାହାର ନାମ ସେ ପ୍ରକାଶ କଲେନାହିଁ) ଚେରକୁ ସୂର୍ଯ୍ୟପରାଗ କିମ୍ବା ଚନ୍ଦ୍ରଗ୍ରହଣ ଦିନ ଆଣି ନିର୍ଦ୍ଦିଷ୍ଟ ମନ୍ତ୍ରରେ ମନ୍ତ୍ରଣ କରି ରୋଗାକ୍ରାନ୍ତ ବ୍ୟକ୍ତିଙ୍କୁ ସେହି ମନ୍ତ୍ରପୁତ ଚେରକୁ ଖାଇବାକୁ ଦେଲେ ରୋଗୀ ରୋଗମୁକ୍ତ ହୋଇପାରିବ । ସେଇ ଭଦ୍ରବ୍ୟକ୍ତି ଏଇ ମନ୍ତ୍ର ଜଣେ ସାଧୁଙ୍କ ନିକଟରୁ ପାଇଥିଲେ ବୋଲି ମତେ କହିଲେ । ସବୁ ଶୁଣିଲା ପରେ ମୁଁ ତାଙ୍କୁ ମନେ ପକାଇଦେଇ କହିଥିଲି, ଆସନ୍ତା ଅଗଷ୍ଟ ମାସରେ ପୂର୍ଣ୍ଣ ସୂର୍ଯ୍ୟପରାଗ ହେବ, ସେତେବେଳେ ସେ ସୁନ୍ଦର ସୁଯୋଗ ପାଇବେ ଗୋଦରା ରୋଗ ପାଇଁ ଗଛର ଚେର ଯଥେଷ୍ଟ ପରିମାଣରେ ସଂଗ୍ରହ କରିବାକୁ । ଯେତେବେଳେ ମୋ'ର ଏଇ ବନ୍ଧୁ ଏଠି ଗଛର ଚେର ସଂଗ୍ରହ କରୁଥିବେ, ସେତେବେଳେ ଆମେ ଦେଶର ଆଷ୍ଟ୍ରୋନୋମିସିଟ୍‌ମାନେ ସେମାନଙ୍କ ଯନ୍ତ୍ରପାତି ସାହାଯ୍ୟରେ ସୂର୍ଯ୍ୟଙ୍କ ଗତିବିଧି ଉପରେ ତଥ୍ୟ ସଂଗ୍ରହ କରୁଥିବେ । ସ୍ଥାନୀୟ ଲୋକମାନେ ଏହି ରୋଗକୁ ଆଣ୍ଠୁ ଗଣ୍ଠି ବାତ ସହିତ ଯୋଡିଥାନ୍ତି । ମାତ୍ର ମୁଁ ବିଶ୍ୱାସ କରୁଛି, ସେମାନେ ଯାହାକୁ ବାତଜର ବୋଲି କହୁଛନ୍ତି, ସେ ଜ୍ୱର ବୋଧେ "Symptomatic pyrexia, indirect result of malaria, or possibly, of Certain indiosy crasises in dict" ଓଡ଼ିଆମାନେ ସବୁବେଳେ ପଖାଳ ଖାଆନ୍ତି, ଯାହାକି ଗୋଟିଏ ଦିନ ଆଗରୁ ରନ୍ଧା ହୋଇଥାଏ । ଯଦିଓ ପଖାଳ ଖାଇବା ସହିତ ଗୋଦରା ରୋଗର କିଛି ସିଧାସଳଖ ସଂପର୍କ ନାହିଁ, ତଥାପି ଏପରି ଚଳନି କୌତୁହଳପ୍ରଦ । ମୋ'ର ମନେହୁଏ, ଏହା ମଧ୍ୟ ଅସମ୍ଭବ

ନୁହଁ, ଭାତକୁ ଯେଉଁ ପ୍ରକାରେ ଦିନେ ଦୁଇଦିନ ପର୍ଯ୍ୟନ୍ତ ପଖାଳ ଆକାରରେ ରଖାଯାଏ, ବେଳେ ବେଳେ ସେଇ ପଖାଳରେ ଏକ ପ୍ରକାର ଅମ୍ଳଯୁକ୍ତ ଫରମେଣ୍ଟେସନ ହୋଇ ଏହି ରୋଗର କାରଣ ମଧ୍ୟ ହୋଇପାରେ । ଡକ୍ଟର ମାଓ୍ୱାଟ୍ ଏ ସଂପର୍କରେ ମତ ଦେଇ କହିଛନ୍ତି ଯେ, ମ୍ୟାଲେରିଆ ରୋଗରେ ଆକ୍ରାନ୍ତ ହୋଇ ଦୁର୍ବଳ ହୋଇଯାଉଥିବା ଲୋକଙ୍କୁ ଗୋଦରା ରୋଗ ସହଜରେ ଆକ୍ରାନ୍ତ କରିଥାଏ । ପୂର୍ବ ବଙ୍ଗଳାରେ ଏହି ରୋଗକୁ 'ଜଳଦୋଷ' ବୋଲି କୁହନ୍ତି । ରାଜସାଇ ଜିଲ୍ଲାରେ ଏହି ରୋଗରେ ଆକ୍ରାନ୍ତ ହୋଇଥିବା ବ୍ୟକ୍ତିଙ୍କୁ 'ସାଞ୍ଜରୋ' ବୋଲି ଡାକନ୍ତି ।

ପ୍ରଚଳିତ ନିୟମ ଅନୁସାରେ 'ରଥକୁ ଆସିଥିବା ଯାତ୍ରୀମାନେ ପୁରୀରେ ବେଶୀଦିନ ପାଇଁ ରହିନଥାନ୍ତି । ଏବର୍ଷ ରଥ ଯିବାର ୫ଦିନ ମଧ୍ୟରେ ପୁରୀ ସହରରୁ ୧୯୦୦୦ ଯାତ୍ରୀ ଚାଲି ଯାଇଥିଲେ । ପୁରୀ ଜିଲ୍ଲା ପୋଲିସ୍ ଅଧକ୍ଷ (ଏସ୍‌ପି) ମିଃ ଲେସି ଦେଇଥିବା ସଂଖ୍ୟା ଅନୁସାରେ ନିମ୍ନଲିଖିତ ତାରିଖମାନଙ୍କରେ ଲିଖିତ ସଂଖ୍ୟାର ଯାତ୍ରୀ ପୁରୀ ଛାଡିଥିଲେ - ୨୫ ଜୁନ୍‌ରେ ୯୬୧୩ଜଣ, ୨୮ ଜୁନ୍‌ରେ ୧,୭୪୦ଜଣ, ୨୯ ଜୁନ୍‌ରେ ୧୪୬୭ଜଣ ଏବଂ ୩୦ ଜୁନ୍‌ରେ ୧୧୪୯ଜଣ ।'

## ପୁରୀରେ ହଇଜା ରୋଗର ଇତିହାସ

ପୂର୍ବବର୍ଷମାନଙ୍କରେ ପୁରୀରେ ହଇଜା ରୋଗରେ ଆକ୍ରାନ୍ତ ଏବଂ ମୃତ୍ୟୁବରଣ କରିଥିବା ଯାତ୍ରୀମାନଙ୍କ ସଂପର୍କରେ ମିଳିଥିବା ପରିସଂଖ୍ୟାନ ସନ୍ତୋଷଜନକ ନୁହଁ । ପୂର୍ବ ଦୁଇ/ତିନି ବର୍ଷରେ ହଇଜା, ମହାମାରୀରେ ଆକ୍ରାନ୍ତ ସଂପର୍କରେ ମିଳିଥିବା ପରିସଂଖ୍ୟାନ, ଦାୟିତ୍ୱ ସଂପନ୍ନ ଭାବେ ରେକର୍ଡ କରାଯାଇଥିବା ପରି ମନେ ହୁଏ । ବାବୁ ଉଦୟ ଚାନ୍ଦ ଦତ୍ତ, ସିଭିଲ୍ ମେଡିକାଲ ଅଫିସର, ପୁରୀ, ପ୍ରସ୍ତୁତ କରିଥିବା ତାଙ୍କ ବାର୍ଷିକ ରିପୋର୍ଟରେ ହଇଜାରେ କେଉଁ ମାସରେ କେତେ ଲୋକ ଆକ୍ରାନ୍ତ ହୋଇଥିଲେ ଇତ୍ୟାଦି ସଂପର୍କରେ ଦେଇଥିବା ପରିସଂଖ୍ୟାନ ପ୍ରାୟ ସଠିକ୍ ବୋଲି ଧରାଯାଇଛି ।

### ୧୮୪୨ ମଧ୍ୟଭାଗରୁ ୧୮୬୮ ବର୍ଷର ମଧ୍ୟଭାଗ ପର୍ଯ୍ୟନ୍ତ

| ବର୍ଷ | ଜା | ଫେ | ମା | ଅ | ମେ | ଜୁ | ଜୁ | ଅ | ସେ | ଅ | ନ | ଡି | ମୋଟ |
|---|---|---|---|---|---|---|---|---|---|---|---|---|---|
| ୧୮୪୨ | ୩୬ | ୫ | ୧୭ | ୧ | - | ୧ | ୭ | ୧ | - | - | ୬ | ୨ | ୧୦୬ |
| ୧୮୪୩ | ୭ | - | ୩୫ | - | - | ୧୬୪ | ୨୫ | - | - | - | ୨ | ୧ | ୨୪୩ |
| ୧୮୪୪ | - | ୩ | - | - | ୨ | ୨୦୦ | - | - | - | ୧ | - | - | ୨୦୬ |
| ୧୮୪୫ | ୧ | ୨ | ୩ | ୧ | - | ୨ | ୫୭ | ୨ | - | ୧ | - | - | ୬୯ |
| ୧୮୪୬ | ୨ | - | ୧୪ | ୧ | - | ୭୨ | ୧ | - | ୩ | ୪ | ୧ | ୧ | ୯୯ |
| ୧୮୪୭ | - | ୧ | ୧୪ | - | ୧ | ୪ | ୨୯ | ୧ | - | - | ୧ | - | ୫୧ |

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧୮୪୮ | ୧ | ୫ | ୩ | ୩ | - | ୨ | ୪୭ | - | - | - | - | - | ୬୧ |
| ୧୮୪୯ | - | - | - | - | ୧ | ୧୦୭ | ୪ | ୧ | - | - | ୧ | - | ୧୪୪ |
| ୧୮୫୦ | ୧ | ୩୭ | ୧୧ | ୧ | - | - | ୨ | - | - | - | ୫ | ୧ | ୫୮ |
| ୧୮୫୧ | - | - | ୧ | - | ୨ | ୩୯ | ୨୮ | - | - | - | - | - | ୫୮ |
| ୧୮୫୨ | - | ୫ | ୪ | - | - | ୧୦୪ | ୨ | ୧ | - | ୧ | ୩ | ୩ | ୧୨୩ |
| ୧୮୫୩ | ୨ | ୨ | ୧୦ | ୧ | ୧ | ୬ | ୨୬ | ୨ | ୧ | - | - | - | ୫୧ |
| ୧୮୫୪ | - | ୬ | ୪୮ | - | - | ୧୨୯ | ୧୮ | - | | ୧ | ୭ | ୧ | ୨୧୦ |
| ୧୮୫୫ | - | ୨ | ୧ | - | ୨ | - | ୧୫୬ | ୩ | - | - | ୨ | ୧ | ୧୬୭ |
| ୧୮୫୬ | ୧ | ୩ | ୨ | - | - | - | - | - | ୧ | ୨ | ୧ | - | ୧୦ |
| ୧୮୫୭ | - | ୮ | ୪୩ | ୧୧ | ୧ | ୬୬ | ୨ | - | - | - | ୪ | - | ୧୩୫ |
| ୧୮୫୮ | ୨ | ୩ | ୧ | ୧ | ୧ | ୯ | - | - | - | - | - | - | ୧୭ |
| ୧୮୫୯ | ୭ | ୮ | - | - | - | ୪୭ | - | - | - | ୯ | - | - | ୭୧ |
| ୧୮୬୦ | ୧ | ୮ | ୧୯ | ୧ | ୨ | ୯୬ | ୪ | - | - | ୧ | - | - | ୧୩୨ |
| ୧୮୬୧ | - | - | ୧୨ | ୩ | - | ୩ | ୨୭ | - | - | ୪ | - | ୧ | ୫୦ |
| ୧୮୬୨ | ୨ | ୫ | ୬ | - | - | ୯୧ | ୨୦ | - | - | ୧ | ୩ | ୧ | ୧୨୮ |
| ୧୮୬୩ | - | - | ୧ | - | ୧ | ୯୩ | ୨ | - | - | - | - | ୨ | ୯୯ |
| ୧୮୬୪ | ୧ | ୩ | - | ୧ | - | ୧ | ୧୨ | ୧ | - | - | ୪ | - | ୨୩ |
| ୧୮୬୫ | - | ୧ | ୨ | ୨ | ୧ | ୭୪ | ୧୩ | - | ୨ | - | - | - | ୯୫ |
| ୧୮୬୬ | ୧ | ୨୨ | ୬ | ୧ | - | - | - | - | ୧ | - | ୧ | - | ୫୨ |
| ୧୮୬୭ | - | - | ୧ | - | - | - | - | - | - | ୩୮ | ୧୧୪ | - | ୧୫୩ |
| ୧୮୬୮ | - | ୧ | ୮ | ୨ | - | ୫୬ | - | - | - | - | - | - | ୬୭ |
| ମୋଟ | ୫୬ | ୧୨୮ | ୩୨୨ | ୩୦ | ୧୫ | ୧୮୧୧ | ୫୩୮ | ୧୩ | ୫ | ୫୩ | ୧୬୭ | ୧୩ | ୨୬୫୧ |

ଉପରୋକ୍ତ ରିପୋର୍ଟ ଅନୁସାରେ ବିଗତ ସାଢ଼େ ୨୬ବର୍ଷ ମଧ୍ୟରେ ପୁରୀକୁ ଆସିଥିବା ତୀର୍ଥଯାତ୍ରୀମାନଙ୍କ ମଧ୍ୟରୁ ୨୬୫୧ଜଣ ହଇଜାରେ ମୃତ୍ୟୁବରଣ କରିଛନ୍ତି, ଯାହାକି ପ୍ରକୃତରେ ମୃତ୍ୟୁବରଣ କରିଥିବା ସଂଖ୍ୟାଠାରୁ ବହୁତ୍ କମ୍ ବୋଲି ଅନୁମାନ କରାଯାଉଛି । ଡକ୍ଟର ମାଓ୍ୱାଟଙ୍କ ମତରେ ଏହି ରିପୋର୍ଟ ଆଦୌ ଠିକ୍ ନୁହଁ । ଉଦାହରଣ ଦେଇ ସେ କହିଥିଲେ ଯେ, '୧୮୫୬ ମସିହାରେ ହଇଜାରେ ମୃତ୍ୟୁବରଣ କରିଥିବା ଯାତ୍ରୀଙ୍କ ସଂଖ୍ୟା ମାତ୍ର ୧୦ ଉଲ୍ଲେଖ କରାଯାଇଛି ମାତ୍ର ସେଇ ବର୍ଷ ପୁରୀକୁ ଆସିଥିବା ଯାତ୍ରୀମାନେ ରାସ୍ତାରେ ଭୟାବହ ହଇଜାର ସମ୍ମୁଖୀନ ହୋଇଥିଲେ । ବହୁ ସଂଖ୍ୟାର ଯାତ୍ରୀ ପୁରୀରେ ପହଞ୍ଚିବା ପୂର୍ବରୁ ମୃତ୍ୟୁବରଣ କରିଥିଲେ । ମୁଁ ନିଜେ ଭଦ୍ରକରୁ କଟକ ଆସୁଥିବା ବେଳେ ରାସ୍ତା କଡରେ ବହୁ ସଂଖ୍ୟାରେ ହଇଜାରେ ମୃତ୍ୟୁବରଣ କରିଥିବା ଯାତ୍ରୀଙ୍କୁ ଦେଖିଛି ।'

ଜୁନ୍ ଏବଂ ଜୁଲାଇ ମାସରେ ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁ ସଂଖ୍ୟା ବୃଦ୍ଧି ପାଇଥାଏ । ଏହି ମାସ ମାନଙ୍କରେ ଜଗନ୍ନାଥଙ୍କ ସ୍ନାନ ଏବଂ ରଥଯାତ୍ରା ପଡେ । ଏହାଛଡା ମାର୍ଚ୍ଚ ମାସରେ ପଞ୍ଚୁଦୋଳ ଏବଂ ନଭେମ୍ବର ମାସରେ କାର୍ତ୍ତିକ ବ୍ରତ ବେଳେ ହଇଜାର ପ୍ରାଦୁର୍ଭାବ ଅନୁଭୂତ ହୋଇଥାଏ । ପଞ୍ଚୁକ ପରେ ପ୍ରାୟତଃ ପୁରୀରୁ ଯାତ୍ରା ଶେଷ ହୋଇଯାଏ । ଜାନୁୟାରୀ ମାସରେ ମକର ସଂକ୍ରାନ୍ତି ବେଳେ ଅଳ୍ପ କେତେକ ଯାତ୍ରୀ ପୁରୀ ଆସିଥାନ୍ତି । ଯଦିଓ ଉପରୋକ୍ତ ପରିସଂଖ୍ୟାନ ସଠିକ୍ ତଥ୍ୟ ଉପରେ ପର୍ଯ୍ୟବେସିତ ନୁହଁ ଏବଂ ନିର୍ଭରଯୋଗ୍ୟ ପ୍ରମାଣ ନଥିବା ଯୋଗୁଁ ଏହାର ମୂଲ୍ୟ ବିଶେଷ କିଛି ନହୋଇଥିଲେ ମଧ୍ୟ ମାସମାନଙ୍କରେ ହଇଜାରେ ମୃତ୍ୟୁ ସଂଖ୍ୟାର କ୍ରମବର୍ଦ୍ଧିଷ୍ଣୁ ସଂଖ୍ୟା ପୁରୀ ସହରରେ କେଉଁ ମାସମାନଙ୍କରେ ବିଶେଷ ଯାତ୍ରୀ ସମାଗମ ହୁଏ, ତାହା ସୂଚେଇ ଦିଏ । ଉପରୋକ୍ତ ପରିସଂଖ୍ୟାନରୁ ଦେଖାଯାଉଛି, ପୁରୀରେ ପଞ୍ଚୁକ ସମୟରେ ମଧ୍ୟ ହଇଜା ବ୍ୟାପିଥାଏ ଏବଂ ଲୋକମାନେ ମୃତ୍ୟୁ ମୁଖରେ ପଡିଥାନ୍ତି । ୧୮୬୭ ମସିହା ପଞ୍ଚୁକ ସମୟରେ ହଇଜାରେ ମୃତ୍ୟୁବରଣ କରିଥିବା ଯାତ୍ରୀମାନଙ୍କ ସଂଖ୍ୟା ଅନ୍ୟ ବର୍ଷ ତୁଳନାରେ ଯଥେଷ୍ଟ ଅଧିକ । ଏଥିରୁ ଜଣାପଡୁଛି ଯେ, ସେହି ବର୍ଷ ଜିଲ୍ଲା ପ୍ରଶାସନ ସଠିକ୍ ଭାବେ ମୃତ୍ୟୁ ସଂଖ୍ୟାର ବିବରଣୀ ରେକର୍ଡ କରିଛନ୍ତି । ସରକାର ଏ ସଂପର୍କରେ ପୁରୀ ଜିଲ୍ଲା ପ୍ରଶାସନର ଦୃଷ୍ଟି ଆକର୍ଷଣ କରିଥିଲେ, ଯଦିଓ ପୁରୀ ସହରର ହଇଜା ସଂପର୍କୀୟ ମିଳିଥିବା ବାର୍ଷିକ ତଥ୍ୟ ପ୍ରବାଦପୂର୍ଣ୍ଣ । ତଥାପି ସେହି ୨୬ବର୍ଷର ତଥ୍ୟ କହୁଛି ଯେ, ପୁରୀ ସହରରେ ଏପରି ଗୋଟିଏ ବର୍ଷ, ଏହି ୨୬ବର୍ଷ ମଧ୍ୟରେ ନାହିଁ, ଯେଉଁବର୍ଷ ହଇଜାରେ ଯାତ୍ରୀମାନେ ମୃତ୍ୟୁବରଣ କରିନାହାଁନ୍ତି । ନିୟମ ପାଳନ କଲାପରି ବର୍ଷରେ କେତେକ ନିର୍ଦ୍ଦିଷ୍ଟ ସମୟରେ ହଇଜାର ପ୍ରାଦୁର୍ଭାବ ସହରରେ ବୃଦ୍ଧି ପାଇଥାଏ । ଦୁଃଖର କଥା, ଠିକ୍ ସେହି ସମୟରେ ସବୁଠାରୁ ଜନଗହଳି ଯାନିଯାତ୍ରାମାନ ସହରରେ ପାଳନ କରାହୁଏ । ପରିସଂଖ୍ୟାନରୁ ଜଣାପଡେ, ଜୁନ୍-ଜୁଲାଇ (ରଥଯାତ୍ରା ପଡୁଥିବା ମାସ) ମାସରେ ମୃତ୍ୟୁ ସଂଖ୍ୟା ଅନ୍ୟ ମାସମାନଙ୍କ ତୁଳନାରେ ଯଥେଷ୍ଟ ଅଧିକ ।

୧୮୬୬ ମସିହା ଦୋଳଯାତ୍ରା ସମୟରେ ପୁରୀରେ କଲେରା ଲାଗିଥିଲା । ହଇଜା ମାର୍ଚ୍ଚ ମାସ ଶେଷ ପର୍ଯ୍ୟନ୍ତ ସହରରେ ଲାଗି ରହିଲା ଏବଂ ପୁଣି ଅଗଷ୍ଟ-ସେପ୍ଟେମ୍ବର ମାସରେ ବ୍ୟାପିଥିଲା । ସେ ବର୍ଷ ଏହି ଦୁଇ ମାସରେ ଭୀଷଣ ବର୍ଷା ଯୋଗୁଁ ଜିଲ୍ଲାର ଅର୍ଦ୍ଧରୁ ଊର୍ଦ୍ଧ୍ୱ ଅଞ୍ଚଳ ବନ୍ୟା ଜଳରେ ମାସ ମାସ ଧରି ବୁଡି ରହିଥିଲା । ଯେଉଁମାନେ ଅନାହାରରେ ଦୁର୍ଭିକ୍ଷ ସମୟ କଟାଇଥିଲେ ସେଇମାନେ ହଇଜାରେ ଆକ୍ରାନ୍ତ ହୋଇ ବହୁ ସଂଖ୍ୟାରେ ମୃତ୍ୟୁବରଣ କରିଥିଲେ । ସବୁଠାରୁ ଅଧିକ ଲୋକ 'ଅନ୍ନଛତ୍ର' ଖୋଲା ଯାଇଥିବା ଜାଗା ଓ (ସହର ମଧ୍ୟରେ) ଅସ୍ଥାୟୀ ଡାକ୍ତରଖାନାମାନଙ୍କ ପାଖରେ ମରି ପଡିଥିବା ଦେଖାଯାଇଥିଲା । ଯାତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଡାକ୍ତରଖାନାରେ ୨୯ଜଣ ମରିଥିବା ବେଳେ ପୁରୀ ଜେଲ୍‌ରେ ୧୧ଜଣ ମରିଥିଲେ । ସେପ୍ଟେମ୍ବର ମାସରେ ବର୍ଷା କମିବା ପରେ ହଇଜା ଛାଡିଥିଲା ।

ପୁରୀ ସହର ମେଡିକାଲ ଦାୟିତ୍ୱରେ ଥିବା ବାବୁ ଉଦୟଚାନ୍ଦ ଦତ୍ତ ମୋତେ ଏସବୁ ତଥ୍ୟ ଯୋଗାଇ ଦେଇଥିଲେ । ସେ ମଧ୍ୟ ୧୮୬୬ ମସିହା ଦୁର୍ଭିକ୍ଷ ବେଳର ବହୁ କୌତୁହଳ ଓ ହୃଦୟ ବିଦାରକ ଘଟଣା ଏବଂ ସେ ସମୟର ଲୋକମାନଙ୍କ ଅବସ୍ଥା ସଂପର୍କରେ ବହୁ ତଥ୍ୟ ଭିତ୍ତିକ ରିପୋର୍ଟ ସରକାରଙ୍କୁ ଦେଇଛନ୍ତି ।

୧୮୬୬ ମସିହାରେ ଶେଷ ତିନିମାସରେ ହଇଜା ସାଙ୍ଗକୁ ବସନ୍ତ ରୋଗ ମଧ୍ୟ ପ୍ରବଳ ଭାବେ ସହରରେ ବ୍ୟାପିଥିଲା । ପୁରୀ ସହର ଏବଂ ଜିଲ୍ଲାରେ ପୋଲିସ୍ ରିପୋର୍ଟ ଅନୁସାରେ ଜୁଲାଇ ମାସରୁ ଡିସେମ୍ବର ମାସ ମଧ୍ୟରେ ୧୧,୩୫୦ଜଣ ବସନ୍ତ ରୋଗରେ ପଡିଥିଲେ ଏବଂ ସେମାନଙ୍କ ମଧ୍ୟରୁ ୩୬୨୭ଜଣ ମୃତ୍ୟୁବରଣ କରିଥିଲେ । ଯଦିଓ ବସନ୍ତ ଜୁଲାଇ ଠାରୁ ଡିସେମ୍ବର ମଧ୍ୟରେ ପ୍ରବଳ ଭାବେ ବ୍ୟାପିଥିଲା ମାତ୍ର ଏଇ ରୋଗ ସେଇ ବର୍ଷ ଜାନୁଆରୀ ମାସରୁ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଦେଖାଦେଇଥିଲା । ପ୍ରାୟ ବର୍ଷକ ପର୍ଯ୍ୟନ୍ତ ଏହି ରୋଗ ଜିଲ୍ଲାର ପ୍ରଭୁତ କ୍ଷତି ଘଟାଇ ୧୮୬୭ ମସିହା ଜାନୁଆରୀ ବେଳକୁ କମି ଯାଇଥିଲା ।

## ୧୮୬୭ ମସିହାରେ ପୁରୀରେ ହଇଜା

୧୮୬୬ ମସିହା ଅଗଷ୍ଟ-ସେପ୍ଟେମ୍ବର ମାସ ଶେଷ ଆଡକୁ ହଇଜାରେ ପ୍ରପୀଡିତ କେତେକ କାଙ୍ଗାଳୀ ମୃତ୍ୟୁବରଣ କଲାପରେ, ୧୮୬୭ ମସିହା ଅକ୍ଟୋବର ମାସ ପର୍ଯ୍ୟନ୍ତ ପୁରୀରେ ହଇଜା ଦେଖାଯାଇ ନଥିଲା । ଅସାଧାରଣ ଭାବେ ରୋଗ ଏହିବର୍ଷ ଦେଖା ନଦେବା ସମସ୍ତେ ଅନୁଭବ କରିଥିଲେ । ଅବଶ୍ୟ ୧୮୬୬-୬୭ ମସିହାରେ ଓଡ଼ିଶାରେ ପ୍ରଳୟଙ୍କରୀ ଦୁର୍ଭିକ୍ଷ ପଡିଥିବା ଯୋଗୁଁ ସରକାର ଏକ ବିଜ୍ଞପ୍ତି ଜାରୀକରି ଯାତ୍ରୀମାନଙ୍କୁ ରଥଯାତ୍ରା ସମୟରେ ପୁରୀରେ ଭିଡ ନକରିବାକୁ ସତର୍କ କରାଇ ଦେଇଥିଲେ । ସେଥିଯୋଗୁଁ ବହୁ କମ୍ ତୀର୍ଥଯାତ୍ରୀ ସେ ବର୍ଷ ରଥଯାତ୍ରା ବେଳେ ପୁରୀକୁ ଆସିଥିଲେ । ସେହିବର୍ଷ (୧୮୬୭) ଅକ୍ଟୋବର, ନଭେମ୍ବର ମାସରେ ପୁରୀରେ ଅସମ୍ଭବ ଭାବେ ହଇଜା ବ୍ୟାପିବାକୁ ଲାଗିଲା । ୧୩ ଅକ୍ଟୋବର ପୂର୍ଣ୍ଣିମା ପରେ ସେ ବର୍ଷ ପୁରୀକୁ ବହୁ ସଂଖ୍ୟାରେ ଯାତ୍ରୀ ଆସିଥାନ୍ତି । ଏ ମାସକୁ ପବିତ୍ର ମାସ ବୋଲି କୁହନ୍ତି । ଏହି ମାସର ଶେଷ ପାଞ୍ଚଦିନକୁ ପଞ୍ଚୁକ ଯାତ୍ରା ହିସାବରେ ପାଳନ କରାଯାଏ । ବାବୁ ଉଦୟ ଚାନ୍ଦ ଦତ୍ତଙ୍କ ହିସାବରେ ସେ ବର୍ଷ ଗଡଜାତ ମହଲରୁ ବହୁ ସଂଖ୍ୟାରେ ଯାତ୍ରୀ ଆସିଥାନ୍ତି । ସମ୍ବଲପୁର, ବିହାର ଏବଂ ମଧ୍ୟ ଭାରତର କେତେକ ଅଞ୍ଚଳରୁ ବହୁ ସଂଖ୍ୟାରେ ଯାତ୍ରୀ ଆସିଥିବା ବେଳେ ବଙ୍ଗଳା ଏବଂ ଉତ୍ତର ପଶ୍ଚିମ ଅଞ୍ଚଳରୁ କମ୍ ସଂଖ୍ୟାର ଯାତ୍ରୀ ଆସିଥିଲେ । ମିଃ ରାବନ୍ ତାଙ୍କ ରିପୋର୍ଟରେ ଦର୍ଶାଇଛନ୍ତି ଯେ, ମାଡ୍ରାସ ପ୍ରେସିଡେନ୍ସି ଅଧିନରେ ଥିବା ଓଡ଼ିଆଭାଷୀ ଦକ୍ଷିଣ ଓଡ଼ିଶାରୁ ଶେଷ ପାଞ୍ଚଦିନରେ ବହୁ ଯାତ୍ରୀ ପୁରୀରେ ପହଞ୍ଚି ଥିଲେ । ୧୩ ଅକ୍ଟୋବର ଠାରୁ

ଯାତ୍ରୀମାନେ ପୁରୀରେ ପହଞ୍ଚିବା ଆରମ୍ଭ କରିଥାନ୍ତି । ପୁରୀଠାରୁ ୨୫ ମାଇଲ ଦୂର ଭୁବନେଶ୍ୱରରେ ଜୁଲାଇ-ଅଗଷ୍ଟ ମାସରେ କଲେରା ଦେଖାଦେଇଥିଲା । ସେପ୍ଟେମ୍ବର ୨୩ ତାରିଖ ଦିନ ପୁରୀଠାରୁ ୧୬ ମାଇଲ୍ ଦୂର ପିପିଲିଠାରେ ପୁରୀକୁ ଆସୁଥିବା ଜଣେ ଯାତ୍ରୀ ବାଟରେ ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କଲା । ପୁରୀରୁ ଫେରିଲା ବାଟରେ ପୁରୀଠାରୁ ଅଳ୍ପ କେତେଦୂରରେ ୨ଜଣ ଯାତ୍ରୀ ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କଲେ । ଅକ୍ଟୋବର ୧୮ ତାରିଖ ଦିନ କଟକରୁ ପୁରୀ ଆସୁଥିବା ବାଟରେ ଜଣେ ଯାତ୍ରୀ କଲେରାରେ ମଲାବେଳେ ଜଣେ ମହିଳା ମଧ୍ୟ ଆସିବା ବେଳେ ପୁରୀଠାରୁ ୮ ମାଇଲ୍ ଦୂରରେ ମୃତ୍ୟୁବରଣ କରିଥିଲେ । ୧୯ ଅକ୍ଟୋବର ଦିନ ପୁରୀ ସହରରେ ପ୍ରଥମେ ହଇଜା ଆରମ୍ଭ ହେଲା । ସମ୍ବଲପୁର ଜିଲ୍ଲାର ସାରୋ ଗାଁର 'ସାତକ' ନାମ୍ନୀ ମହିଳା ଯାତ୍ରୀଙ୍କୁ ମୁମୂର୍ଷୁ ଅବସ୍ଥାରେ ରାସ୍ତାକଡରୁ ଉଠାଇ ଆଣି ପୁରୀ ହସ୍‌ପିଟାଲରେ ଚିକିତ୍ସା ପାଇଁ ଭର୍ତ୍ତି କରାଯାଇଥିଲା । ସେ କହୁଥିଲେ, ବାଟରେ ତାଙ୍କୁ ହଇଜା ଧରିଥିଲା ଏବଂ ତାଙ୍କର ସାଙ୍ଗ ଲୋକମାନେ ତାଙ୍କୁ ବାଟରେ ଛାଡିଦେଇ ପଳାଇ ଆସିଥିଲେ । ସେହିଦିନ ଆଉଜଣେ ଗୁଜରାଟୀ ମହିଳା ସହର ଭିତରେ ମୃତାବସ୍ଥାରେ ପଡିଲେ । ୧୯ ଅକ୍ଟୋବରରୁ ୨୩ ଅକ୍ଟୋବର ପର୍ଯ୍ୟନ୍ତ କେହି ହଇଜାରେ ମରିନଥିଲେ । ୧୮ ଏବଂ ୧୯ ତାରିଖ ଦୁଇଦିନ ଧରି ପୁରୀ ସହରରେ ୭.୫ ଇଞ୍ଚ ବର୍ଷା ହୋଇଥିଲା । ୨୩ ତାରିଖ ଦିନ ୧୦ଜଣ ମୃତ୍ୟୁବରଣ କଲେ । ସେହିଦିନରୁ ରୋଗ ବ୍ୟାପିବାରେ ଲାଗିଲା । ସହରରେ ନଭେମ୍ବର ୧୮ ସୁଦ୍ଧା ହଇଜାରେ ୨୭୯ଜଣ ବ୍ୟକ୍ତି ଆକ୍ରାନ୍ତ ହୋଇ ୯୪ଜଣ ମଲେ । ତାହାଛଡା ୧୧୭ଜଣ ଯାତ୍ରୀ ହସ୍‌ପିଟାଲରେ ଚିକିତ୍ସା ପାଇଁ ଭର୍ତ୍ତି ହୋଇଥିବା ବେଳେ ସେମାନଙ୍କ ମଧ୍ୟରୁ ୯୭ଜଣ ମୃତ୍ୟୁବରଣ କରିଥିଲେ । ସେ ବର୍ଷ ୩୯୬ଜଣ ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିବାଙ୍କ ମଧ୍ୟରେ ୨୬୧ଜଣ ତୀର୍ଥଯାତ୍ରୀ ଥିବାବେଳେ ୧୫ଜଣ ପୁରୀ ସହର ବାସିନ୍ଦା ଏବଂ ୩ଜଣ ଭିକାରୀ ଥିଲେ ।

ପୁରୀ ସହରରେ ହଇଜା ବ୍ୟାପିଥିବା ବେଳେ ମଧ୍ୟ ଦୈନନ୍ଦିନ ୫୦୦୦ରୁ ଊର୍ଦ୍ଧ୍ୱ ଯାତ୍ରୀ ସହରରେ ଥାନ୍ତି । ପଞ୍ଚୁକ ପାଞ୍ଚଦିନ ଯାତ୍ରୀଙ୍କ ସଂଖ୍ୟା ୧୫୦୦୦ରୁ ଊର୍ଦ୍ଧ୍ୱ ଥିଲା । (୮ ନଭେମ୍ବରରୁ ୧୨ ନଭେମ୍ବର) ପଞ୍ଚୁକ ପରେ ଯାତ୍ରୀମାନେ ଘରକୁ ଫେରିବା ବାଟରେ ହଇଜାରେ ପଡି ମୃତ୍ୟୁବରଣ କରିଥିବା ଖବର ମଧ୍ୟ ମିଳିଥିଲା ।

ପୁରୀ କଲେକ୍ଟର ମିଃ ରାବନ୍‌ଙ୍କ ମତରେ, ପ୍ରଥମେ ହଇଜା ପୁରୀରୁ ଆରମ୍ଭ ହୋଇଥିଲା, ଯେତେବେଳେ ଯାତ୍ରୀମାନେ ପୁରୀରେ ବହୁ ସଂଖ୍ୟାରେ ପହଞ୍ଚିଥିଲେ । ବାବୁ ଉଦୟ ଚାନ୍ଦ ଏବଂ କଟକ ସିଭିଲ୍ ସର୍ଜନ ଯାହାସବୁ ରିପୋର୍ଟ ଦେଇଛନ୍ତି, ସେଥିରୁ ମୁଁ ଜାଣୁଛି ଯେ, ଯାତ୍ରୀମାନେ ପୁରୀକୁ ଆସୁଥିବା ବାଟରେ ହଇଜାରେ ଆକ୍ରାନ୍ତ ହୋଇ ପୁରୀକୁ ଆସିଲା ପରେ ପୁରୀ ସହରରେ ହଇଜା ବ୍ୟାପିଥିଲା ।

ଏହାପରେ ପୁଣି ହଇଜା, ମହାମାରୀ ଭାବେ ୧୮୬୮ ମସିହା ଦୋଳ ଯାତ୍ରା ବେଳକୁ ସହରରେ ଦେଖାଦେଇଥିଲା । ସେ ସମୟରେ (ଫେବୃୟାରୀ-ମାର୍ଚ୍ଚ ୧୮୬୮) ହଇଜା ସଂପର୍କରେ ବାବୁ ଉଦୟଚାନନ୍ଦ ଦତ୍ତ ମୋତେ ଦେଇଥିବା ରିପୋର୍ଟ ଯୋଗୁଁ ମୁଁ ତାଙ୍କ ପାଖରେ ଋଣୀ । ସେ ଦେଇଥିବା ରିପୋର୍ଟରେ ଉଲ୍ଲେଖ କରିଛନ୍ତି -

'ଦୋଳ ଯାତ୍ରା ମାର୍ଚ୍ଚ ମାସ ୮ ତାରିଖରୁ ଆରମ୍ଭ ହେଉଥିଲେ ମଧ୍ୟ ବିହାର ଓ ପଶ୍ଚିମା ଯାତ୍ରୀମାନେ ଆଠଦିନ ଆଗରୁ ଦଳ ଦଳ ହୋଇ ପହଞ୍ଚିବାକୁ ଆରମ୍ଭ କରିଥିଲେ । ଯାତ୍ରୀମାନେ ଆସିଲା ବେଳେ ସେମାନଙ୍କ ଅଞ୍ଚଳରେ କିମ୍ବା ବାଟରେ ହଇଜା ବ୍ୟାପିବାର ଖବର ନଥିଲା । ପୁରୀ ସହରରେ ମଧ୍ୟ ଦୋଳଯାତ୍ରା ପୂର୍ବରୁ ହଇଜା ଆରମ୍ଭ ହେବାର କିଛି ଖବର ଜଣାପଡି ନଥିଲା । ୧୮୬୭ ମସିହା ନଭେମ୍ବର ମାସ (ପଞ୍ଜୁକ) ପରେ ହଇଜା ସହରରେ ନଥିଲା ମାତ୍ର ଦୋଳ ଯାତ୍ରାର ଆଠଦିନ ଆଗରୁ ଯାତ୍ରୀମାନେ ସଂଗଠିତ ହେବାରେ ଏହି ରୋଗ ଆରମ୍ଭ ହେବାର ଦେଖାଯାଇଥିଲା । ସେ ବର୍ଷ ପାଗରେ ସେପରି କିଛି ପରିବର୍ତ୍ତନ ଦେଖାଯାଇ ନଥିବା ବେଳେ ପୂର୍ଣ୍ଣିମା ଆଡକୁ ସହରରେ ଗରମ ଅନୁଭୂତ ହୋଇଥିଲା । ମାର୍ଚ୍ଚ ୮ ତାରିଖ ସୁଦ୍ଧା ସହରରେ ୧୦,୦୦୦ରୁ ଉର୍ଦ୍ଧ୍ୱ ଯାତ୍ରୀ ପହଞ୍ଚିଥିଲେ । ପୋଲିସ୍ ରିପୋର୍ଟ ଅନୁସାରେ ମାର୍ଚ୍ଚ ୧୦ ତାରିଖ ଦିନକୁ ୫୬ଜଣ ଲୋକ ହଇଜାରେ ମରି ସାରିଥାନ୍ତି । ହସ୍ପିଟାଲରେ ଚିକିତ୍ସିତ ହେଉଥିବା ୧୦ଜଣ ଯାତ୍ରୀଙ୍କ ମଧ୍ୟରୁ ୫ଜଣ ସୁସ୍ଥ ହୋଇଥିବା ବେଳେ ୫ଜଣ ମୃତ୍ୟୁବରଣ କରିଥିଲେ । ସହରରେ ହଇଜାର ପ୍ରକୋପ ଥିବା ଅବସ୍ଥାରେ ଦୋଳଯାତ୍ରା ସାରି ଯାତ୍ରୀମାନେ ଫେରିବାକୁ ଆରମ୍ଭ କଲେ ।'

ହଇଜା ରୋଗରେ ଆକ୍ରାନ୍ତ ହୋଇଥିବା ପୋଲିସ୍ ରିପୋର୍ଟ ଅନୁସାରେ ପ୍ରଥମ କେତେଗୋଟି କେସ୍ ହେଲା (୧) ଫେବୃୟାରୀ ୨୧ ତାରିଖ ଦିନ କଟକ ଜିଲ୍ଲାର କଟକ ପାଖ ୟେସନ କୋଲିଆଣ ଗାଁରୁ ଆସିଥିବା ଦୁଇଜଣଙ୍କୁ ହଇଜା ଧରିଲା । ପରଦିନ ସେମାନେ ସ୍ୱର୍ଗାରୋହଣ କଲେ । ତା'ପରେ ସେପରି କିଛି ଗୁରୁତର ଖବର ହଇଜା ସଂପର୍କରେ ନଥିଲା । ପର କେସ୍‌ଟି ଦେଖାଯାଇଥିଲା ୨୬ ଫେବୃୟାରୀ ଦିନ ଯେଉଁଥିରେ ସହର ଭିତରର ଜଣେ କାଙ୍ଗାଳୀ ଆକ୍ରାନ୍ତ ହୋଇ ହସ୍ପିଟାଲରେ ଭଲ ହୋଇଗଲା । ମାର୍ଚ୍ଚ ପହିଲା ଦିନ ଆଉ ଜଣେ କାଙ୍ଗାଳୀ ରୋଗରେ ଆକ୍ରାନ୍ତ ହୋଇ ହସ୍ପିଟାଲରେ ଭଲ ହୋଇଥିଲେ । ମାର୍ଚ୍ଚ ୩ ତାରିଖ ଦିନ ୨ଜଣ ଯାତ୍ରୀ ହଇଜାରେ ପଡିଲେ ଏବଂ ଏହିଦିନ ଠାରୁ ହଇଜା ସଂପୂର୍ଣ୍ଣ ରୂପେ ଦୂର ହେବା ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ସହରରେ ରୋଗ ବ୍ୟାପିବାରେ ଲାଗିଥିଲା ଏବଂ ମହାମାରୀ ମାର୍ଚ୍ଚ ମାସ ପ୍ରଥମ ସପ୍ତାହର ଶେଷ ବେଳକୁ କମିଯିବାର ସୂଚନା ମିଳିଥିଲା । ସେତେବେଳକୁ ମାସକ ମଧ୍ୟରେ କଟକ ରାସ୍ତାରେ ୧୧ଜଣ ମରିଥିଲେ । ଏପ୍ରିଲ ମାସରେ କେବଳ କଟକ ଜିଲ୍ଲାରେ ୧୦୬ଜଣ ମୃତ୍ୟୁବରଣ କରିଥିଲେ । ସେହିବର୍ଷ ଏପ୍ରିଲ ମାସ ସୁଦ୍ଧା ପୁରୀକୁ ଏବଂ ପୁରୀରୁ କଟକ ଦେଇ ୬୫୬୯ଜଣ ଯାତ୍ରୀ ଯିବା ଆସିବା କରିଥାନ୍ତି ।

ତା'ପରେ ହଇଜା ଜୁନ୍ ମାସ ପ୍ରଥମ ସପ୍ତାହରେ ପୁରୀରେ ଦେଖାଦେଲା । ମୋର ବାର୍ଷିକ ସାନିଟାରୀ ରିପୋର୍ଟରେ ପୁରୀରେ ହଇଜାର ଇତିହାସ ସଂପର୍କରେ ବିସ୍ତୃତ ଭାବେ ବର୍ଣ୍ଣନା କରିବି ମାତ୍ର ବର୍ତ୍ତମାନ ପାଇଁ ବାବୁ ଉଦୟ ଚାନ୍ଦ ଦତ୍ତ ପ୍ରଦତ୍ତ ରିପୋର୍ଟ ନିମ୍ନରେ ଉଲ୍ଲେଖ କରୁଛି ।

## ୧୮୬୮ ମସିହା ରଥଯାତ୍ରା ସମୟରେ ହଇଜା ସଂପର୍କୀୟ ବିବରଣୀ

ଯାତ୍ରୀମାନେ ମେ' ମାସ ୨୫ ତାରିଖ ପାଖରୁ ପୁରୀକୁ ଆସିବାରେ ଲାଗିଥାନ୍ତି । ଯେଉଁ କେତେକ ଯାତ୍ରୀ ମେ' ମାସ ୨୫ ତାରିଖ ପୂର୍ବରୁ ପୁରୀରେ ପହଞ୍ଚିଥିଲେ, ସେମାନଙ୍କ ସଂଖ୍ୟା ଖୁବ୍ ନଗଣ୍ୟ । ସେମାନେ ସମସ୍ତେ ବଙ୍ଗାଳୀ ମହିଳା ଥିଲେ । ଦୋଳଯାତ୍ରା ସମୟରେ ପୁରୀରେ ହଇଜା ବ୍ୟାପିଥିଲା ଏବଂ ଯାତ୍ରୀମାନେ ପୁରୀରୁ ଫେରିଲା ପରେ କେବଳ ଜଣେ ବ୍ୟକ୍ତି ଏପ୍ରିଲ ମାସ ୨୬ ତାରିଖରେ ହଇଜାରେ ଆକ୍ରାନ୍ତ ହେବା ଖବର ମିଳିଥିଲା । ଏହାପରେ ମେ' ମାସ ୨୯ ତାରିଖରେ ପୁଣି ହଇଜା ପୁରୀରେ ଆରମ୍ଭ ହେଲା । କହିବାକୁ ଗଲେ ସେ ବର୍ଷ ମାତ୍ର ଏକମାସ ଦୁଇଦିନ ପାଇଁ ପୁରୀ ସହରରେ ହଇଜା ନଥିଲା । ଯାତ୍ରୀମାନେ ପୁରୀରେ ପହଞ୍ଚିବାର ୪/୫ ଦିନ ପରେ ରୋଗ ଆରମ୍ଭ ହେଲା । ଯେଉଁ ଯାତ୍ରୀ ଦଳ ମଧ୍ୟରେ ପ୍ରଥମେ ହଇଜା ଦେଖାଦେଲା, ସେମାନେ ସମସ୍ତେ ପୁରୀରେ ଆଠଦିନ ଆଗରୁ ଥିଲେ । ଯଦିଓ ପ୍ରଥମ କେସ୍ ମେ ୨୯ ତାରିଖରେ ଆରମ୍ଭ ହୋଇଥିଲା, ଜୁନ୍ ମାସ ୭ ତାରିଖ ପର୍ଯ୍ୟନ୍ତ ଏହି ରୋଗରେ ଅନ୍ୟ କେହି ପୀଡିତ ଥିବାର ଖବର ନଥିଲା । ଜୁନ୍ ମାସ ୭ ତାରିଖ ଦିନ ପୁରୀ ସହରରେ ଭଲ ଅସରାଏ ବର୍ଷା ହୋଇ ତାପମାତ୍ରା ହ୍ରାସ ପାଇଥିଲା । ବର୍ଷା ସାଙ୍ଗକୁ ପବନ ମଧ୍ୟ ଜୋର୍‌ରେ ଆରମ୍ଭ ହୋଇଥିଲା । ଏ ବର୍ଷ ରଥଯାତ୍ରାକୁ ୫୦,୦୦୦ ଯାତ୍ରୀ ଆସିଥାନ୍ତି । ଆଜି ପର୍ଯ୍ୟନ୍ତ ହଇଜାରେ ମରିଥିବା ଯାତ୍ରୀଙ୍କ ସଂଖ୍ୟା ୧୫୦ । ସହରରେ ମହାମାରୀ ବ୍ୟାପକ ଥିବା ଭିତରେ ଯାତ୍ରୀମାନେ ପୁରୀରୁ ଫେରିବା ଆରମ୍ଭ କରିଥିଲେ ।

ରଥଯାତ୍ରା ଦେଖିବାକୁ ଆସିଥିବା ଯାତ୍ରୀମାନଙ୍କ ମଧ୍ୟରୁ ବେଙ୍ଗଲ ରାଜ୍ୟର ହାଲିଶପୁର ଗାଁର ୮୦ ବର୍ଷୀୟା ମହିଳା ଥିଲେ ପ୍ରଥମ । ତାଙ୍କୁ ହଇଜା ଆକ୍ରମଣ କରିବାର ୯ଦିନ ଆଗରୁ ସେ ପୁରୀରେ ପହଞ୍ଚିଥିଲେ । ୨୮ ମେ' ରାତିରେ ସେ ରୋଗାକ୍ରାନ୍ତ ହେଲେ । ତା'ପରଦିନ ସକାଳ ୧୦ଟା ବେଳେ ସେ ମୃତ୍ୟୁବରଣ କରିଥିଲେ । ଏହି ଘଟଣା ହରଚଣ୍ଡୀ ସାହିର 'ନାଗାମଠ' ପାଖରେ ଘଟିଥିଲା । ଦ୍ୱିତୀୟ କେସ୍‌ରେ ସେହିପରି ଜଣେ ବଙ୍ଗାଳୀ ଯୁବତୀ ପୁରୀକୁ ଆସିବାର ୧୧ଦିନ ପରେ ଆକ୍ରାନ୍ତ ହୋଇଥିଲା । ବାଲିସାହିର ଶ୍ୱେତଗଙ୍ଗା ନିକଟରେ ସେ ଗୋଟିଏ ପକ୍କା ଘରେ ରହୁଥିଲେ । ସେହି ଲଜିଂରେ ମଧ୍ୟ ଆଉ ଗୋଟିଏ ଘଟଣା ଘଟିଲା । ଦୁଇଟି ଯାକ କେସ୍ ଜୁନ୍ ମାସ ୬ ତାରିଖରେ ଘଟିଥିଲା । ୪ର୍ଥ ଓ ୫ମ

କେସ୍ ସହରର ଦୁଇ ବ୍ୟବସାୟୀଙ୍କୁ ଧରିଥିଲା । ସେମାନେ ଦ୍ୱିତୀୟ ଓ ତୃତୀୟ ଘଟଣା ଘଟିଥିବା ସ୍ଥାନ ପାଖରେ ରହୁଥିଲେ । ୭ ତାରିଖରେ ସେହି ଘରେ ହଇଜାରେ ଆଉଜଣେ ଆକ୍ରାନ୍ତ ହେଲେ ଜୁନ୍ ୮ ତାରିଖ ଦିନ । ସହରର ସେହି ଅଞ୍ଚଳରେ ଆଉ କେତେକ ଘଟଣା ଘଟିଥିଲା । ସେହିଦିନ ଠାରୁ ସହରରେ ହଇଜା ଅନ୍ୟ ଅଞ୍ଚଳକୁ ବ୍ୟାପିବାରେ ଲାଗିଲା, ମୁଖ୍ୟତଃ ଯେଉଁ ଅଞ୍ଚଳରେ ଯାତ୍ରୀମାନେ ବହୁ ସଂଖ୍ୟାରେ ରହୁଥିଲେ । ପୋଲିସ୍ ଦେଇଥିବା ରିପୋର୍ଟରୁ ମୁଁ ଦେଖିଲି ୨୬ ନଭେମ୍ବର ୧୮୬୭ ମସିହାରୁ ୨୬ ଜୁନ୍ ୧୮୬୮ ମସିହା ମଧ୍ୟରେ ପୁରୀ ଜିଲ୍ଲାରେ ୩୩୯ଜଣ ହଇଜାରେ ଆକ୍ରାନ୍ତ ହୋଇ ୩୧୭ଜଣ ମୃତ୍ୟୁବରଣ କରିଥିଲେ । ପୁରୀ ସହରରେ କେବଳ ୨୨ ଫେବୃୟାରୀ ଠାରୁ ଜୁଲାଇ ୧୮୬୮ ମଧ୍ୟରେ ୨୧୯ଜଣ ଆକ୍ରାନ୍ତ ହୋଇ ୨୦୬ଜଣ ମୃତ୍ୟୁବରଣ କରିଥିଲେ । ସେହି ପ୍ରକାର ଖବର ମଧ୍ୟ ମୋ'ପାଖକୁ ଆସିଥିଲା । ଯେଉଁଥିରେ ଉଲ୍ଲେଖ କରାଯାଇଥିଲା 'ସମଗ୍ର ପୁରୀ ଜିଲ୍ଲାରେ ୭ ଜାନୁଆରୀ ଠାରୁ ଜୁଲାଇ ପହିଲା ମଧ୍ୟରେ ୨୯୨ଜଣ ହଇଜାରେ ଆକ୍ରାନ୍ତ ହୋଇ ୨୫୨ଜଣ ମରିଥିଲେ । ଏହି ୨୫୨ଜଣ ମଧ୍ୟରୁ ପୁରୀ ଟାଉନ୍‌ରେ କେବଳ ୧୬୩ଜଣ ମରିଥିଲେ ।

'ରିପୋର୍ଟ ଅଫ୍ କମିଶନ ଟୁ-ଇନ୍‌କ୍ୱାରୀ ଇନ୍ ଟୁ ଦି ଫାମିନ୍ ଅଫ୍ ବେଙ୍ଗଲ ଆଣ୍ଡ ଓଡ଼ିଶା'ରେ ପୁରୀ ସହରରେ ବିଗତ ୩ବର୍ଷର ମାସିକ ବୃଷ୍ଟିପାତର ହିସାବ ଉଲ୍ଲେଖ ନିମ୍ନୋକ୍ତ ଭାବରେ ଦର୍ଶାଯାଇଥିଲା ।

| | ୧୮୬୫ | ୧୮୬୬ | ୧୮୬୭ |
|---|---|---|---|
| ଜାନୁଆରୀ- | - | - | - |
| ଫେବୃୟାରୀ- | - | ୩.୯" | - |
| ମାର୍ଚ୍ଚ | - | - | - |
| ଏପ୍ରିଲ | - | ୬.୦" | ୪.୨୦" |
| ମେ- | ୧୩.୦" | ୨.୬" | ୪.୬୦" |
| ଜୁନ୍- | ୫.୬" | ୬.୨" | ୮.୨" |
| ଜୁଲାଇ- | ୪.୩ | ୬.୭" | ୧୩.୪" |
| ଅଗଷ୍ଟ- | ୫.୬" | ୨୮.୬" | ୧୪.୭" |
| ସେପ୍ଟେମ୍ବର- | ୫.୨" | ୧୨.୧" | ୧୦.୬" |
| ଅକ୍ଟୋବର- | - | ୧୧.୧" | ୧୪.୩" |
| ନଭେମ୍ବର- | - | - | ୪.୫" |
| ଡିସେମ୍ବର- | - | - | ୪.୫" |

ସର୍ବମୋଟ - ୧୮୬୬ରେ ୭୭.୨"

ଫାମିନ୍ କମିଶନରମାନେ ତାଙ୍କର ୧୮୬୫ ମସିହା ବୃଷ୍ଟିପାତ ଉପରେ ମନ୍ତବ୍ୟ ଦେଇ ଲେଖିଥିଲେ - "ଆନୁପାତିକ ମାସିକ ବୃଷ୍ଟିପାତ ଟେବୁଲ୍‌ରୁ ଜଣାପଡେ ଯେ, ସାରା ବର୍ଷରେ ବୃଷ୍ଟିପାତ ଅସାଧାରଣ ଭାବେ କମ୍ ଥିଲା । ମେ' ମାସରେ ୧୩ ଇଞ୍ଚ ବର୍ଷା ମୂଲ୍ୟହୀନ ହେବା ବେଳେ ବର୍ଷା ମାସ ଜୁନ୍‌ରୁ ସେପ୍ଟେମ୍ବର ମଧ୍ୟରେ ମାତ୍ର ୨୦.୭" ବର୍ଷା ହୋଇଥିଲା । ମାସିକ ଆଭରେଜ୍ ମାତ୍ର ୫" ଇଞ୍ଚ ବର୍ଷା ଥିଲା । ଅତ୍ୟନ୍ତ ସ୍ୱଳ୍ପ ବର୍ଷା, ଧାନ ଚାଷକୁ ସଂପୂର୍ଣ୍ଣ ଭାବେ ବିଫଳ କରିଦେଇଥିଲା । ଅନାବୃଷ୍ଟି ୧୮୬୫ ମସିହାରେ କେଉଁ ଭାବେ ଦେଖାଦେଇଥିଲା, ଏହି ତଥ୍ୟରୁ ଜଣାପଡେ । ପୁରୀ ସହରରେ ଯେଉଁ ପ୍ରକାରେ ବୃଷ୍ଟିପାତ ରେକର୍ଡ କରାଯାଇଛି, ସାରା ଜିଲ୍ଲା ଏବଂ ରାଜ୍ୟର ବୃଷ୍ଟିପାତ ପ୍ରାୟ ସେହି ପ୍ରକାର ଥିଲା । ଦୁର୍ଭିକ୍ଷ ବେଳକୁ ଟଙ୍କାକୁ ୧୩ କଲିକତି ସେର ଚାଉଳ ମିଳୁଥିଲା । ୧୮୬୫, ୧୮୬୬ ମସିହାରେ ଅତ୍ୟନ୍ତ କମ୍ ବୃଷ୍ଟିପାତ, ଦୁର୍ଭିକ୍ଷର ମୁଖ୍ୟ କାରଣ ଭାବେ ବର୍ଣ୍ଣନା କରାଯାଇଛି ।

## ପୁରୀ ଜିଲ୍ଲା ଓ ଓଡ଼ିଶାର ଜନସଂଖ୍ୟା

୧୮୩୭ ମସିହା ଜନଗଣନା ଅନୁସାରେ ପୁରୀ ଜିଲ୍ଲାର ଲୋକସଂଖ୍ୟା ୫,୦୦,୯୬୩ (୫,୦୦,୯୬୩) । ଏଥିମଧ୍ୟରୁ ୬୦୦୦ ମୁସଲମାନ ହେଲା ବେଳେ ବାକି ସମସ୍ତେ ହିନ୍ଦୁ ଥିଲେ । ଜନଗଣନା ଅନୁସାରେ ମହିଳାଙ୍କ ସଂଖ୍ୟା ଥିଲା ୨,୩୦,୦୦୦ ଏବଂ ପୁରୁଷଙ୍କ ସଂଖ୍ୟା ଥିଲା ୨,୭୦,୯୬୩ । ୧୮୫୪-୫୫ ମସିହାରେ ପୋଲିସ୍ ସୂତ୍ରରୁ ଜଣାପଡିଲା, ପୁରୀ ଜିଲ୍ଲାର ଲୋକସଂଖ୍ୟା ୬,୧୩,୫୩୬ ।

୧୮୬୬ ମସିହାରେ ଦୁର୍ଭିକ୍ଷ ପୂର୍ବରୁ ପୁରୀ ଜିଲ୍ଲାର ଲୋକସଂଖ୍ୟା ୭,୫୪,୭୦୧ ଥିଲା । ଦୁର୍ଭିକ୍ଷ ଯୋଗୁଁ ଜିଲ୍ଲାରୁ ୧,୭୫,୯୫୫ଜଣ ମୃତ୍ୟୁବରଣ କରିଥିଲେ । ୩୭୯୮ଜଣ କଙ୍କାଳସାର ହୋଇ ଜିଲ୍ଲାରୁ ଚାଲି ଯାଇ ନାପତା ହୋଇଯାଇଥିଲେ । ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ମିଃ ରାବନ୍ ତାଙ୍କ ରିପୋର୍ଟରେ ଦର୍ଶାଇଛନ୍ତି ଯେ, ପୁରୀ ସହରକୁ ଛାଡି ସମଗ୍ର ଜିଲ୍ଲାରେ ୨,୧୩,୯୪୪ଜଣ ବ୍ୟକ୍ତି ୧୮୬୫ ମସିହା ଅକ୍ଟୋବର ମାସରୁ ୧୮୬୭ ମସିହା ଜାନୁଆରୀ ମାସ ମଧ୍ୟରେ ମୃତ୍ୟୁବରଣ କରିଥିଲେ । ପୁରୀ ସହରକୁ ଛାଡ଼ିଦେଲେ ଜିଲ୍ଲାର ମୃତ୍ୟୁ ହାର ସମଗ୍ର ଜନସଂଖ୍ୟାର ୨୮.୩୬% ପ୍ରତିଶତ ଥିଲା । ଜିଲ୍ଲାର ବିଭିନ୍ନ ପ୍ରଗଣାମାନଙ୍କର ଲୋକସଂଖ୍ୟା ତୁଳନାରେ ମୃତ୍ୟୁସଂଖ୍ୟାର ହାର ସମୁଦ୍ର ଓ ଚିଲିକା ହ୍ରଦ ମଧ୍ୟରେ ଥିବା ସାତପଡା ପ୍ରଗଣାରେ ସବୁଠାରୁ ବେଶୀ ୫୨.୯୭ ପ୍ରତିଶତ ଥିବାବେଳେ ଖୋର୍ଦ୍ଧା ନିକଟସ୍ଥ ହଳଦିଆ ପ୍ରଗଣାରେ ସବୁଠାରୁ କମ୍ ୪.୪୯ ପ୍ରତିଶତ ଥିଲା ।

ଦୁର୍ଭିକ୍ଷ ପୂର୍ବରୁ ଓଡ଼ିଶାର ୩ଟି ଜିଲ୍ଲା କଟକ, ପୁରୀ, ବାଲେଶ୍ୱରର ଲୋକସଂଖ୍ୟା ବୋଧେ ୩୦ଲକ୍ଷ ଥିଲା, ସେଥିମଧ୍ୟରୁ ପ୍ରାୟ ୧୦ଲକ୍ଷ ଲୋକ ଦୁର୍ଭିକ୍ଷରେ ମୃତ୍ୟୁବରଣ

କରିଥିଲେ । (A Million died of famine andits immediate results) ଦୁର୍ଭିକ୍ଷ ସଂପର୍କରେ କଟକ ଡିଭିଜନର କମିଶନର ମିଃ ରେଭେନ୍‌ସା ତାଙ୍କ ରିପୋର୍ଟରେ ଯେଉଁ ପରିସଂଖ୍ୟାନ ଦେଇଥିଲେ ତାହା ନିମ୍ନରେ ପ୍ରଦତ୍ତ କରାଗଲା -

ଦୁର୍ଭିକ୍ଷ ପୂର୍ବରୁ ୩ଟି ଜିଲ୍ଲାର ଲୋକସଂଖ୍ୟା ୩୦,୧୫,୮୨୬ ଥିଲା । ଏଥିମଧ୍ୟରୁ ୮,୦୯,୫୬୧ଜଣ ବ୍ୟକ୍ତି ଦୁର୍ଭିକ୍ଷରେ ମୃତ୍ୟୁବରଣ କରିଥିଲେ । ୧୧୫,୦୨୮ଜଣ ବ୍ୟକ୍ତି ଜିଲ୍ଲାମାନଙ୍କରୁ ପଳାଇ ଯାଇଥିଲେ କିମ୍ୱା ନାପତା ହୋଇଯାଇଥିଲେ । ସମୁଦାୟ ୯,୨୯,୪୯୭ ଲୋକ ମରିହଜି ଗଲାପରେ ୨୦,୮୬,୩୨୩ ଲୋକ ଦୁର୍ଭିକ୍ଷ କବଳରୁ ତିଷ୍ଠି ଯାଇଥିଲେ । ସମଗ୍ର ଜନସଂଖ୍ୟାର ୨୭.୪୨ ପ୍ରତିଶତ ମୃତ୍ୟୁବରଣ କଲାବେଳେ ୩.୯୧ ପ୍ରତିଶତ ନାପତା ହୋଇଯାଇଥିଲେ । ସବୁକୁ ଏକତ୍ର କଲେ ଓଡ଼ିଶାର ୩୧.୩୪ ପ୍ରତିଶତ ଲୋକ ଦୁର୍ଭିକ୍ଷରେ ନିଃଶେଷ ହୋଇଯାଇଥିଲେ ।

## ଜିଲ୍ଲାମାନଙ୍କର ଆୟତନ:

ପୁରୀ ଜିଲ୍ଲାର ଆୟତନ ୨.୬୯୭ବର୍ଗ ମାଇଲ୍ ହେଲାବେଳେ କଟକର ଆୟତନ ୩,୦୬୨ ବର୍ଗ ମାଇଲ୍ ଏବଂ ବାଲେଶ୍ୱର ଜିଲ୍ଲାର ୧୮୯୦ ବର୍ଗ ମାଇଲ୍ ଥିଲା । ସମଗ୍ର ଓଡ଼ିଶା ପ୍ରଦେଶର ସମୁଦାୟ ଆୟତନ ୭,୬୪୯ ବର୍ଗ ମାଇଲ୍ ଥିଲା ଏବଂ ରାଜ୍ୟର ପଶ୍ଚିମାଞ୍ଚଳରେ ଅବସ୍ଥିତ ଗଡଜାତ ମାହଲର ଆୟତନ ୧୫୦୦୦ ବର୍ଗ ମାଇଲ୍ ଥିଲା । ଓଡ଼ିଆମାନଙ୍କର ମୂଳଦେଶ, ଓଡ୍ର ଦେଶ ସଂପର୍କରେ ଷ୍ଟର୍ଲିଂ ବର୍ଣ୍ଣନା କରି ଏହାକୁ ପ୍ରାକୃତିକ ବିଭାଗ ବା ଅଞ୍ଚଳ (ଡିଭିଜନ)ରେ ବାଣ୍ଟିଛନ୍ତି । ଏହି ତିନୋଟି ଅଞ୍ଚଳର ସ୍ଥଳାକୃତି ଏବଂ ଜଳବାୟୁ ସଂପୂର୍ଣ୍ଣ ଅଲଗା । ପ୍ରଥମଟି ହେଲା ସମୁଦ୍ର କୂଳକୁ ଲାଗି ୫ ମାଇଲ୍‌ରୁ ୨୦ ମାଇଲ୍ ପର୍ଯ୍ୟନ୍ତ ସନ୍ତସନ୍ତିଆ ଲୁଣା ଜଙ୍ଗଲ ଘେରା ଅଞ୍ଚଳ, ଦ୍ୱିତୀୟ, ସମତଳ ଓ ଖୋଲା ଅଞ୍ଚଳ ଯାହା ମୋଗଲ ବନ୍ଦୀ ଭାବେ ଜଣା । ଏହାର ଦୈର୍ଘ୍ୟ ୧୦ରୁ ୫୦ମାଇଲ୍ ପାର୍ବତ୍ୟାଞ୍ଚଳର ପାଦଦେଶ ପର୍ଯ୍ୟନ୍ତ । ତୃତୀୟ ଅଞ୍ଚଳ ହେଲା ପଶ୍ଚିମରେ ଅବସ୍ଥିତ ପାର୍ବତ୍ୟାଞ୍ଚଳ ।

ପ୍ରଥମ ଅଞ୍ଚଳ ଲୁଣା ଜଙ୍ଗଲ ଘେରା ସନ୍ତସନ୍ତିଆ ଅସ୍ୱାସ୍ଥ୍ୟକର ଅଞ୍ଚଳ, ଯେଉଁଠି ମ୍ୟାଲେରିଆ ରୋଗର ପ୍ରାଦୁର୍ଭାବ ଖୁବ୍ ବେଶୀ । ଏହି ଅଞ୍ଚଳର ଭୂଭାଗ, ସନ୍ତସନ୍ତିଆ, ମୋଟା ଲୁଣି ଘାସ, ଛୋଟ ଛୋଟ କଣ୍ଟାବୁଦାରେ ପରିପୂର୍ଣ୍ଣ । ଝାଉଁ ଜଙ୍ଗଲ, ହେନ୍ତାଳ ବଣ ଏଠି ଦେଖିବାକୁ ମିଳେ । ଦକ୍ଷିଣରେ କୋଣାର୍କ ପାଖାପାଖି ଅଞ୍ଚଳମାନଙ୍କରେ ଖାଲି ବାଲିବନ୍ତ ମାନ ଦେଖାଯାଏ । ସମୁଦ୍ରକୂଳ ବାଲି ଉପରେ ଏକ ପ୍ରକାର ଲତା ବର୍ଷକରୁ ଛ'ମାସ ପର୍ଯ୍ୟନ୍ତ ମାଡିଥାଏ । ଏହି ଲତାରେ ସୁନ୍ଦର ନାଲିମିଶା ବାଇଗେଣିଆ ରଙ୍ଗର ଫୁଲ ଫୁଟେ, ଏହାର ପତ୍ର ସବୁଜ । ଗାଁ ଲୋକମାନେ ଏହି ଲତାକୁ 'କନଶିରି' ଲତା ବୋଲି କୁହନ୍ତି ।

ସମୁଦ୍ରକୂଳ ବାଲିବନ୍ତ ଉପରେ ଆଉ ଏକ ପ୍ରକାର ଗହଳିଆ ମୋଟା ପତ୍ରଯୁକ୍ତ ଲତା ବହୁଳ ଭାବେ ମାଡି ଥିବାର ଦେଖାଯାଏ । ଏକ ପ୍ରକାର କଣ୍ଟକଯୁକ୍ତ ଘାସ ମଧ ଏହି ବାଲିବନ୍ତ ଉପରେ ଉଠିଥାଏ । ଗାଁ ଗହଳି ଲୋକମାନେ ଏହି ଘାସକୁ 'ଗୋରୁକଣ୍ଟା' ବୋଲି କହନ୍ତି । ସମୁଦ୍ରକୂଳ ବାଲିବନ୍ତ ଯାକ ଗୋରୁକଣ୍ଟା ଘାସ ସାଙ୍ଗକୁ କନଶିରି ଲତାରେ ପରିପୂର୍ଣ୍ଣ ଥାଏ ।

## ମୋଗଲ ବନ୍ଦୀ ଅଞ୍ଚଳ

ଷ୍ଟର୍ଲିଂଙ୍କ ମତରେ 'ମୋଗଲ ବନ୍ଦୀ' ହେଉଛି ଦ୍ୱିତୀୟ ଭୂ-ଅଞ୍ଚଳ । ଏହି ଅଞ୍ଚଳର ମୃତ୍ତିକା ପ୍ରାୟତଃ 'ଦୋରସା' ଯେଉଁଠି ଧାନ ପ୍ରଚୁର ପରିମାଣରେ ଉତ୍ପନ୍ନ ହୋଇଥାଏ । ଏହାର ଉଦ୍ଭିଦ ସଂପଦ ସଂପର୍କରେ ଷ୍ଟର୍ଲିଂ ବର୍ଣ୍ଣନା କରିଛନ୍ତି । କାଂଶବାଂଶ ନଦୀର ଦକ୍ଷିଣକୁ ମୋଗଲବନ୍ଦୀ ଅଞ୍ଚଳର ଭୂ-ଭାଗରେ ମୁଖ୍ୟତଃ ବଡ ବଡ ଆମ୍ବତୋଟା, ବାଉଁଶ ବଣ ଏବଂ ସବୁଠାରୁ ସୁନ୍ଦର, ବିରାଟକାୟ ବରଗଛ ମାନଙ୍କରେ ପୂର୍ଣ୍ଣ । ଯେଉଁମାନଙ୍କର ବଗିଚା ଅଛି, ସେମାନେ ବଗିଚାରେ ରଜନୀଗନ୍ଧା, ହେନା, ଗେଣ୍ଡୁ, ଚମ୍ପା, ଗୋଲାପ, ମାଳତୀ ପ୍ରଭୃତି ଫୁଲଗଛ ମାନ ଲଗାଇଥାନ୍ତି । ସମଗ୍ର ମୋଗଲବନ୍ଦୀ ଅଞ୍ଚଳରେ 'ନଡିଆ ଚାଷ' ବହୁଳ ପରିମାଣରେ ଦେଖାଯାଏ । ଜଡା ତେଲକୁ ଓଡ଼ିଆମାନେ ରୋଷେଇରେ ବ୍ୟବହାର କରିଥାନ୍ତି । ଡକ୍ଟର ଜେ.ଜେ.ଡୁରାଣ୍ଟ, ପୂର୍ବତନ ଆସିଷ୍ଟାଣ୍ଟ ସିଭିଲ୍ ସର୍ଜନ, ଡକ୍ଟର ଏଫ୍- ଆଣ୍ଡରସନ (ଡେପୁଟି ଇନ୍ସପେକ୍ଟର ଜେନେରାଲ ଅଫ୍ ହସ୍‌ପିଟାଲ୍ସ)ଙ୍କ ପାଖକୁ ୧୩/୬/ ୧୮୬୨, ଚିଠି ନମ୍ବର ୨୫ରେ ଲେଖିଥିଲେ 'ଜଡା ତେଲର ଔଷଧୀୟ ଗୁଣ ଯୋଗୁଁ ସାଧାରଣରେ ଏହାର ବ୍ୟବହାର କରାଗଲାବେଳେ ଓଡ଼ିଶାରେ ପ୍ରାୟ ପ୍ରତ୍ୟେକ ପରିବାର ଦିନକୁ ଅଧ ଛଟାଙ୍କିଏ (ଗୋଟେ ଆଉନ୍ସ) ଜଡାତେଲ ଖାଦ୍ୟ ପ୍ରସ୍ତୁତ ପାଇଁ ବ୍ୟବହାର କରିଥାନ୍ତି । ଜଡାତେଲ ସାଙ୍ଗରେ ଲଙ୍କା ଏବଂ ଅନ୍ୟାନ୍ୟ ମସଲା ପକାଇ ରୋଷେଇ କଲାବେଳେ ଜଡା ତେଲର ଗନ୍ଧ ପ୍ରାୟ ଦୂର ହୋଇଯାଏ ।' ମୋଗଲ ବନ୍ଦୀର ଦକ୍ଷିଣାଞ୍ଚଳରେ ମୁଖ୍ୟତଃ କପା, ଆଖୁ, ଧୂଆଁପତ୍ର ବିଶେଷ ଭାବରେ ଚାଷ କରାଯାଏ । ପ୍ରାୟ ପ୍ରତ୍ୟେକ ଓଡ଼ିଆଙ୍କ ଘରେ ଧୂଆଁପତ୍ରରୁ ପ୍ରସ୍ତୁତ ଏକ ପ୍ରକାର ଚୁରୁଟ (ପିକା) ପିଇବାର ଦେଖାଯାଏ । ଯେତେବେଳେ ଏହି ଚୁରୁଟରୁ ନିଆଁ ଲିଭିଯାଏ, ସେତେବେଳେ ଏମାନେ ଅଧାପୋଡା ଚୁରୁଟ (ପିକା)କୁ ଡାହାଣ ପାଖ କାନ ଉପରେ କିମ୍ବା ସେମାନେ ପିନ୍ଧିଥିବା ଗାମୁଛା କି ଲୁଗାର ପଛପାଖ ଅଣ୍ଟା ନିକଟରେ ଖୋସି ଦିଅନ୍ତି । ଓଡ଼ିଆମାନେ ପିକା ଟାଣିବା ଜାତି (The Oriyas are essentially a tobacco smoking people) ସେମାନଙ୍କର ଆରାମପ୍ରିୟ ଚାଲିଚଳନ ସାଙ୍ଗକୁ ପିକାଟଣା ବେଶ୍ ଖାପ ଖାଇଥାଏ ।

ମୋଗଲ ବନ୍ଦୀର କେନ୍ଦ୍ରାଞ୍ଚଳ ଓ ଦକ୍ଷିଣ ପଟେ ଶୀତ ଦିନେ ରବି ଫସଲ, ମକ୍କା, ଖାଇବା ତେଲ ପ୍ରଚୁର ପରିମାଣରେ ଅମଳ ହୋଇଥାଏ । ଏମାନଙ୍କ ମଧ୍ୟରୁ ମୁଗ, ହରଡ, ଚଣା, ଖେସାରୀ, ବିରି, କୋଳଥ, ବୁଟ, ବାଜ୍ରା, ରାଶି, ସୋରିଷ ପ୍ରଭୃତି ଫସଲ ମୁଖ୍ୟ ଚାଷକାରୀ ଫସଲ । ପରିବା ଚାଷ ଓ (ରନ୍ଧା ପାଇଁ ବ୍ୟବହୃତ ପରିବା) ସଂପର୍କରେ ଷ୍ଟର୍ଲିଂ କହିଛନ୍ତି ଯେ, 'ଏମାନେ ବାଡି ବଗିଚାରେ ସାରୁ, ମୂଳା, କଲରା, ଧନିଆ, ମେଥି, ଫୁଟି, କାକୁଡି, କଖାରୁ, ପିତା ତୋରଡା, ଶିମ୍ବ, କଳମ୍ବ ଶାଗ ପ୍ରଭୃତି ପରିବା ଓ ଶାଗ ଉତ୍ପନ୍ନ କରିଥାନ୍ତି । ସବୁ ପ୍ରକାର କାକୁଡି, ତରଭୁଜ, ଶାଗ, ଭେଣ୍ଡି, ବାଇଗଣ, ଖମ୍ବଆଳୁ, ନାଲି ଲଙ୍କା, ପିଆଜ, ରସୁଣ ମଧ୍ୟ ବାଡି ବଗିଚାରେ ଲଗାଯାଏ । ବ୍ରାହ୍ମଣ ଶାସନମାନଙ୍କର ବଗିଚାମାନଙ୍କରେ ଯେଉଁସବୁ ପରିବା ଓ ଶାଗ ଚାଷ ହୁଏ, ତାହା ନିର୍ଦ୍ଦିଷ୍ଟ ଭାବେ ବଛା ଯାଇ ଲଗାଯାଇଥାଏ । ବଗିଚାରେ ମଧ୍ୟ ସେହିପରି ସୁନ୍ଦର, ମନୋରମ ଗଛମାନ ଲଗାଯାଇଥାଏ । ଯଦି ଜଣେ ଆଧୁନିକ ଉଦ୍ଭିଦ ବିଜ୍ଞାନୀ, ପୁରୀ ବ୍ରାହ୍ମଣ ଶାସନର ଗୋଟିଏ ମନ୍ଦିର ପରିସର ମଧ୍ୟକୁ ଯାଏ, ତେବେ ଦେଖିବ ଭାରତୀୟ ବୃକ୍ଷଲତାର କେତେକ ସୌନ୍ଦର୍ଯ୍ୟମୟ ବୃକ୍ଷଲତା, ପୁଷ୍ପ ବୃକ୍ଷର ସମାରୋହ ଏହି ମନ୍ଦିର ପରିସର ମଧ୍ୟରେ ଦେଖାଯାଇଥାଏ । ଏ ସମସ୍ତ ବୃକ୍ଷମାନଙ୍କ ମଧ୍ୟରୁ ସାଧାରଣରେ ପ୍ରାୟ ପ୍ରତ୍ୟେକ ବ୍ରାହ୍ମଣ ଶାସନର ମନ୍ଦିରମାନଙ୍କ ନିକଟରେ ନାଗେଶ୍ୱର, ଚମ୍ପା, ଅଶୋକା, କାଠଚମ୍ପା, କଦମ୍ବ ଏବଂ ସୁନ୍ଦର ସୁନ୍ଦର ସୁଗନ୍ଧିଯୁକ୍ତ ପୁଷ୍ପର ଲତାମାନ ଏହିସବୁ ଗଛମାନଙ୍କରେ ଗୁଡାଇ ହୋଇଥିବାର ଦେଖିବାକୁ ମିଳେ । କେତେକ ଜାଗାରେ ପାନବରଜ, ହଳଦୀ, ଅଦା ଚାଷ ଦେଖିବାକୁ ମିଳେ । ବଗିଚା ମଧ୍ୟରେ ଅଦା, ହଳଦୀ ଚାଷ ମଧ୍ୟ କେତେ ଲୋକ କରିଥାନ୍ତି ।

ଓଡ଼ିଶାର ଯେଉଁସବୁ ବୃକ୍ଷମାନ ମୋତେ ଆକୃଷ୍ଟ କରିଥିଲା, ସେସବୁ ବୃକ୍ଷ ହେଲା ଆମ୍ବ, ପୋଲାଙ୍ଗ, ଲଙ୍କା ଆମ୍ବ, ପଣସ, ନଡିଆ, ତାଳ, ତେନ୍ତୁଳି, ଖଜୁରୀ, ବେଲ, ବର, ଅଶ୍ୱତ୍ଥ । ଆମ୍ବ କଦଳୀ ତୋଟା ପ୍ରାୟ ସବୁଆଡେ ଦେଖାଯାଏ । ରାସ୍ତାରେ ଗଲାବେଳେ ରାସ୍ତା କଡରେ କନିୟର ଗଛର ହଳଦିଆ ଫୁଲ, କୋମଳ କିନ୍ତୁ ଉଜ୍ଜ୍ୱଳ ଭେଙ୍କା ରୋଜିଆ ଫୁଲ, ରାସ୍ତାରେ ଯାଉଥିବା ପଥିକମାନଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ଷ୍ଟର୍ଲିଂଙ୍କ ଅନୁସାରେ ମୋଗଲ ବନ୍ଦୀର ପଶ୍ଚିମରେ ପାହାଡିଆ ଅଞ୍ଚଳ, ମୁଖ୍ୟତଃ ଅଣଓସାରିଆ, ତୀକ୍ଷ୍ଣ ଓ ଅସମତଳ । ସମୁଦ୍ର ପତନଠାରୁ ଏସବୁ ଅଞ୍ଚଳର ଉଚ୍ଚତା ୩୦୦ ଫୁଟରୁ ୩୦୦୦ ଫୁଟ ପର୍ଯ୍ୟନ୍ତ ହୋଇଥାଏ । ବାଲେଶ୍ୱର ଟାଉନ୍‌ର ପଶ୍ଚିମପଟ ବୀରସବୁଜ ପାହାଡିଆ ଅଞ୍ଚଳକୁ ନୀଳଗିରି ବୋଲି କହନ୍ତି । ମୋ'ର ତିଳେମାତ୍ର ସନ୍ଦେହ ନାହିଁ ଯେ, ଏହି ସୌନ୍ଦର୍ଯ୍ୟପୂର୍ଣ୍ଣ ସବୁଜିମା ଘେରା ନୀଳଗିରି ପାହାଡ ଏକ ସୁନ୍ଦର ସ୍ୱାସ୍ଥ୍ୟକେନ୍ଦ୍ରରେ ପରିଣତ ହୋଇପାରିଥାନ୍ତା । ମାତ୍ର ବର୍ତ୍ତମାନ ଏହି ପାହାଡ ଅଞ୍ଚଳ ଘନ ଜଙ୍ଗଲରେ ପରିପୂର୍ଣ୍ଣ ଏବଂ ଏଥିମଧ୍ୟକୁ ପ୍ରବେଶ

କରିବା ମଧ୍ୟ କଷ୍ଟକର । ମୁଁ ଭାବୁଛି, ଦିନେନା ଦିନେ ଏହି ସୌନ୍ଦର୍ଯ୍ୟପୂର୍ଣ୍ଣ ସବୁଜିମା ପାର୍ବତ୍ୟାଞ୍ଚଳ, ୟୁରୋପିୟାନ ମାନଙ୍କର ଅବସର ବିନୋଦ କେନ୍ଦ୍ରସ୍ଥଳରେ ପରିଣତ ହେବ । ବର୍ତ୍ତମାନ ସେହି ପାର୍ବତ୍ୟାଞ୍ଚଳକୁ ଯିବାକୁ ଭୟ ଲାଗୁଛି, କାରଣ ସେଠାକୁ ଗଲେ ମ୍ୟାଲେରିଆ ରୋଗରେ ଆକ୍ରାନ୍ତ ହେବା ନିଶ୍ଚିତ । ଏହି ଅଞ୍ଚଳର ଦକ୍ଷିଣ ଭାଗରେ ଆଦିମ ଅଧିବାସୀ କନ୍ଧ, କୋଲହ, ସୌରାମାନଙ୍କ ବାସସ୍ଥଳୀ । ଦକ୍ଷିଣାଞ୍ଚଳ ପାହାଡମାନଙ୍କରେ ବହୁ ପ୍ରକାର ଔଷଧ ବୃକ୍ଷ, ଔଷଧୀୟ ଗୁଳ୍ମଲତାମାନ ଦେଖାଯାଏ । ଔଷଧୀୟ ବୃକ୍ଷ, ଗୁଳ୍ମ, ଲତା ସଂପର୍କରେ ମୁଁ ସ୍ୱତନ୍ତ୍ର ଭାବେ ପରେ ଉଲ୍ଲେଖ କରିବି ।

## ଓଡ଼ିଶାର ଭୂତତ୍ତ୍ୱ:

ମୋଗଲବନ୍ଦୀ ଅଞ୍ଚଳର ପୂର୍ବ ପଟରେ ବଡ ବଡ ନଦୀମାନ ପ୍ରବାହିତ । ଏହି ଅଞ୍ଚଳର ମୃର୍ତ୍ତିକା ସାଧାରଣରେ ପଟୁ ମିଶା ବାଲିଆ । ଉତ୍ତର ପଶ୍ଚିମ ଦିଗରେ ମୃର୍ତ୍ତିକା ପଥୁରିଆ ଏବଂ ଚାଷୋପଯୋଗୀ ପାଇଁ ବହୁ ସ୍ଥାନରେ କାଦୁଅ ମାଟି ମଧ୍ୟ ଦେଖାଯାଏ । ଗଣ୍ଡୱାନା ଯୁଗର ଗ୍ରାନାଇଟ୍ ପଥର, ପାହାଡିଆ ଅଞ୍ଚଳରେ ଦେଖାଯାଏ । ଚିଲିକା ହ୍ରଦ ଏବଂ ସମୁଦ୍ର ମଝିରେ ଗୋଟିଏ ଅଞ୍ଚଳ ସନ୍ତସନ୍ତିଆ କିନ୍ତୁ ବାଲିଆ । ଛୋଟ ଛୋଟ ନାଳ ବହୁଳ ଭାବେ ଏହି ଅଞ୍ଚଳରେ ଥିବା ଯୋଗୁଁ ଯିବା ଆସିବାରେ ପ୍ରତିବନ୍ଧକ ସୃଷ୍ଟିକରେ । ଏହି ଅଞ୍ଚଳ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର । ୧୮୬୬ ମସିହାରେ ଦୁର୍ଭିକ୍ଷ, ଏହି ଅଞ୍ଚଳରୁ ପ୍ରଥମେ ଆରମ୍ଭ ହୋଇ ସମଗ୍ର ରାଜ୍ୟକୁ ଗ୍ରାସ କରିଥିଲା । ଏଠାକାର ଅଧିବାସୀମାନେ ଚିଲିକା ପାଣିକୁ ଖରାରେ ଶୁଖାଇ ଲୁଣ ପ୍ରସ୍ତୁତ କରନ୍ତି । ସେମାନଙ୍କୁ 'ମୁଲୁଗିହି' (MOLUNGHEES) ବୋଲି ଡାକନ୍ତି । ଖରାଦିନେ ପୁରୀର କୂଅମାନଙ୍କରେ ୬ରୁ ୮ ଫୁଟ ପାଣି ରୁହେ । ବର୍ଷାଦିନେ ଏହିସବୁ କୂଅମାନଙ୍କରେ ପାଣି ପୁରାହୋଇ ବାହାରକୁ ବାହାରେ । ବାବୁ ଉଦୟଚାନ୍ଦ ଦତ୍ତ ତାଙ୍କର ଗୋଟିଏ ରିପୋର୍ଟରେ ଦର୍ଶାଇଥିଲେ ଯେ, ପୁରୀ ଜିଲ୍ଲାର ପାହାଡିଆ ଅଞ୍ଚଳର କୂଅମାନଙ୍କର ଗଭୀର ୨୪ଫୁଟରୁ ୩୦ ଫୁଟ ପର୍ଯ୍ୟନ୍ତ ।

## ଓଡ଼ିଶାର ଜଳବାୟୁ

ଓଡ଼ିଶାର ଯେଉଁସବୁ ଅଞ୍ଚଳ ନଦୀ, ନାଳ ଲୁଣାପାଣି ଯୋଗୁଁ ବର୍ଷକର ପ୍ରାୟ ସମୟ ଜଳପ୍ଲାବିତ ଅବସ୍ଥାରେ ରୁହେ, ଯେଉଁ ଅଞ୍ଚଳ ଘଞ୍ଚ ଜଙ୍ଗଲ ଯୋଗୁଁ ଚାଷୋପଯୋଗୀ ନୁହଁ, ସେସବୁ ଅଞ୍ଚଳରେ ବିଭିନ୍ନ ପ୍ରକାର ରୋଗ ବର୍ଷସାରା ଲାଗି ରହିଥାଏ । କିନ୍ତୁ ଯେଉଁସବୁ ଅଞ୍ଚଳ ନିଗିଡା, ଚାଷୋପଯୋଗୀ, ସେସବୁ ଅଞ୍ଚଳର ଜଳବାୟୁ ମୃଦୁ ଓ ସ୍ୱାସ୍ଥ୍ୟକର । ଯେଉଁମାନେ ସମୁଦ୍ରକୂଳ ଅଞ୍ଚଳରେ ବସବାସ କରନ୍ତି, ସେମାନଙ୍କ ପାଇଁ ଖରାଦିନେ ବଙ୍ଗୋପସାଗର ଉପର ଦେଇ ବହୁଥିବା ଦକ୍ଷିଣ-ପଶ୍ଚିମ ମୌସୁମୀବାୟୁ, ଖୁବ୍ ଆରାମ ଦାୟକ । କେତେକ ପ୍ରସ୍ତାବ ଦେଇ କହିଲେଣି, ଖରାଦିନେ ବଙ୍ଗଳାର ରୋଗଗ୍ରସ୍ତ

ଲୋକଙ୍କ ପାଇଁ ପୁରୀକୁ ସ୍ୱାସ୍ଥ୍ୟକେନ୍ଦ୍ର ଭାବେ ଗ୍ରହଣ କଲେ ସମୁଦ୍ର କୂଳର ସୁଶୀତଳ ପବନ ସେମାନେ ଉପଭୋଗ କରିପାରିବେ । ମାତ୍ର ବର୍ଷର ସେହି ସମୟରେ ପୁରୀକୁ ଆସିବା ଏତେ ସହଜ ନୁହେଁ । ତା'ଛଡା ପର୍ଯ୍ୟଟକମାନଙ୍କ ପାଇଁ ପୁରୀରେ ରହିବାକୁ ଏକମାତ୍ର ଡାକବଙ୍ଗଳାକୁ ଛାଡିଦେଲେ ଆଉ କୌଣସି ସ୍ଥାନ ନାହିଁ । ମୁଁ ଦେଖୁଛି, ବର୍ତ୍ତମାନ ଡାକବଙ୍ଗଳା ଯେଉଁପ୍ରକାର ଅବ୍ୟବସ୍ଥା ମଧ୍ୟରେ ଅଛି, ସେଠାରେ ଯଦି ଜଣେ ରୋଗଗ୍ରସ୍ତ ବ୍ୟକ୍ତି ରୁହନ୍ତି ଭଲ ହେବା ପରିବର୍ତ୍ତେ ତାଙ୍କର ମାନସିକ ବିଶାଦ ଅଧିକ ବଢ଼ିଯିବ । ଯଦି ପୁରୀରେ ରହିବା ପାଇଁ ପାନ୍ଥଶାଳା ନିର୍ମାଣ କରାଯାଇ, ପୁରୀକୁ ଆସିବା ପାଇଁ ଭଲ ରାସ୍ତା, ସମୁଦ୍ରରେ ସ୍ନାନ ପାଇଁ ଉପଯୁକ୍ତ ବ୍ୟବସ୍ଥା କରାଯାଇ ପାରନ୍ତା, ତେବେ ଏଠାକୁ ଅଧିକ ପର୍ଯ୍ୟଟକ ଆସିବା ପାଇଁ ଆଗ୍ରହ ପ୍ରକାଶ କରନ୍ତେ । ବର୍ତ୍ତମାନ ପୁରୀରେ ଯିବା ଆସିବା କରିବାକୁ କୌଣସି ପ୍ରକାର ଗାଡି କିମ୍ବା ବଗି ନାହିଁ । ୟୁରୋପୀୟମାନେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାକୁ ହେଲେ ଚାଲି ଚାଲି କିମ୍ବା ପାଲିଙ୍କିରେ ଯାଇଥାନ୍ତି । କେହି କେବେ ସମୁଦ୍ରରେ ଗାଧୋଇବା ଦେଖାଯାଏ ନାହିଁ । ସମୁଦ୍ରର କେତେକ ଜାଗାରେ ଶକ୍ତିଶାଳୀ ଅଣ୍ଡର କରେଣ୍ଟ୍ ଅଛି । କହିବାକୁ ଗଲେ, ସମୁଦ୍ରକୂଳ ଏପର୍ଯ୍ୟନ୍ତ ଗାଧୋଇବା ପାଇଁ ପ୍ରସ୍ତୁତ ହୋଇନାହିଁ । ଯେତେବେଳେ ଲୋକମାନେ ସମୁଦ୍ରରେ ଗାଧୋଇବା ପାଇଁ ବାହାରିବେ, ସେତେବେଳେ ନିଶ୍ଚିତ ଭାବେ ସମୁଦ୍ରକୂଳର ଉନ୍ନତି ହେବ । ଶୁଣିଲେ କେତେ ଲୋକଙ୍କ ମୁହଁରୁ ପାଣି ଗଡିପାରେ ଯେ, ଏଠାରେ ବହୁ ପ୍ରକାର ମାଛ ଅତି ସୁଲଭ ଦରରେ ମିଳିଥାଏ । ମାତ୍ର ଗୋଟିଏ 'ପେନି'ରେ ଏକ ଡର୍ଜନ ପର୍ଯ୍ୟନ୍ତ ସୁନ୍ଦର ଶାମୁକା (Oysters) ମିଳିପାରେ । ଗୋଟିଏ ଟଙ୍କାରେ ବଡ ସୁନ୍ଦର କଇଁଛ କିଣିପାରିବ ।

ପ୍ରଦେଶରେ ବହୁ ବଡ ବଡ ନଦୀ ଅଛି । ତୀର୍ଥଯାତ୍ରୀମାନେ ପୁରୀ ଆସିଲା ବେଳେ ଏହିସବୁ ନଦୀକୁ ପାରହୋଇ ଆସିଥାନ୍ତି । ନଦୀମାନଙ୍କ ମଧ୍ୟରେ ସବୁଠାରୁ ବଡ ନଦୀ ହେଲା ମହାନଦୀ, କାଠଯୋଡି, ବ୍ରାହ୍ମଣୀ, ବୈତରଣୀ, ବୁଢ଼ାବଳଙ୍ଗ, କୁଶଭଦ୍ରା, ଶାଳନ୍ଦୀ, କାଂଶବାଂଶ, ଖରସୁଆଁ । ମୁଁ ନିଜେ ଏ ସମସ୍ତ ନଦୀ ବହୁ କଷ୍ଟରେ ପାରି ହୋଇଛି । ଅନୁଭବ କରୁଛି, ଯାତ୍ରୀମାନଙ୍କ ପାଇଁ ଏସବୁ ନଦୀ ଡଙ୍ଗାରେ ପାରି ହୋଇ ପୁରୀ ଯିବା କେତେ କଷ୍ଟକର । ଫଳ, ଫୁଲ, ପନିପରିବା ଯାହାସବୁ ଏହି ପ୍ରଦେଶରେ ଉତ୍ପନ୍ନ ହୁଏ, ସେସବୁ ପ୍ରାୟ ବଙ୍ଗଳାରେ ମିଳିଥାଏ । ଏସବୁକୁ ଛାଡିଦେଲେ, ରାଜ୍ୟରେ ଖୁବ୍ ମୂଲ୍ୟବାନ କାଠ, ବାହାରକୁ ରପ୍ତାନୀ ହୋଇଥାଏ । ବାହାରକୁ ଯାଉଥିବା କାଠମାନଙ୍କ ମଧ୍ୟରୁ ଶାଳ, ପିଆଶାଳ, ଶିଶୁ, ଶାଗୁଆନ, କୁରୁମ, ଗମ୍ଭାରୀ ଓ ପଣସ ଇତ୍ୟାଦି କେତେକ ମୂଲ୍ୟବାନ କାଠ । ତୈଳବୀଜ ମଧ୍ୟ ଏଠାରେ ପର୍ଯ୍ୟାପ୍ତ ପରିମାଣରେ ମିଳେ, ଯାହାକୁ ଏଠାକାର ଅଧିବାସୀମାନେ ଖାଇବା ତେଲ, ଜାଳେଣି ତେଲ ଏବଂ ଔଷଧ ପାଇଁ ବ୍ୟବହାର କରିଥାନ୍ତି । ସବୁଠାରୁ ଅଧିକ ପରିମାଣରେ ବ୍ୟବହୃତ ହେଉଥିବା ତେଲମାନଙ୍କ ମଧ୍ୟରେ ପୋଲାଙ୍ଗ ତେଲ ପ୍ରଧାନ । ମୁଁ ଜାଣିନି, କୋଲକାତା ବଜାରରେ ଏହି ତେଲର ଚାହିଦା

କେତେ ହେବ, କିପରି ହେବ, ମାତ୍ର ମୁଁ ଭାବୁଛି, ଯଦି ଏହି ତେଲ ପାଇଁ ବିକ୍ରି କରିବାର ବନ୍ଦୋବସ୍ତ ହୋଇପାରନ୍ତା, ତେବେ ଓଡ଼ିଆମାନେ ବିଶେଷ ଭାବେ ଲାଭବାନ ହୁଅନ୍ତେ । ରାଜ୍ୟର ଖଣିଜ ପଦାର୍ଥମାନଙ୍କ ମଧ୍ୟରେ ଲୁହା, କୋଇଲା, ଚୂନପଥର, ମାଇକା, କ୍ଲୋରାଇଟ୍ ଇତ୍ୟାଦି ବହୁଳ ଭାବେ ଦେଖାଯାଏ ।

ଓଡ଼ିଶାରେ ଲୁଣ ପର୍ଯ୍ୟାପ୍ତ ପରିମାଣରେ ମରାଯାଏ । ଆଗେ ଲୁଣରୁ ଭଲ ଆୟ ହେଉଥିଲା ମାତ୍ର ୧୮୬୩ ମସିହାଠାରୁ ଲୁଣ ରାଜସ୍ୱ ବହୁ ପରିମାଣରେ କମି ଯାଇଛି । ଲିଭରପୁଲ ବଜାରରେ ଓଡ଼ିଶା ଲୁଣର ଚାହିଦା ନାହିଁ । ଆଗେ କେବଳ ଓଡ଼ଶା ଭିତରୁ ମରାଯାଉଥିବା ଲୁଣରୁ ପ୍ରାୟ ୩ଲକ୍ଷ ଟଙ୍କାର ରାଜସ୍ୱ ମିଳୁଥିଲା । ବର୍ତ୍ତମାନ ରପ୍ତାନୀଜାତ ଦ୍ରବ୍ୟମାନଙ୍କ ମଧ୍ୟରେ ଚାଉଳ, କାଠ, ଲାଖ, ଓ୍ୱାକ୍ସ, ମହୁ, ଚମଡା, ଶିଂଘ, ତେଲ ପ୍ରଭୃତି ପ୍ରଧାନ ଦ୍ରବ୍ୟ । ରାଜ୍ୟରେ ଲୋକମାନଙ୍କର ମୁଖ୍ୟ ଖାଦ୍ୟ ହେଲା ଭାତ । ଓଡ଼ିଶାରୁ ହାରାହାରି ୯,୩୭,୫୨୫ ମହଣ ଚାଉଳ ବାହାରକୁ ଯାଇଥାଏ (ଫାମିନ କମିଶନ ରିପୋର୍ଟ) । ଏଠାରେ ଦି' ପ୍ରକାର ଧାନ ଚାଷ ଦେଖାଯାଇଥାଏ । କମ୍ ଦିନରେ ଉପର ଅଞ୍ଚଳରେ 'ବିଆଳୀ' ଏବଂ ବେଶୀ ଦିନିଆ, ଖାଲୁଆ ଅଞ୍ଚଳରେ 'ଶାରଦ' ଧାନ ଚାଷ କରାଯାଏ । ବଙ୍ଗଳାର ଅହୁନ ଓ ଆଓସ (AHUN AND AOOS) ଧାନ ଏହି ଦୁଇ ପ୍ରକାର ଧାନ ସଂଗେ ସମାନ । ଏହି ଦୁଇ ପ୍ରକାର ଧାନ ଏକା ସମୟରେ - ମେ, ଜୁନ୍ ମାସରେ ବୁଣାଯାଇଥାଏ । ଅଗଷ୍ଟ, ସେପ୍ଟେମ୍ବର ମାସରେ ବିଆଳୀ ଧାନ ଅମଳ ହେଲାବେଳେ ନଭେମ୍ବର-ଡିସେମ୍ବର ମାସକୁ ଶାରଦ ଧାନ କଟାଯାଏ । ଶାରଦ ଧାନ ଚାଉଳ ମୁଖ୍ୟତଃ ଲୋକମାନେ ଖାଇଥାନ୍ତି । ଅରୁଆ ଚାଉଳ ଅନ୍ୟ ଚାଉଳଠାରୁ ପୁଷ୍ଟିକର ବୋଲି କହନ୍ତି । ଏହାର ଦାମ୍ ଅନ୍ୟ ଚାଉଳ ଅପେକ୍ଷା ଟିକିଏ ବେଶୀ । ସାଧାରଣରେ ଯାନିଯାତ୍ରା, ଉତ୍ସବ ସମୟରେ ଏହି ଚାଉଳ ବ୍ୟବହାର କରାଯାଇଥାଏ । ଚତୁର୍ଥ ପ୍ରକାର ଧାନ 'ଡାଲୁଅ' ଧାନ, ପାଣି ରହୁଥିବା ଖାଲୁଆ ବିଲମାନଙ୍କରେ ଶୀତଦିନେ ଆରମ୍ଭ ହୋଇ ଏପ୍ରିଲ ମାସ ବେଳକୁ କଟାଯାଇଥାଏ । ଏହି ଧାନ ଶାରଦ, ବିଆଳୀ ଧାନଠାରୁ ନିମ୍ନମାନର । ୧୮୬୫ ମସିହା ଡିସେମ୍ବର ମାସରେ ସ୍ୱଚ୍ଛ ଧାନ ଅମଳ ହେବାର ମୁଖ୍ୟ କାରଣ ହେଲା, ପୂର୍ବମାସ ମାନଙ୍କରେ ପ୍ରାୟ ବର୍ଷା ନଥିଲା, ଯେଉଁଥି ପାଇଁ ଦୁର୍ଭିକ୍ଷ ପଡିଲା । ଯେଉଁଠି ଲୋକମାନେ ଗୋଟିଏ ମୁଖ୍ୟ ଖାଦ୍ୟ ଉପରେ ନିର୍ଭର କରନ୍ତି, ସେଠି ଏହି ପ୍ରକାର ବିପଦ ସମ୍ଭାବନା ଅଧିକ । ଯେତେବେଳେ ମୁଖ୍ୟ ଫସଲ ଫେଲ୍ ମାରେ, ସେତେବେଳେ ସବୁକିଛି ଫେଲ୍ ମାରିଯାଏ ।

ଓଡ଼ିଶାରେ ଧାନର ପର୍ଯ୍ୟାପ୍ତ ଉତ୍ପନ୍ନ ସଂପର୍କରେ ସ୍ଟୁନ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି, 'ଅଗଷ୍ଟରୁ ନଭେମ୍ବର ମାସ ମଧ୍ୟରେ ଜଣେ ବ୍ୟକ୍ତି ଏହି ରାଜ୍ୟ ଦେଇ ଗଲାବେଳେ ଦେଖିବ, କୋଶ କୋଶ ଧରି ଯେପରି ଗୋଟିଏ ଧାନ କ୍ଷେତ କିଏ ସୃଷ୍ଟି କରିଛି । ଦିନ

ପରେ ଦିନ ସେ ଚାଲିଥିଲେ ମଧ୍ୟ କେବଳ ସୀମାହୀନ ଧାନ କ୍ଷେତ ହିଁ ତାର ଦୃଷ୍ଟିଗୋଚର ହେଉଥିବ ।' ସୌନ୍ଦର୍ଯ୍ୟମୟ ଚିତ୍ରପଟର ଇଏ ଗୋଟିଏ ପାଖ । ମାତ୍ର ବନ୍ୟା, ଦୁର୍ଭିକ୍ଷ ଦ୍ୱାରା ଯେତେବେଳେ ଧାନ ଫସଲ ନଷ୍ଟ ହୋଇ କୋଶ କୋଶ ଧରି କ୍ଷେତମାନ ପଡିଆ ପଡେ, ସେ ଦୃଶ୍ୟ ଅତ୍ୟନ୍ତ କଷ୍ଟକର । ଦୁର୍ଭିକ୍ଷ ଓ ବନ୍ୟାରେ କ୍ଷତିଗ୍ରସ୍ତ ହୋଇ ଲୋକମାନେ ଦାରିଦ୍ର୍ୟର କଷାଘାତରେ ଭାଙ୍ଗି ପଡନ୍ତି । ଏପରି ଅବସ୍ଥା ହେବା ଆଦୌ ଉଚିତ୍ ନୁହଁ । ମୋ ପାଖରେ ପହଞ୍ଚିଥିବା ଖବର ଅନୁସାରେ ବର୍ତ୍ତମାନ ମଧ୍ୟ ଓଡ଼ିଶାରେ ଚାଉଳ ଦର ଅଧିକା ଅଛି । ଦୁର୍ଭିକ୍ଷ ପ୍ରପୀଡିତ ଲୋକମାନଙ୍କର ଦୂରାବସ୍ଥା ମୋ ମାନସ ପଟରେ ନାଚି ଉଠୁଛି । ଯଦି ଆର ମାସକୁ (ଜୁଲାଇ) ଭଲ ବର୍ଷା ନହୁଏ, ତେବେ ଏବର୍ଷ ମଧ୍ୟ ଧାନ ଫସଲ ନଷ୍ଟ ହୋଇଯିବ । ପୁଣି ପେଟକୁ ଗଣ୍ଡେ ଦାନା ନପାଇ ଶହ ଶହ କାହିଁକି ହଜାର ହଜାର ଲୋକ ଦାଣ୍ଡର ଭିକାରୀ ହେବେ । ସେମାନଙ୍କର ଦୁଃଖ, ଦାରିଦ୍ର୍ୟ ଅବସ୍ଥାକୁ ବର୍ଣ୍ଣନା କରିବା ପାଇଁ ଭାଷା ନଥିବ । ମୋ ମନ ମଧ୍ୟରେ ଏପରି ଏକ କରାଳ ଚିତ୍ରର ଧାରଣା ସୃଷ୍ଟି କରିବା ମୋର ଉଦ୍ଦେଶ୍ୟ ନୁହଁ, କିନ୍ତୁ ପ୍ରକୃତରେ ଯଦି ଏପରି ଏକ ଅବସ୍ଥା ସୃଷ୍ଟି ହୁଏ, ତେବେ ଲୋକମାନଙ୍କୁ ଉପଯୁକ୍ତ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ସମ୍ଭବ ଦିଶୁନି ।

## ଓଡ଼ିଶାରେ ଦୁର୍ଭିକ୍ଷର ପୂର୍ବ ଇତିହାସ

ଚତୁର୍ଦ୍ଦଶ ଶତାବ୍ଦୀରେ ରାଜା କପିଳେନ୍ଦ୍ର ଦେବ ଯେତେବେଳେ ରାଜତ୍ୱ କରୁଥିଲେ ତାଙ୍କ ରାଜତ୍ୱ କାଳରେ ଓଡ଼ିଶାରେ ପ୍ରଥମ ବଡ଼ ଦୁର୍ଭିକ୍ଷ ପଡିଥିବା କଥା ମୁଁ ପଢ଼ିବାକୁ ପାଇଛି । ସେତେବେଳେ ଚାଉଳ ୬୦ଗୁଣ ଅଧିକା ଦରରେ ବିକ୍ରି ହେଲା (ସାଧାରଣରେ ଚାଉଳ ଦର ଯାହା ଥିଲା, ତାର ୬୦ଗୁଣ) । ପଞ୍ଚଦଶ ଓ ଷୋଡ଼ଶ ଖ୍ରୀଷ୍ଟାବ୍ଦରେ ମଧ୍ୟ ବଡ ଧରଣର ଦୁର୍ଭିକ୍ଷ ପଡିଛି । ତା'ପରେ ୧୭୭୦, ୧୭୭୪-୭୫, ୧୭୯୨-୯୩ ମସିହାରେ ଏହି ରାଜ୍ୟରେ ବଡ ଧରଣର ଦୁର୍ଭିକ୍ଷ ପଡିଥିଲା । ଚଳିତ ଶତାବ୍ଦୀରେ ୧୮୩୧-୩୨ ମସିହାରେ ଦୁର୍ଭିକ୍ଷ ପଡିଥିଲା । ମାତ୍ର ୧୮୬୫-୬୬ ମସିହା ଦୁର୍ଭିକ୍ଷ ଅତ୍ୟନ୍ତ ଭୟଙ୍କର ରୂପ ଧାରଣ କରି ଓଡ଼ିଆମାନଙ୍କର ମେରୁଦଣ୍ଡକୁ ଭାଙ୍ଗି ଦେଇଥିଲା । ୧୭୭୦ ମସିହାର ଦୁର୍ଭିକ୍ଷ ଓ ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା ସଂପର୍କରେ ବିଶଦ ଭାବେ ଆନାଲସ୍ ଅଫ୍ ରୁରାଲ ବେଙ୍ଗଲର ଲେଖକ ଉଲ୍ଲେଖ କରିଛନ୍ତି । ତାଙ୍କରି ଉଦ୍ଧୃତ କ୍ଷୁଦ୍ର ଅଂଶ ଭାରତରେ ଦୁର୍ଭିକ୍ଷର ଭୟାବହତା ସଂପର୍କରେ ସୂଚାଇ ଦିଏ ।

୧୭୭୦ ମସିହା କଠିନ ଗ୍ରୀଷ୍ମ ଋତୁରେ ପ୍ରତ୍ୟେକ ଦିନ ଲୋକ ମୃତ୍ୟୁବରଣ କରୁଥାନ୍ତି । ଚାଷୀମାନେ ସେମାନଙ୍କର ଗୋରୁ, ଗାଈ, ଚାଷୋପକରଣ, ବିହନ ସବୁକିଛି ବିକ୍ରି କରିସାରିବା ପରେ ସେମାନଙ୍କର ପୁଅ, ଝିଅମାନଙ୍କୁ ବିକ୍ରି କରିଥିଲେ । ଏପରି

ସମୟ ଆସିଲା ଯେ, ପୁଅ, ଝିଅମାନଙ୍କୁ କିଣିବାକୁ ଲୋକ ମିଳିଲେନି । ସେମାନେ ଗଛର ପତ୍ର, ଶାଗ, ଘାସ ଖାଇବା ଆରମ୍ଭ କଲେ । ୧୭୭୦ ମସିହା ଜୁନ୍ ମାସ ବେଳକୁ ଦରବାରକୁ ଖବର ଆସିଲା ଯେ, ବଞ୍ଚିଥିବା ଲୋକମାନେ ମଲା ମଣିଷର ମାଂସ ଖାଇବା ଆରମ୍ଭ କରିଛନ୍ତି । ଦିନରାତି କଙ୍କାଳ ସାର ବୁଭୁକ୍ଷୁ ଜନତା ହଜାର ହଜାର ସଂଖ୍ୟାରେ ରାଜଧାନୀ ସହର ମଧ୍ୟକୁ ପ୍ରବେଶ କରୁଥାନ୍ତି । ମଲା ଲୋକମାନଙ୍କ କଙ୍କାଳରେ ରାସ୍ତାଘାଟ ବନ୍ଦ ହୋଇଗଲା । ଅବସ୍ଥା ଏପରି ହେଲା ଯେ, କୁଆ, କୁକୁର, ବିଲୁଆ, ଶାଗୁଣାମାନେ ମଧ୍ୟ ମଲା ଲୋକକୁ ଖାଇବାକୁ ଆସିଲେନି । ମଲା ଲୋକଙ୍କ ଶବ, କଙ୍କାଳ, ଚତୁର୍ଦ୍ଦିଗରେ ବିଛାଇ ହୋଇ ପଡିବାରେ ବଞ୍ଚି ରହିଥିବା ଲୋକମାନଙ୍କର ଜୀବନ ଧାରଣ କଷ୍ଟକର ହେଲା । ଲୋକମାନେ ନୂଆ ଫସଲ ଅମଳ ହେବା ପର୍ଯ୍ୟନ୍ତ ବଞ୍ଚି ରହିବାକୁ ଚେଷ୍ଟାକରି ମଧ୍ୟ ବଞ୍ଚି ପାରିଲେ ନାହିଁ । କ୍ଷେତରେ ଠିଆ ହୋଇଥିବା ଫସଲକୁ ଚାହିଁ ଚାହିଁ ହଜାର ହଜାର ଲୋକ ଟଳି ପଡିଲେ । ଶେଷରେ ଏତିକି କୁହାଯାଇପାରେ ଯେ, ବିଗତ ବର୍ଷର ଗୋଟିଏ ଫସଲ ନଷ୍ଟ ହୋଇଯିବା ଯୋଗୁଁ ୯ ମାସ ମଧ୍ୟରେ ୧୦ଲକ୍ଷରୁ ଅଧିକ ଲୋକ ମୃତ୍ୟୁବରଣ କଲେ ।

୧୮୬୬ ମସିହାରେ ପଡିଥିବା ଦୁର୍ଭିକ୍ଷର ବିଭୀଷିକା, ହଣ୍ଟର ବର୍ଣ୍ଣନା କରିଥିବା ସେ ସମୟର ଦୁର୍ଭିକ୍ଷ ସଂଗେ ପ୍ରାୟ ସମାନ ବୋଲି କୁହାଯାଇପାରେ । ଦୁର୍ଭିକ୍ଷ କମିଶନରଙ୍କ ରିପୋର୍ଟ ଅନୁସାରେ ଓଡ଼ିଶାର ଏକ ତୃତୀୟାଂଶ ଲୋକ ଏହି ଦୁର୍ଭିକ୍ଷ ଯୋଗୁଁ ଧରାପୃଷ୍ଠରୁ ବିଦାୟ ନେଲେ । କଟକର କମିଶନର ଲେଖିଥିଲେ- 'କଟକରେ ରହୁଥିବା ସରକାରୀ କର୍ମଚାରୀ, ସୈନ୍ୟ ଛାଉଣିରେ ଥିବା ସୈନ୍ୟମାନେ ମଧ୍ୟ ଖାଦ୍ୟାଭାବ ଯୋଗୁଁ ଉପାସରେ ଦିନ କଟାଇବାକୁ ବାଧ୍ୟ ହୋଇଥିଲେ । ଦୁର୍ଭିକ୍ଷର ପ୍ରକୋପ ଏତେ ଭୀଷଣ ହୋଇଥିଲା ଯେ, ସମୁଦ୍ର ସମାନ ଦୁଃଖ, ଦୁର୍ଦ୍ଦଶା ମଧ୍ୟରେ ସ୍ଥାନୀୟ ଛୋଟ ଛୋଟ ଘଟଣାମାନ ତା'ରି ମଧ୍ୟରେ ବୁଡି ଯାଇଥିଲା ଏବଂ କାହା ନଜରକୁ ଆସୁନଥିଲା । ୧୮୬୬ ମସିହା ଦୁର୍ଭିକ୍ଷ ବେଳେ ଭଲ ଘରର ଝିଅ, ବୋହୂମାନେ ଇଜତ ଜଗି ପଦାକୁ ନବାହାରି ଖାଦ୍ୟାଭାବ ଯୋଗୁଁ ଘର ଭିତରେ ବିନା ପ୍ରତିବାଦରେ ମୃତ୍ୟୁବରଣ କରିଥିବା କଥା ହଣ୍ଟର ଉଲ୍ଲେଖ କରିଛନ୍ତି । ୧୮୬୮ ମସିହାର ଓଡ଼ିଶା ଏବଂ ୧୭୭୦ ମସିହା ଓଡ଼ିଶା ଭିତରେ ବିଶେଷ କିଛି ତଫାତ୍ ନାହିଁ । ଏଠି ଏପର୍ଯ୍ୟନ୍ତ ଜମିଜମାର ପରମାନେଣ୍ଟ ସେଟେଲମେଣ୍ଟ ହୋଇନି କି ଜମିମାନଙ୍କରେ ଜଳସେଚନ ବ୍ୟବସ୍ଥା ନାହିଁ । ବେଙ୍ଗଲର ଏହି ନିମ୍ନ ଭାଗ ଅଞ୍ଚଳରେ ୧୭୭୦ ମସିହାର ଦୁର୍ଭିକ୍ଷ ଦୃଶ୍ୟ ୧୮୬୬ ମସିହାରେ ଦେଖାଯାଇଥିଲା ।'

୧୮୬୬ ମସିହାର ହଜାର ହଜାର ଓଡ଼ିଆଙ୍କର ଶଙ୍କାଭିଭୂତ ଅବସ୍ଥା ସଂପର୍କରେ ବାବୁ ଉଦୟଚାନ୍ଦ ଦତ୍ତ ତାଙ୍କ 'ରିପୋର୍ଟ ଅନ୍ ଦି ଫାମିନ୍ ପୁରୀ', ଯାହା ଇଣ୍ଡିୟାନ ଅନାଲ୍ସ ଅଫ୍ ମେଡିସିନ୍‌ରେ ପ୍ରକାଶ ପାଇଥିଲା ସେଥିରୁ ଏକ ଉଦ୍ଧୃତାଂଶ ନିମ୍ନରେ ଦିଆଗଲା-

"ହତଭାଗ୍ୟ ଲୋକମାନେ ମାସେ, ଦୁଇମାସ କାଳ ଚେର, ମୂଳ, ପତ୍ର, ଘାସ ଖାଇ କଙ୍କାଳସାର ଅବସ୍ଥାରେ ପହଞ୍ଚିଥିଲେ । ସେମାନଙ୍କ ଦେହର ହାଡ ସବୁ ଗଣି ହୋଇଯାଉଥିଲା । ଚମ କେବଳ ଏହି ହାଡମାନଙ୍କୁ ଢ଼ାଙ୍କୁଣି ଦେଇ ରଖିଥାଏ । ଲୋକମାନଙ୍କର ରୂପ ସଂକୁଚିତ ହୋଇଗଲା ବେଳେ ସେମାନଙ୍କ ଆଖି ପଶି ଯାଇଥାଏ । ଦେହର ମୋଟା ମୋଟି ଶିରା ପ୍ରଶିରାମାନ ଚର୍ମ ସଂଗେ ମିଶି ଯାଇଥାଏ । ସ୍ତ୍ରୀ ଲୋକମାନଙ୍କର ସ୍ତନ ଶୁଖି ଛାତି ସଂଗେ ମିଶି ଯାଇ ପୁରୁଷ ମହିଳାଙ୍କ ମଧ୍ୟରେ କିଛି ତଫାତ ଜଣାପଡୁ ନଥିଲା । ଲୋକମାନଙ୍କର ତଳିପେଟ ଭିତରକୁ ପଶି ଯାଇ ମେରୁଦଣ୍ଡ ସଂଗେ ମିଶିଗଲା ପରି ଦିଶୁଥାଏ । ଏପରି ବୁଭୁକ୍ଷୁ କଙ୍କାଳମାନଙ୍କୁ ଗୋଟିଏ ଶବ୍ଦରେ 'ଭ୍ରମଣଶୀଳ ନରକଙ୍କାଳ' କହିଲେ ଯଥେଷ୍ଟ ହେବ । ଏମାନଙ୍କ ଦେହରୁ ଏକ ପ୍ରକାର ଆଇଁସିଆ ଦୁର୍ଗନ୍ଧ ବାହାରୁଥିଲା । ସେମାନେ ସମସ୍ତେ ଧୁଡୁଧୁଡିଆ, ଚମଡାସାର, ଦୁର୍ବଳ, ଜରାଜୀର୍ଣ୍ଣ ଶରୀର ଧରି ବୁଲୁଥାନ୍ତି । ଏହି ସମୟରେ ସେମାନଙ୍କ ଭିତରେ ଅତ୍ୟନ୍ତ ଅମାନବିକତା, ବିକୃତ ମନୋଭାବ, ନୈତିକ ଅଧୋଗତି ବିଶେଷ ଭାବେ ପରିଲକ୍ଷିତ ହେଉଥିଲା । ସେମାନଙ୍କ ନିକଟରେ ମୃତ୍ୟୁ ସଂଗେ ଲଢ଼େଇ କରୁଥିବା ଲୋକମାନଙ୍କ ପ୍ରତି ତାଙ୍କର ନଜର ମଧ୍ୟ ନଥିଲା । ସେମାନେ ଶାଳୀନତା, ପରିଚ୍ଛନ୍ନତାକୁ ସଂପୂର୍ଣ୍ଣ ଭାବେ ଭୁଲିଯାଇ ମରି ଶୋଇଥିବା ଲୋକଙ୍କ ପାଖରେ ଅପରିଷ୍କାର ସ୍ଥାନରେ ଶୋଇ ଯାଉଥିଲେ । ବହୁ ସମୟରେ ଏକାଧିକ କାଙ୍ଗାଳ ଏକାଠି ବସି ଖାଇବା, ସେମାନଙ୍କ ଭିତରୁ ସେଇଠି ଆଉଜଣେ ଝାଡା, ପରିସ୍ରା କରିବା - ସେଥିପ୍ରତି କେହି ନଜର ନଦେବା, ପ୍ରତିବାଦ ନକରିବା ଦେଖାଯାଉଥିଲା । ଦୁର୍ବଳ ଲୋକଙ୍କ ପାଖରୁ ସବଳ ଥିବା ଲୋକ ଖାଦ୍ୟ ଛଡେଇ ନେବା, ମହିଳା, ଶିଶୁଙ୍କ ମୁହଁ ପାଖରୁ ଖାଇବା ଛଡାଇ ନେବା ଥିଲା ସାଧାରଣ ଦୃଶ୍ୟ । କେହି ଶିଶୁ ମହିଳାମାନଙ୍କ ପ୍ରତି ଟିକିଏ ହେଲେ ସମବେଦନା ଜ୍ଞାପନ କରୁନଥିଲେ ।'

## ଓଡ଼ିଆଙ୍କ ଚରିତ୍ର:

ଓଡ଼ିଆମାନେ ଅତ୍ୟନ୍ତ ସାଧାସିଧା ଲୋକ । ଅଳ୍ପରେ ସନ୍ତୁଷ୍ଟ ହେବା ସେମାନଙ୍କ ଚରିତ୍ର । ବାପ, ଅଜା ଯେଉଁ କାମଧନ୍ଦା କରୁଥିଲେ, ପୁଅ, ନାତି, ଅଣନାତିମାନେ ସେହି ଧନ୍ଦା, ସେଇ କାମ କରନ୍ତି । ସେହି ବିଶେଶ୍ୱରବାଦରେ ସେମାନଙ୍କର ବିଶ୍ୱାସ, ସେହି ଜାତିର ନିୟମ ତାଙ୍କ ପାଇଁ ଗ୍ରହଣୀୟ । ଏକା ତୀର୍ଥସ୍ଥଳୀ, ସେହି ବାପ ଅଜା ଅମଳର ମନ୍ଦିରକୁ ସେମାନେ ରକ୍ଷଣାବେକ୍ଷଣ କରନ୍ତି, ସେଇଠି ପୂଜା କରନ୍ତି, ପୁରୁଷ ପୁରୁଷ ଧରି ସେମାନଙ୍କର ଗୁରୁ-ପୁରୋହିତ ଏକାବଂଶର, ସେହି ଗୋଟିଏ ଦେବତା (ଇଷ୍ଟ ଦେବ) ତାଙ୍କର ପୂଜ୍ୟ, ସତେ ଯେପରି ଏତେବଡ ବିଶ୍ୱରେ ସେମାନେ ଆଉ କିଛି ଅଧିକା ପାଇବାର ଆଶା କରନ୍ତିନି । ସେମାନେ ଏତେ ଅନ୍ଧବିଶ୍ୱାସୀ ଏବଂ ସେମାନଙ୍କର ମୂର୍ତ୍ତି ପୂଜା ପାଇଁ ଏତେ ଅନ୍ଧବିଶ୍ୱାସ ଯେ, ଥରେ ଗୋଟିଏ ଇଂରେଜ ଜାହାଜ ପୁରୀ ସମୁଦ୍ର କୂଳରେ

ଭାଙ୍ଗିଗଲା ପରେ ସେଥିରୁ ମଣିଷ ମୁଣ୍ଡ ସଦୃଶ ଗୋଟିଏ ଜିନିଷ ଭାସି ଆସି କୂଳରେ ଲାଗିଥିଲା । ପରେ ମୁଁ ଶୁଣିଛି, ତାକୁ ଲୋକମାନେ 'ସାଗର କନ୍ୟା' ଭାବେ ପୂଜା କରୁଥିଲେ । ଆଉଥରେ ମୁଁ ଶୁଣିଛି 'ଇଂରେଜମାନଙ୍କର ଗୋଟିଏ ଖେଳନା 'ବିରାଡ଼ି'କୁ ସେମାନେ ଘରେ ରଖି ପୂଜା ଅର୍ଚ୍ଚନା କରୁଥିଲେ । ଯାହା ବୁଝାଗଲା, ଜଗନ୍ନାଥ ଦର୍ଶନ ପାଇଁ ଦେଶର ସବୁଆଡୁ ଆସୁଥିବା ତୀର୍ଥଯାତ୍ରୀ ଏବଂ ଯାତ୍ରୀମାନଙ୍କୁ ଆଣିବା ପାଇଁ ଯାଉଥିବା ଧୂଳିଆ ପଣ୍ଡାମାନଙ୍କ ପାଖରୁ ଏମାନେ ଶ୍ରୀକୃଷ୍ଣଙ୍କ ବିଷୟରେ ବିଭିନ୍ନ ଗପମାନ ଶୁଣି ଶୁଣି ଏମାନଙ୍କ ମନ ଭିତରେ ଏପରି ଏକ ଅନୈତିକ ଚିନ୍ତାଧାରା ବସାବାନ୍ଧି ଯାଇଛି । ମୁଁ କିନ୍ତୁ ଏ ପ୍ରକାର ଚିନ୍ତାଧାରାରେ ବିଶ୍ୱାସ କରେନି କି ଯେଉଁମାନେ ଓଡ଼ିଆମାନଙ୍କ ଭକ୍ତି ବିଶ୍ୱାସ ସଂପର୍କରେ ଏପରି ମତପୋଷଣ କରନ୍ତି, ମୁଁ ତାଙ୍କ ସଂଗେ ଏକମତ ନୁହଁ । ଯେଉଁମାନେ ଭାବନ୍ତି ଓଡ଼ିଆମାନଙ୍କର ସ୍ୱାଭିମାନ ନାହିଁ, ଆତ୍ମ ମର୍ଯ୍ୟାଦା ନାହିଁ, ଏକଥା ଆଦୌ ସତ ନୁହଁ । ହୋଇପାରେ, ସ୍ଥଳ ବିଶେଷରେ ସେମାନେ କାମୋଦ୍ଦୀପକ, ଅଶାଳୀନ ଚରିତ୍ର ଅବତାରଣା କରିଛନ୍ତି କିନ୍ତୁ ଏକଥା ମନେ ରଖିବା ଉଚିତ୍ ଯେ, ଅତି ପ୍ରାଚୀନ ଗଭୀର ଧାର୍ମିକ ସାଂକେତିକ ଚିନ୍ତାଧାରାକୁ ପୁରାତନ, ପୌରାଣିକ ସୂଚୀପତ୍ର ଭାବେ ଦେଖିବା ଉଚିତ୍ । ଆଜିକାଲିର ଆବିଳତାପୂର୍ଣ୍ଣ ପ୍ରେମ, ବିକୃତ ମାନସର ଚିନ୍ତାଧାରା ଭାବେ ଦେଖିବା ଉଚିତ୍ ନୁହଁ ।'

ଷ୍ଟର୍ଲିଂଙ୍କ ମତରେ ଓଡ଼ିଶାକୁ ସମଗ୍ର ଭାରତ ବର୍ଷର ବୋଇଓଟିଆ (Boeotia) ଭାବେ ନାମିତ କରାଯାଇପାରେ । ମୁଁ କିନ୍ତୁ ଏପରି ପରନିନ୍ଦାକୁ ଗ୍ରହଣ କରିପାରୁନି । ଅବଶ୍ୟ ଏଇ ପରିପ୍ରେକ୍ଷୀରେ ମୋ' ମତଠାରୁ ଷ୍ଟର୍ଲିଂଙ୍କ ମତ ଅଧିକ ଗୁରୁତ୍ୱପୂର୍ଣ୍ଣ ଅଧିକ ଆକ୍ଷରିକ ହୋଇପାରେ ତଥାପି ମୋର ନିଷ୍ପତ୍ତିରେ ମୁଁ ଭାବୁଛି, ଓଡ଼ିଆମାନେ ଅନାଗ୍ରହୀ, ମାନ୍ଦା ହୋଇପାରନ୍ତି ମାତ୍ର ଏତେ ବୋକା ନୁହଁନ୍ତି । ଜଣେ ଓଡ଼ିଆଙ୍କୁ ଦେଖିଲେ ମୋର ମନେହୁଏ, ନିଜ ଦେଶରେ ଜଣେ ଆରିସ୍ ଲୋକଙ୍କୁ ଦେଖିଲା ଭଳି - ଯାହାଙ୍କୁ ନିମ୍ନୋକ୍ତ ଭାବେ ଚିତ୍ରଣ କରାଯାଇଛି "ଜଣାପଡେ, ସବୁବେଳେ ସେ ଯେପରି କାମ କରିବାରେ ବ୍ୟସ୍ତ ରୁହନ୍ତି' କିମ୍ବା କାମ ଆଡେ ଚାହିଁ ବସିଥାନ୍ତି କିମ୍ବା କାମରୁ ବିଶ୍ରାମ ନେଉଛନ୍ତି, କହିବାକୁ ଗଲେ କିଛି କରୁନଥାନ୍ତି ବରଂ ସାଙ୍ଗସାଥୀ ବନ୍ଧୁମାନଙ୍କର ସହାୟତାରେ ସମୟ ବିତାଉଥାନ୍ତି ।" ସ୍ଟୁଟନ ବିଶ୍ୱାସ କରନ୍ତି, ଓଡ଼ିଶାରେ ଓଡ଼ିଆମାନେ ଏକନିଷ୍ଠ ଦାମ୍ପତ୍ୟ ଜୀବନ ଉପରେ ସଂପୂର୍ଣ୍ଣ ବିଶ୍ୱାସ କରନ୍ତି, ସେମାନେ ଚରିତ୍ରବାନ, ସୁଖମୟ ପାରିବାରିକ ଜୀବନ ଉପଭୋଗ ପାଇଁ ସେମାନଙ୍କ ପାଖେ ସବୁ ପ୍ରକାର ସଦ୍‌ଗୁଣ ଥିବାର ଦେଖାଯାଏ । ସେ ବିଶ୍ୱାସ କରନ୍ତି, ପ୍ରତିକୂଳ ପରିସ୍ଥିତିରେ ସେମାନେ ଭାରି ସ୍ନେହୀ ଲୋକ । ସେମାନଙ୍କ ମାନସିକ ଚିନ୍ତାଧାରା ନିଶ୍ଚିତ ଭାବେ ଉନ୍ନତମାନର । ତାଙ୍କ ଦେଶରେ ଗୋଟିଏ କଥା ଅଛି, ଯାହାକି ଓଡ଼ିଆଙ୍କ ଜାତୀୟ ଚରିତ୍ରର ଏକ ଦୃଷ୍ଟାନ୍ତ- ସେଇଟି ହେଲା 'ମୁଁ ଏହି କାମ

କରିବାକୁ ଇଚ୍ଛା କରୁଛି, ମୁଁ ଏହାକୁ ନିଶ୍ଚୟ କରିବି- ନିଶ୍ଚୟ କରିବି- ମୁଁ ବର୍ତ୍ତମାନ କରିବାକୁ ଯାଉଛି, ମୁଁ ପ୍ରାୟ ସବୁ କରିବାକୁ ଯାଇ କିଛି କରିପାରିନି - ମୁଁ କରିପାରିନି।'

ଓଡ଼ିଆ ଲୋକମାନଙ୍କର ମୁଖ୍ୟ ଖାଦ୍ୟ ହେଲା - ଭାତ, ଭାତ ସାଙ୍ଗରେ ବିଭିନ୍ନ ପ୍ରକାର ଡାଲି, ପରିବା ତରକାରୀ, ଶାଗ, ମସଲା ମସଲି ଦିଆ ତରକାରୀ, ତେଲ ଓ ଫଳ। ବହୁତ ଲୋକ ମାଛ, କେତେକ ନିର୍ଦ୍ଦିଷ୍ଟ ଜନ୍ତୁର ମାଂସ ମଧ୍ୟ ଖାଇଥାନ୍ତି ।

କୁଟାହୋଇ ଚାଉଳ ହେବା ପୂର୍ବରୁ ତାକୁ ଧାନ ବୋଲି ଏମାନେ କୁହନ୍ତି । ପାଣିରେ ଚାଉଳ ପକାଇ ଫୁଟାଇଲା ପରେ ସେ ଭାତ ହୋଇଥାଏ । ଓଡ଼ିଆମାନେ ଭାତରେ ପାଣି ପୁରାଇ ଗୋଟିଏ ଦିନ ରଖି ଖାଇବାକୁ ଭଲ ପାଆନ୍ତି । ଓଡ଼ିଆମାନେ ଏହି ପାଣିପଶା ଭାତକୁ 'ପଖାଳ' କହିଲା ବେଳେ ବଙ୍ଗାଳୀମାନେ ସେ ପ୍ରକାର ଭାତାକୁ 'ପାଣ୍ଟୋ ଭାତ' ବୋଲି କହିଥାନ୍ତି । ଏମାନେ ସକାଳୁ ସକାଳୁ ପଖାଳ ସଂଗେ କିଛି ତରକାରୀ କିମ୍ବା ଶୁଖୁଆ ପୋଡା ଲଗାଇ ଖାଆନ୍ତି । (ମୂଲିଆ ଶ୍ରେଣୀ ଓଡ଼ିଆ ଲୋକଙ୍କ ଖାଦ୍ୟ ସଂପର୍କରେ ଡକ୍ଟର ଏ.ଏ. ମଣ୍ଡେଲ ଦେଇଥିବା ରିପୋର୍ଟରୁ ସଂଗୃହୀତ) ସାଧାରଣ ଡାଲି ଜାତୀୟ ଖାଦ୍ୟ ମଧ୍ୟରେ ମୁଗ, ହରଡ, କୋଳଥ, ଖେସାରୀ ଏମାନଙ୍କର ପ୍ରଧାନ ଡାଲି । ପନିପରିବା ଭିତରେ ଏମାନେ ବାଇଗଣ, କଖାରୁ, ସାରୁ, ମାଟିଆଳୁ, ପାଣି କଖାରୁ, କାକୁଡି ପ୍ରଭୃତିକୁ ଖାଦ୍ୟ ରୂପେ ବ୍ୟବହାର କରନ୍ତି । ମେଥି, ବଥୁଆ, ପାଳଙ୍ଗ ପ୍ରଭୃତି ଶାଗ ପ୍ରଚୁର ପରିମାଣର ଉତ୍ପନ୍ନ ହୁଏ । ମସଲା ମସଲି ଭିତରେ ହଳଦୀ, ଅଦା, ଗୋଲମରିଚ, ଲବଙ୍ଗ, ଜାଇଫଳ, ଲାଲ ଲଙ୍କା ଖାଦ୍ୟ ପ୍ରସ୍ତୁତ କରିବାରେ ଏମାନେ ବ୍ୟବହାର କରନ୍ତି । ଏସବୁକୁ ଓଡ଼ିଶାରେ 'ମସଲା' ବୋଲି କୁହନ୍ତି । ଓଡ଼ିଆମାନେ ଘିଅ ବିଶେଷ ଭାବେ ବ୍ୟବହାର କରନ୍ତିନି । ସୋରିଷ, ରାଶି, ନଡିଆ ତେଲ ସାଧାରଣରେ ରୋଷେଇରେ ବ୍ୟବହାର କରନ୍ତି । ଜଡା ତେଲ ମଧ୍ୟ ଖାଦ୍ୟ ପ୍ରସ୍ତୁତିରେ ବ୍ୟବହାର କରାଯାଏ। ଓଡ଼ିଆମାନେ ଦେହରେ ତେଲ ଲଗାନ୍ତି। ଛୋଟ ଛୋଟ ପିଲାମାନଙ୍କ ଦେହରେ ତେଲ ହଳଦୀ ଲଗାଯାଏ । ଫଳ ଭିତରେ ଆମ୍ବ, କଦଳୀ, ନଡିଆ, ପଣସ, ବେଲ, ତରଭୁଜ, ସପୁରୀ, ଡାଳିମ୍ବ, ପିଜୁଳି, ଆତ ପ୍ରଧାନ ଫଳ । ଲୋକମାନେ କ୍ଷୀର, ମହୁ, ଦହି, ଗୁଡ, ତାଳଗୁଡ, ଲୁଣ ମଧ୍ୟ ଖାଦ୍ୟ ଭାବେ ବ୍ୟବହାର କରନ୍ତି ।

କୁରୁକୁଚ୍ (Kurkutch) ବା ଲୁଣ ଓଡ଼ିଆମାନେ ସମୁଦ୍ର ପାଣିରୁ ମାରିଥାନ୍ତି । ଡକ୍ଟର ଡୁରାଣ୍ଡଙ୍କ ପରୀକ୍ଷା ଅନୁସାରେ ଏହି ଲୁଣର ୯୦ ଭାଗ ସୋଡିୟମ କ୍ଲୋରାଇଡ୍ (Contain 90 percent of cloride of sodium) ୩ ପ୍ରତିଶତ ସଲଫେଟ୍ ମୁଖ୍ୟତଃ ସୋଡ଼ା, ୭ ପ୍ରତିଶତ ଅନ୍ୟ ମଇଳା ଜିନିଷ ମିଶିଥାଏ । ଡକ୍ଟର ଡୁରାଣ୍ଡ ଶ୍ରମିକ ଶ୍ରେଣୀର ଓଡ଼ିଆମାନେ ପ୍ରତ୍ୟେକ ଦିନ ଖାଦ୍ୟରେ ବ୍ୟବହାର କରୁଥିବା ଖାଦ୍ୟ ପଦାର୍ଥର ଏକ ବିବରଣୀ ଦେଇଛନ୍ତି । ପ୍ରତ୍ୟେକ ଦିନ ଜଣେ ଓଡ଼ିଆ ଶ୍ରମିକ ଶ୍ରେଣୀର ଲୋକ ଦିନକୁ ୩ରୁ

୪ଥର ତିନିରୁ ଚାରି ଛଟାଙ୍କି କିମ୍ବା ଦିନରେ ୧୨ରୁ ୧୬ ଛଟାଙ୍କି ଚାଉଳର ଭାତ ଖାଇଥାନ୍ତି । ଜଣେ ଜଣେ ଲୋକ ଦିନରେ ପ୍ରାୟ ୨ ସେର ଚାଉଳର ଭାତ ମଧ ଖାଇଥାନ୍ତି । ଦିନରେ ଛଟାଙ୍କିଏ କିମ୍ବା ୨ ଛଟାଙ୍କି ପରିବା ଖାଇବା ଖୁବ୍ କମ୍ ଦେଖାଯାଏ । ସପ୍ତାହକୁ ଥରେ କିମ୍ବା ୨ଥର ଛଟାଙ୍କି ୧ରୁ ୪ ଛଟାଙ୍କି ପର୍ଯ୍ୟନ୍ତ ମାଛ କିମ୍ବା ଡାଲି ଖାଆନ୍ତି । ସାଧାରଣରେ ଦିନକୁ ଥରେ ଜଳଖିଆ ଖାଇବା ଦେଖାଯାଏ । ଲୁଣ ଏମାନେ ପ୍ରାୟ ଅଧ ଛଟାଙ୍କିଏ ଦିନକୁ ବ୍ୟବହାର କରନ୍ତି । ଦହି, ଦୁଧ, ମିଠା ଏସବୁ ମିଳିଲେ କିମ୍ବା ଯାନିଯାତ୍ରା ସମୟରେ ଖାଇବା ଦେଖାଯାଏ ।

(ଓଜନ ମାତ୍ରା - କଂପାନୀ ସେରକ - ୨୨୧/୨ ଛଟାଙ୍କି - ୮୦ ତୋଳା ବା ୮୦ଟି କଂପାନୀ ଟଙ୍କାର ଓଜନ ସଂଗେ ସମାନ)

ଭାତ ଛଡା ଓଡ଼ିଆମାନେ ଏକ ପ୍ରକାର ଘାସ ଗଛର ମଞ୍ଜିକୁ ଜାଉକରି ଖାଆନ୍ତି (ମାଣ୍ଡିଆ ଜାଉ) । ମାଣ୍ଡିଆ ଟଙ୍କାକୁ ୬୪ ସେର । ଜଣେ ବୟସ୍କ ଲୋକ ଗୋଟିଏ ମିଲ୍‌ରେ ୮ରୁ ୧୦ ଛଟାଙ୍କି ପର୍ଯ୍ୟନ୍ତ ମାଣ୍ଡିଆ ଜାଉ ଖାଆନ୍ତି । ମାଣ୍ଡିଆ ଜାଉ ଖାଇଲା ବେଳେ ସେମାନେ ତା'ସହିତ ଲୁଣ, ଲଙ୍କା ବ୍ୟବହାର କରିଥାନ୍ତି । ମାଣ୍ଡିଆ ଜାଉ ସହଜରେ ହଜମ ହୁଏ ଏବଂ ପେଟକୁ ଥଣ୍ଡା ରଖେ ବୋଲି ଏମାନଙ୍କ ଧାରଣା । ଓଡ଼ିଶାରେ କେତେକ ଅଞ୍ଚଳରେ ଲୋକମାନେ ଯଅକୁ ଖାଦ୍ୟ ଭାବେ ବ୍ୟବହାର କରନ୍ତି । କହିବାକୁ ଗଲେ ଅଭାବ ସମୟରେ ବିଷାକ୍ତ ପଦାର୍ଥକୁ ଛାଡିଦେଲେ ଏମାନେ ସବୁ ପ୍ରକାର ଫଳ, ପନିପରିବା, ଶାଗ, କନ୍ଦମୂଳ ଖାଆନ୍ତି । ବାବୁ ଉଦୟଚାନ୍ଦ ଦତ୍ତ ତାଙ୍କ 'ପୁରୀ ଦୁର୍ଭିକ୍ଷ' ରିପୋର୍ଟ ଏପରି ସବୁ ଚେର, ମୂଳ, କନ୍ଦ, ପତ୍ରର ଗୋଟିଏ ଲମ୍ବା ତାଲିକା ଦେଇଛନ୍ତି । ବୋଧେ ଏସବୁ ମଧ୍ୟରେ ସୂଆଁ, ବାଲୁଙ୍ଗା ଧାନ ଟିକିଏ ପୁଷ୍ଟିକର, ଯାହାକୁ ମଧ ଲୋକମାନେ ସଂଗ୍ରହ କରିଥାନ୍ତି । କଦ୍ରୁ, (Kodoa or kodewa) କଇଁମୂଳ, କଇଁପତ୍ର, ଟଙ୍ଗି (Toongee)କୁ ମଧ ଏମାନେ ଦୁର୍ଭିକ୍ଷ ବେଳେ ଖାଦ୍ୟ ପାଇଁ ଖାଇଥିଲେ । କିଆ ଗଛରେ ହେଉଥିବା ଫଳ (କିଆ ପଣସ)କୁ କାଟି ସିଝାଇ ଖାଇବା ଦେଖାଯାଇଥିଲା । ୧୮୬୬ ମସିହା ଦୁର୍ଭିକ୍ଷ ସମୟରେ ଖାଦ୍ୟାଭାବରୁ ଲୋକମାନେ 'ଗିରିଙ୍ଗା ଶାଗ' ଖାଉଥିଲେ । ଉଦୟଚାନ୍ଦ ଦତ୍ତ ଉଲ୍ଲେଖ କରିଥିଲେ- 'ବଡ ଦୁଃଖର କଥା । ଦିନ ଦିନ ଧରି ପତ୍ର, ଶାଗ ଖାଇବା ଦ୍ୱାରା ଝାଡା, ବାନ୍ତି, ଅଜୀର୍ଣ୍ଣ ପ୍ରଭୃତି ରୋଗରେ ପଡିବା ସାର ହେବ । ଶାଗ, ପତ୍ର ଉପରେ ଯେଉଁମାନେ ଦିନ ଦିନ ଧରି ନିର୍ଭର କରି ବଞ୍ଚୁଥିଲେ, ସେମାନଙ୍କର ତଳିପେଟ ହାଣ୍ଡିପରି ବାହାରି ପଡୁଥିଲା, ଗୋଡ ହାତରେ ପଳେ ବୋଲି ମାଂସ ଦିଶୁନଥିଲା, ମଣିଷଟେ ଜୀବନ୍ତ କଙ୍କାଳ ରୂପ ଧାରଣ କରି ବୁଲୁଥିଲା ।' ଗୋଟିଏ ଗରିବ ସ୍ତ୍ରୀ ଲୋକ ମୋତେ କହିଥିଲା ଯେ, ତାର ୯ ପ୍ରାଣୀ କୁଟୁମ୍ବ ଦୀର୍ଘ ୧୨ଦିନ ଧରି ଗିରିଙ୍ଗା ଶାଗ ଖାଇ ବଞ୍ଚିଥିଲେ । ଶେଷରେ ସେମାନଙ୍କ ମଧ୍ୟରୁ ୮ଜଣ ମୃତ୍ୟୁବରଣ କରିଥିଲେ । ଘରେ ସମସ୍ତେ ମଲାପରେ ସେ ପୁରୀରେ ଖୋଲା ଯାଇଥିବା 'ଅନ୍ନଛତ୍ର'ର ଆଶ୍ରୟ ନେବା ପାଇଁ ଆସିଥିଲା ।

## ଓଡ଼ିଆଙ୍କ ମାଦକ ଦ୍ରବ୍ୟ ସେବନ ଅଭ୍ୟାସ

ଓଡ଼ିଆମାନେ ପିଲାଦିନୁ ପିକା ପିଇବାରେ ଅଭ୍ୟସ୍ତ । ସେମାନେ ଯେତେବେଳେ ନିଜ ହାତ ତିଆରି ଖଦଖଦଡିଆ ବାଇଗେଣିଆ ପିକା ଖଣ୍ଡେ ଘର ବାରଣ୍ଡା ଉପରେ ବସି ପିଇ ଧୂଆଁ ଛାଡନ୍ତି, ସେତିକିରେ ଯେତିକି ଆନନ୍ଦ ଅନୁଭବ କରନ୍ତି, ବୋଧେ ଅନ୍ୟ ସମୟରେ ସେତେ ଆନନ୍ଦ ଅନୁଭବ କରନ୍ତି ନାହିଁ । ଏମାନେ ମଧ୍ୟ ଗଞ୍ଜେଇ ଟାଣିବାକୁ ଭଲ ପାଆନ୍ତି । ପୁରୀ ସହରର ଆଖପାଖ ଅଞ୍ଚଳରେ ଗଞ୍ଜେଇ ଚାଷ ବହୁଳ ପରିମାଣରେ ହୁଏ । ଯେତେବେଳେ ଗଞ୍ଜେଇ ଗଛରେ ଫୁଲ ଆସେ, ସେତେବେଳେ ସେଇ ଗଛକୁ କାଟି ତାର ଫୁଲକୁ ଖରାରେ ଶୁଖାଇ ତାକୁ ଗଞ୍ଜେଇ ଭାବେ ଚିଲମରେ କିମ୍ବା ପିକା ସାଙ୍ଗରେ ପିଇଥାନ୍ତି । ଫୁଲକୁ ଗଞ୍ଜେଇ ଭାବେ ବ୍ୟବହାର କଲାବେଳେ ଗଛର ପତ୍ରକୁ ଶୁଖାଇ 'ପତି' ପ୍ରସ୍ତୁତ କରନ୍ତି । ପତିକୁ ପାଣିଦେଇ ବାଟି, ପାଣିରେ ମିଶାଇ ପିଅନ୍ତି, ନହେଲେ ପତି ସାଙ୍ଗରେ ଗୋଲମରିଚ, ଚିନି ମିଶାଇ ପିଅନ୍ତି । ବଟା ଗଞ୍ଜେଇ ପତ୍ର ସହିତ ମିଠା ମିଶାଇ ଖରାରେ ଶୁଖାଇ ଏକ ପ୍ରକାର ଟାଣୁଆ ମିଠା ପ୍ରସ୍ତୁତ କରନ୍ତି । ପୁରୀରେ ଏହାକୁ ମଜୁନ (MAJOON) କହନ୍ତି । ଦରକାର ବେଳେ ଛୁରୀରେ କାଟି, ଛୋଟ ଛୋଟ ଖଣ୍ଡରେ ପରିଣତ କରି ଘରେ ରଖି ଖାଇଥାନ୍ତି । କେତେକ ଏହି ପ୍ରକାର ମିଠାକୁ 'ଭାଙ୍ଗ-ରୁଟି' ବୋଲି କହନ୍ତି ।

ଅଫିମ ମଧ୍ୟ ଓଡ଼ିଶାରେ ବହୁଳ ଭାବେ ଚାଲେ । ଅଫିମକୁ ସେହିପରି ଭାବେ ଖାଇଥାନ୍ତି । ନହେଲେ ତତଲା ପାନପତ୍ର ଦେହରେ ମିଶାଇ, ଛୋଟ ଛୋଟ ଗୁଳିକରି ଖାଆନ୍ତି । ଅଫିମରୁ ପ୍ରସ୍ତୁତ ଏହି ପ୍ରକାର ଜିନିଷକୁ 'ମୁଦତ' (MUDUT) ଯାହାକୁ ହୁକା ସାହାଯ୍ୟରେ ପିଇଥାନ୍ତି । ଓଡ଼ିଆମାନେ ଭାତ ଦେହରୁ ରମ୍ ପରି ଦିଶୁଥିବା ଏକ ପ୍ରକାର ମଦ ପ୍ରସ୍ତୁତ କରନ୍ତି । ସବୁ ଶ୍ରେଣୀର ଲୋକମାନେ ପାନ ଖାଆନ୍ତି । ପାନ ଦେହରେ ଗୁଆ, ଚୂନ, ଅଳେଇଚ, ଲବଙ୍ଗ ଏବଂ ଧୂଆପତ୍ରରୁ ତିଆରି ଗୁଣ୍ଡି ପ୍ରଭୃତି ଦେଇ ପାନକୁ ଗୁଡେଇ ପାଟିରେ ପୂରାଇ ଚୋବାନ୍ତି ।

ପଶ୍ଚିମ ଓଡ଼ିଶାର ପାର୍ବତ୍ୟାଞ୍ଚଳର କନ୍ଧ, କୋହ୍ଲ ଲୋକମାନେ ଭାତ, ପନିପରିବାକୁ ମୁଖ୍ୟ ଖାଦ୍ୟ ରୂପେ ବ୍ୟବହାର କଲାବେଳେ ସେମାନେ ସବୁ ପ୍ରକାର ମାଂସ ଖାଇଥାନ୍ତି । ଏପରିକି ପ୍ରାୟ ପଚି ଆସୁଥିବା ମାଂସକୁ ମଧ୍ୟ ଏମାନେ ଖାଇବାକୁ ପଛାନ୍ତି ନାହିଁ । ସେମାନେ ମୂଷା, ଝଡିପୋକ, କାଇ ଖାଇବାକୁ ଭଲ ପାଆନ୍ତି । ସାନ୍ତାଳ ଏବଂ ଡଙ୍ଗରା ମାନେ ମଧ୍ୟ ମୂଷା, ଗୁଣ୍ଡୁଚି ମୂଷା, ସାପ, ବିଲୁଆ ଖାଆନ୍ତି । ବାଉରୀ ଜାତିର ଲୋକମାନେ ବିରାଡି; ମଲାଜନ୍ତୁ (ସେ ଜନ୍ତୁ ଯେଉଁ ପ୍ରକାରେ ମରିଥିଲେ ମଧ୍ୟ) ତାକୁ ଖାଇଥାନ୍ତି । ଆସାମର ପାହାଡି ଅଞ୍ଚଳର ଲୋକମାନେ କୁକୁର ଛୁଆ, ଚିତାବାଘ, ଅନ୍ୟ ଜନ୍ତୁମାନଙ୍କ ମାଂସ ଖାଆନ୍ତି । ବିପରୀତ ଭାବେ ଦେଖିବାକୁ ଗଲେ, ବୈଷ୍ଣବ ହିନ୍ଦୁମାନଙ୍କ ଘରେ, ମାଛ,

ମାଂସ କ'ଣ ପିଆଜ, ରସୁଣ ମଧ ପଶେନି । ମହୁଆ ଫୁଲରୁ ଡିଷ୍ଟିଲେସନ କରି ସେମାନେ ଯେଉଁ ନିଶା ପ୍ରସ୍ତୁତ କରନ୍ତି, ତାକୁ ପିଇ ମାତାଲ ଅବସ୍ଥାରେ ପହଞ୍ଚିଥାନ୍ତି । ମହୁଆ ଫୁଲରୁ ପ୍ରସ୍ତୁତ ସ୍ପିରିଟ୍‌କୁ ସେମାନେ ହୁରେହା (HUREEAH) କହନ୍ତି । ଟାଇଁବସାର ସିଭିଲ୍ ସର୍ଜନ ଡକ୍ଟର ଏ.ଜେ.ମେୟର ଲେଖିଛନ୍ତି 'ସେମାନେ ଏହି ମହୁଲି ନିଶା ଖାଇଲେ ଦିନ ଦିନ ଧରି ନଖାଇ ରହିପାରନ୍ତି ଏବଂ ନିଶା ନଛାଡିବା ପର୍ଯ୍ୟନ୍ତ ବହୁତ ଭଲ କାମ କରନ୍ତି । ଦିନରେ ଥରେ ଭାତ ସାଙ୍ଗକୁ ହୁରିଆ ମିଳିଗଲେ କୋଲ୍‌ହ ଜାତିର ଲୋକମାନଙ୍କ ପାଇଁ ତାହା ଯଥେଷ୍ଟ ହୋଇଥାଏ ।' କୋଲହମାନଙ୍କୁ ରୋଗ ହେଲେ ସେମାନେ ଔଷଧ ବ୍ୟବହାର ନକରି ବିଭିନ୍ନ ପଶୁ, ପକ୍ଷୀ ବଳିଦେଇ ରୋଗମୁକ୍ତ ହେବାକୁ ଦେବତାଙ୍କ ପାଖେ ପୂଜା କରନ୍ତି । ଡକ୍ଟର ମେୟର ଲେଖିଛନ୍ତି 'ସେମାନଙ୍କ ମଧ୍ୟରୁ ଅତ୍ୟନ୍ତ ଗରିବ ଲୋକ ମଧ ଘରେ କୁକୁଡା, ପାରା, ଛେଳି ଏହି ଉଦ୍ଦେଶ୍ୟରେ ପାଳିଥାନ୍ତି । ବଳୀର ବନ୍ଦୋବସ୍ତ କରି ସେମାନେ ରୋଗମୁକ୍ତ ପାଇଁ ସଂପୂର୍ଣ୍ଣ ରୂପେ ବଳି ଉପରେ ବିଶ୍ୱାସ କରନ୍ତି । ଯେଉଁ ପରିବାରରେ ଜଣେ ଚିରନ୍ତନ ରୋଗରେ ପୀଡିତ ହେଲା, ସେ ପରିବାର, ରୋଗୀକୁ ରୋଗମୁକ୍ତ କରିବାକୁ ପ୍ରତ୍ୟେକ ଦିନ ଦେବତାଙ୍କ ଉଦ୍ଦେଶ୍ୟରେ ପଶୁ, ପକ୍ଷୀ, ବଳିଦେଇ ଆର୍ଥିକ ଅନଟନରେ ବୁଡି ରହିଲା ।'

ଓଡ଼ିଶାର ବିଭିନ୍ନ ସ୍ଥାନରେ ଖଜୁରୀ ତାଡି ପ୍ରସ୍ତୁତ ହୋଇଥାଏ । ଗଛର ଉପରି ଭାଗର ପତ୍ର ତଳକୁ କାଟି ଏହି ରସ ସଂଗ୍ରହ କରାଯାଇଥାଏ । ତାଳ ଗଛରୁ ମଧ ଏ ପ୍ରକାରେ ତାଳ ରସ ସଂଗ୍ରହ କରନ୍ତି । ଓଡ଼ିଶାରେ ବିଭିନ୍ନ ପ୍ରକାର ନିଶାଦ୍ରବ୍ୟ ସେବନ ସଂପର୍କରେ ଲେଖିଲା ବେଳେ ଏହାର ପ୍ରଭାବ କେଉଁପରି ଭାବେ ସାଧାରଣ ଲୋକଙ୍କ ସ୍ୱାସ୍ଥ୍ୟ ଓ ନୈତିକତା ଉପରେ ପ୍ରତିଫଳିତ ହେଉଛି, ସେ ବିଷୟରେ ସମ୍ୟକ ସୂଚନା ଦେଉଛି । 'ଓଡ଼ିଆମାନେ ସାଧାରଣରେ ନିରାମିଷ ଖାଦ୍ୟ ଖାଉଥିବା ଯୋଗୁଁ ଖାଦ୍ୟର ଆଜୋଟାଇଜିଡ୍ (Azotised) ଅଂଶକୁ ବିଶେଷ ଭାବେ ଗ୍ରହଣ କରିଥାନ୍ତି, ଯାହାକି ନିଶାଦ୍ରବ୍ୟ ସେବନ ପାଇଁ ଅସୁବିଧାଜନକ । ସେମାନେ ଯେଉଁ ପ୍ରୋଟିନ୍ ଖାଦ୍ୟରୁ ପାଇଥାନ୍ତି, ମୁଖ୍ୟତଃ ସେସବୁ ବିଭିନ୍ନ ପ୍ରକାର ପରିବାର ଆଜୋଟାଇଜେଡ୍ ଅଂଶ, ଯାହାକି ସହଜରେ ଜୀର୍ଣ୍ଣ ହୁଏନି । କୁହାଯାଏ, 'ୟୁରୋପୀୟାନମାନଙ୍କ ପାଇଁ ବ୍ରେଡ୍ ସାଙ୍ଗରେ ମାଂସ, ଲହୁଣି ଯେପରି, ବଙ୍ଗାଳୀମାନଙ୍କ ପାଇଁ ଭାତ ସାଙ୍ଗରେ ଡାଲି ସେହି ପ୍ରକାର ।' ଚାଉଳକୁ ଯଦି ଦୁଇ ତିନିବର୍ଷ ପର୍ଯ୍ୟନ୍ତ ରଖି ପୁରୁଣା କରି ଶୁଖାନଯାଏ, ତେବେ ସେପରି ଚାଉଳର ଭାତ ବିଭିନ୍ନ ପ୍ରକାର ପେଟ ରୋଗ, କଲିକ୍ ଠାରୁ ଆରମ୍ଭ କରି ବାୟୁରୋଗ ସୃଷ୍ଟି କରିଥାଏ । କେତେକ କୁହନ୍ତି, ନୂଆ ଚାଉଳର ଭାତ ଖାଇଲେ ଆଣ୍ଠୁଗଣ୍ଠି ଧରେ । ଡକ୍ଟର ଡବ୍ଲୁ.ବି.ବିଟ୍‌ସନଙ୍କ ମତରେ ନୂଆ ଚାଉଳ ଭାତ, ବହୁ ପରିମାଣରେ ଲାକ୍‌ଟିକ୍ ଏସିଡ୍ ସୃଷ୍ଟି କରେ, ଯେଉଁଥିପାଇଁ ବଦହଜମୀ ହୋଇଥାଏ । ସେଇ ଡାକ୍ତର ପୁଣି କୁହନ୍ତି, ମସୁର

ଡାଲି ଖାଇଲେ 'ଅନ୍ଧାର କଣା' ହେବାର ସମ୍ଭାବନା ଯଥେଷ୍ଟ । ହାତ, ଗୋଡ ପୋଡିବା ମଧ୍ୟ କୁହାଯାଏ । କୁଲେଇ (KULLYE) ମଧ୍ୟ ଆଣ୍ଠୁଗଣ୍ଠି ବାତ ପାଇଁ ମସୁର ଡାଲି କେତେକାଂଶରେ ଦାୟୀ ବୋଲି କୁହନ୍ତି । ଡକ୍ଟର ବିଟ୍‌ସନଙ୍କ ମତରେ ଏହି ଡାଲି ଜାତୀୟ ଦ୍ରବ୍ୟ ଗୁଡିକର ଖରାପ ଗୁଣକୁ ଦୂର କରିବା ପାଇଁ ଏମାନେ ଡାଲି ସହିତ ଘିଅ, ତେଲ, ନଡିଆ ପ୍ରଭୃତି ବ୍ୟବହାର କରିଥାନ୍ତି । ତାଙ୍କ ମତରେ ଏସବୁ ଜିନିଷ ମିଶିବାରୁ ଡାଲିରୁ ବାହାରୁଥିବା କାସାଇନ୍ ସବୁ ଦ୍ରବୀଭୂତ ହୋଇଯାଏ । ଭାରତର ବହୁ ଭାଗରେ ଖେସାରୀ ଡାଲି ବାୟୁରୋଗ ଏବଂ ପାରାଲିସିସ୍ ସୃଷ୍ଟି କରେ ବୋଲି ବିଶ୍ୱାସ କରନ୍ତି । ଛୋଟ ମକ୍କା ଓ ଜଅର ଖାଇଲେ, ତଳିପେଟ ବଢ଼େ ଏବଂ ମାଂସପେଶୀ ଗଠନରେ ଅଭାବ ସୃଷ୍ଟିକରେ । ପ୍ରତ୍ୟେକ ଡାଲିର ଚୋପାକୁ ଯଦି ଭଲ ଭାବେ ପରିଷ୍କାର ନକରି ରନ୍ଧାଯାଏ, ତେବେ ସେ ପ୍ରକାର ରନ୍ଧା ଡାଲି ଖାଇଲେ ବାୟୁ ଏବଂ ପେଟ ରୋଗ ନିଶ୍ଚିତ ଭାବେ ହେବ । ସବୁଠାରୁ ସହଜରେ ହଜମ ହେଉଥିବା ଡାଲି ଭିତରେ ମୁଗ ପ୍ରଧାନ । କୋଳଥ ଡାଲି ଖାଇଲେ ଗୋଡ, ହାତ ଫୁଲେ । ଜଅର ଡାଲି ଖାଇଲେ କମ୍ପଜ୍ୱର ହୁଏ ବୋଲି ବିଶ୍ୱାସ କରନ୍ତି । କେତେକ ବିଶ୍ୱାସ କରନ୍ତି ଯେ, ପାନ ଦେହରେ ଚୂନ ମିଶାଇ ଖାଇଲେ ଛାତି ଦରଜ ହୁଏ କାଶ ହୁଏ, ମାତ୍ର ଆଉ କେତେକ କୁହନ୍ତି, କାଶ, ଛାତି ଦରଜ ପ୍ରଭୃତି ରୋଗ ସନ୍ତସନ୍ତିଆ, ତଳୁଆ ଅଞ୍ଚଳରେ ମ୍ୟାଲେରିଆ ଯୋଗୁଁ ହୋଇଥାଏ । ହିନ୍ଦୁମାନଙ୍କ ପରି ଶାକାହାରୀ ଲୋକମାନଙ୍କ ପାଇଁ ଚୂନ ମିଶା ପାନ, ହଜମକାରୀ ଭାବେ କାର୍ଯ୍ୟ କରିଥାଏ ବୋଲି କେତେକ ମତ ଦିଅନ୍ତି । ଚୂନ ଆଣ୍ଟାସିଡ୍ ଭାବେ କାର୍ଯ୍ୟ କଲାବେଳେ ପାନ ପାଟି ଭିତର ଲାଳଗ୍ରନ୍ଥୀ ଗୁଡିକୁ ଉତ୍ତେଜିତ କରେ ।

ଅଫିମ ଅଳ୍ପ ପରିମାଣରେ ଖାଇଲେ, ଏହା ଜୀର୍ଣ୍ଣକାରକ ହୋଇଥାଏ ଏବଂ ଅଗ୍ନିମାନ୍ଦ୍ୟତା ଦୂର କରେ ବୋଲି ସ୍ଥାନୀୟ ଲୋକମାନଙ୍କର ବିଶ୍ୱାସ । କିନ୍ତୁ ଅଫିମକୁ ଅଧିକ ପରିମାଣରେ ସେବନ କଲେ ଏହା ନିଶ୍ଚିତ ଭାବେ ସେବନକାରୀକୁ ନିଶାସକ୍ତ କରେ ଏବଂ କିଛି ନା କିଛି ରୋଗ ମଧ୍ୟ ସୃଷ୍ଟିକରେ । ଯେ କୌଣସି ନିଶା ଦ୍ରବ୍ୟକୁ ଅଧିକ ପରିମାଣରେ ସେବନ କଲେ ଏହା ଲୋକମାନଙ୍କର ଶାରୀରିକ ଓ ମାନସିକ ସ୍ଥିତିକୁ ନଷ୍ଟ କରିଥାଏ । ପଚା, ସଢ଼ା ମାଛ, ପେଟ ଭିତରେ ଘା' ତାଇରିଆ ପ୍ରଭୃତି ବଡ ଧରଣ ରୋଗର କାରଣ ହୁଏ । 'ଭେଜିଟେବୁଲ୍ ଏସିଡ୍' ଶରୀର ପାଇଁ ଭଲ ଏହା ନିଃସନ୍ଦେହ । ସାଧାରଣରେ ଓଡ଼ିଶାରେ ଯାହାସବୁ ମିଳେ, ସେଥିମଧ୍ୟରୁ ତେନ୍ତୁଳି, ଅଁଳା, ଛୁଲଟା (CHULTA), ଲେମ୍ବୁ ପ୍ରଧାନ । ଓଡ଼ିଆମାନେ ତେନ୍ତୁଳିକୁ ବହୁଳ ଭାବେ ବ୍ୟବହାର କରିଥାନ୍ତି । ତେନ୍ତୁଳି ଦାନ୍ତ ଫୁଲା ରୋଗ ପାଇଁ ଖୁବ୍ ଭଲ । ଫରେଦ୍‌ପୁର ମେଡିକାଲ ଅଫିସର ଡକ୍ଟର ଭୋଲାନାଥ ବୋଷ କୁହନ୍ତି, ଅଧିକ ପରିମାଣରେ ତେନ୍ତୁଳି ପାଣି ପିଆଇ ଦେଲେ 'ଗର୍ଭପାତ' ହୋଇଯାଏ । ସପୁରୀ ଏମାନଙ୍କ ପାଇଁ ଗୋଟିଏ ଅତ୍ୟନ୍ତ ସ୍ୱାଦ ଫଳ ।

ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ, ଓଡ଼ିଆମାନେ ଖାଉଥିବା ଖାଦ୍ୟ ସେମାନଙ୍କୁ ବହୁ ଗୁଣରେ ନିଷ୍ପ୍ରଭ, ଅଣ ଉଦ୍ୟୋଗୀ ଓ ଅଳସୁଆ କରିଥିଲା ବେଳେ ଏସବୁ ଖାଦ୍ୟ ମଧ୍ୟ ବିଭିନ୍ନ ରୋଗ ସଂପର୍କରେ ସେମାନଙ୍କୁ ଜାଣିବାର ସୁଯୋଗ ଦେଇଥାଏ । ଆମେ ମନେ ରଖିବା ଉଚିତ୍ ଯେ, ଧାନ ଅମଳ ହେବାର ମାତ୍ର କେତେଦିନ ମଧ୍ୟରେ ଓଡ଼ିଶାରେ ସେହି ଧାନର ଚାଉଳକୁ ଭାତ କରିଥାନ୍ତି, ଡାଲି ଭଲ ଭାବେ ଚୋପା ନଛଡାଇ ରୋଷେଇ କରିଥାନ୍ତି, ଦାରିଦ୍ର୍ୟର ତାଡନାରେ ଏମାନେ ଖାଦ୍ୟ ପୁଷ୍ଟିକର ହଉ ବା ନହେଉ ଯାହା ମିଳିଲା କ୍ଷୁଧାର ପୂରଣ ପାଇଁ ସେସବୁକୁ ଖାଇବାକୁ ବାଧ୍ୟ ହୋଇଥାନ୍ତି । ଏଠାରେ ପିଇବା ପାଣି ପରିଷ୍କାର ନୁହେଁ, କିମ୍ବା ପାଣି ଯୋଗାଣର ବ୍ୟବସ୍ଥା ନାହିଁ । ପ୍ରତ୍ୟେକଙ୍କ ଘରେ ପାଇଖାନା ନଥିବା, ଏକ ସାଧାରଣ ଘଟଣା । ଲୋକମାନେ ତଳୁଆ, ସନ୍ତସନ୍ତିଆ ଅଂଳରେ ଝାଡା ଫେରନ୍ତି । ଜଙ୍ଗଲ ଘେରା, ସନ୍ତସନ୍ତିଆ ଅଞ୍ଚଳରେ ରୁହନ୍ତି, ଯେଉଁଥିପାଇଁ ମ୍ୟାଲେରିଆ ରୋଗରେ ଏମାନେ ବହୁଳ ଭାବେ ଆକ୍ରାନ୍ତ ହୋଇଥାନ୍ତି । ରକ୍ତଶୂନ୍ୟତା ଏକ ସାଧାରଣ ଘଟଣା । ଲୋକଙ୍କ ଚେହେରା ଧଡିଆ, ମୁହଁରେ ନିଷ୍ପ୍ରଭତା ଓ ନିରାଶର ଛାପ, ଶରୀର ମାଂସପେଶୀ କ୍ଷୀଣ, ଶିଥିଳ ଏବଂ ସେମାନଙ୍କ ପ୍ଳୀହା ବଡ । ପେଟ ରୋଗ, ଅଜୀର୍ଣ୍ଣ, ଗଳାଫୁଲା, ଆଣ୍ଠୁଗଣ୍ଠି ଫୁଲା, କାଛୁକୁଣ୍ଡିଆ, ହରପିସ୍ ସାଧାରଣରେ ଦେଖାଗଲା ବେଳେ ମ୍ୟାଲେରିଆ ଜ୍ୱର, ହଇଜା, ବସନ୍ତ ପ୍ରଭୃତି ମହାମାରୀରେ ହଜାର ହଜାର ଲୋକ ପ୍ରତ୍ୟେକ ବର୍ଷ ମୃତ୍ୟୁବରଣ କରନ୍ତି ।

## ଧାର୍ମିକ କ୍ରିୟାକଳାପ ମଧ୍ୟ ସ୍ୱାସ୍ଥ୍ୟହାନୀର ଅନ୍ୟ ଏକ କାରଣ

ହିନ୍ଦୁ ଧର୍ମରେ ଧାର୍ମିକ କ୍ରିୟାକଳାପ, ଦେଶର ସାଧାରଣ ନାଗରିକଙ୍କ ଶାରୀରିକ ସୁସ୍ଥତା ଉପରେ କେଉଁ ପ୍ରକାର ପ୍ରଭାବ ପକାଇପାରେ, ଏହା ଏକ ସ୍ୱତନ୍ତ୍ର ପ୍ରଶ୍ନ । ତେବେ ଏ ସଂପର୍କରେ ମୁଁ ଏତିକି ମନ୍ତବ୍ୟ ଦେଇ କହିପାରେ ଯେ, ଓଡ଼ିଆମାନେ ଯେଉଁସବୁ ଓଷା, ବ୍ରତ, ଉପବାସ, ଯାନୀଯାତ୍ରା ପାଳନ କରିଥାନ୍ତି, ସେସବୁ ଅତ୍ୟଧିକ ଯନ୍ତ୍ରଣାଦାୟକ । ଅନ୍ୟ କଥାରେ କହିବାକୁ ଗଲେ ଏ ସବୁଥିରେ ସେମାନେ ଅଯଥାରେ ଅର୍ଥ ଅପବ୍ୟୟ କରିଥାନ୍ତି, କେତେକ ସ୍ଥଳରେ ଅତ୍ୟଧିକ ଦେହଭୋଗ, ବ୍ୟଭିଚାର ଯୋଗୁଁ ମାନସିକ ଉତ୍ତେଜନାର ଶିକାର ହୋଇଥାନ୍ତି । ମୁଁ ଭାବେ ଏ ସବୁର ପ୍ରଭାବରେ ସେମାନେ ଦୀର୍ଘକାଳ ଧରି ଅସୁସ୍ଥ ରହିବା ସଂଗେ ଅକାଳ ମୃତ୍ୟୁ ମୁଖରେ ପଡନ୍ତି । ମୁଁ ଯାହାସବୁ ସାଧାରଣ ଭାବରେ କହି ଯାଉଛି, ଏହି ବିଷୟବସ୍ତୁକୁ ଗବେଷଣା କରି ବିରାଟ ଉପାଦେୟ ପୁସ୍ତକ ଲେଖାଯାଇ ପାରିବ । ୪୦ବର୍ଷ ତଳେ ସତକଥା କହିବାକୁ ଯାଇ ମିଃ ପେଗ୍ ଲେଖିଥିଲେ ଯେ, 'ସତୀ ପ୍ରଥା ଯଦି ୧୦୦୦ ଲୋକଙ୍କ ପ୍ରାଣ ନିଏ, ତୀର୍ଥଯାତ୍ରା ୧୦,୦୦୦ ଲୋକଙ୍କୁ ମୃତ୍ୟୁମୁଖରେ ପକାଇଥାଏ ।' ସତୀଦାହ ପ୍ରଥା ଏବେ ପ୍ରାୟ ବନ୍ଦ ହୋଇଯାଇଥିଲେ ମଧ୍ୟ ତୀର୍ଥଯାତ୍ରାରେ ମୃତ୍ୟୁ ସଂଖ୍ୟା ବର୍ତ୍ତମାନ ସୁଦ୍ଧା କମି ନାହିଁ ।

## ପୁରୀରୁ ପିପିଲି

ପୁରୀ ସହରରେ ଦୀର୍ଘ ୧୦ଦିନ କଟାଇ ଜୁଲାଇ ୨ ତାରିଖ ସଂଧ୍ୟା ପରେ ମୁଁ ପୁରୀରୁ ବିଦାୟ ନେଇଥିଲି । ୩ ତାରିଖ ସକାଳ ୬ଟା ସୁଦ୍ଧା ସତ୍ୟବାଦୀ ପାର ହୋଇ ମଧ୍ୟାହ୍ନ ପୂର୍ବରୁ ପିପିଲିରେ ପହଞ୍ଚିଥିଲି । ପିପିଲିରେ ମୁଁ ପିପିଲି ଅନାଥାଶ୍ରମ ବୁଲି ଦେଖିଥିଲି । ଅନଥାଶ୍ରମର ଆଭ୍ୟନ୍ତରୀଣୀୟ କାର୍ଯ୍ୟକଳାପ ଦେଖି ମୁଁ ଅତ୍ୟନ୍ତ ଖୁସି ହୋଇଥିଲି । ଏଠାରେ ରହୁଥିବା ହତଭାଗ୍ୟ ପିଲାମାନେ ପ୍ରକୃତରେ ସ୍ନେହ, ଶ୍ରଦ୍ଧା ଭିତରେ ରହୁଛନ୍ତି । ମିଶନର ଦୁଇଜଣ ମହିଳା, ମିସେସ୍ ଗଡଓ୍ୱେ ଏବଂ ମିସ୍‌ପାକରଙ୍କ ଲୋକ ହିତକର କାର୍ଯ୍ୟକଳାପ ଦେଖିଲା ପରେ ମୋର ଫ୍ଲୋରେନ୍ସ ନାଇଟିଂଗଲ ଏବଂ ଏଲିଜାବେଥ ପ୍ରାଇଙ୍କ କଥା ମନେ ପଡୁଥିଲା । ମୁଁ ମୁକ୍ତ କଣ୍ଠରେ କହିପାରେ, ଓଡ଼ିଶାରେ ପରିମଳ ବ୍ୟବସ୍ଥା ଓ ଔଷଧ ବ୍ୟବହାରର ଉପକାରିତା ସଂପର୍କରେ ପ୍ରଚାର, ପ୍ରସାର ଓ ସଚେତନତା ସୃଷ୍ଟି କରିବାରେ ସେମାନେ ଥିଲେ ଅନନ୍ୟ ।

## ପିପିଲିରୁ ଭୁବନେଶ୍ୱର

ଜୁଲାଇ ୪ ତାରିଖ ସକାଳୁ ମୁଁ ପିପିଲିରୁ ଭୁବନେଶ୍ୱର ଯିବା ପାଇଁ ବାହାରିଥିଲି । ବର୍ତ୍ତମାନ ଧ୍ୱଂସ ମୁଖରେ ପଡିଥିବା ଏହି ସ୍ଥାନଟି ଦିନେ କେଶରୀ ବଂଶ ରାଜାମାନଙ୍କର ରାଜଧାନୀ ଥିଲା । ପର୍ଯ୍ୟଟକମାନେ ଏହି ପୁରାତନ ରାଜଧାନୀକୁ ଦେଖିବାକୁ ଆଗ୍ରହ ପ୍ରକାଶ କରି ଏଠାକୁ ଆସୁଛନ୍ତି । ଖ୍ରୀଷ୍ଟାବ୍ଦ ୬୫୭ ମସିହାରେ ମହାରାଜା ଲଲାଟେନ୍ଦୁ କେଶରୀ ଏହି ବିରାଟ ମନ୍ଦିର ନିର୍ମାଣ କରି ସେହି ମନ୍ଦିର ମହାଦେବଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ । ଏବେ ଶହ ଶହ ଅଧା ଭଙ୍ଗା ମନ୍ଦିର, ପଥର ଗଦା ଭିତରେ ସେହି ମନ୍ଦିର ମୁଣ୍ଡ ଟେକି ଠିଆ ହୋଇଛି । କୁହାଯାଏ, ମନ୍ଦିର ନିର୍ମାଣ କରିବା ପାଇଁ ୪୩ବର୍ଷ ଲାଗିଥିଲା । ଏହି ମନ୍ଦିର ଓଡ଼ିଶାର ସବୁଠାରୁ ପୁରାତନ ମନ୍ଦିର । ହିନ୍ଦୁମାନଙ୍କର ପ୍ରାଚୀନ କଳାକୃତିର ଏହି ମନ୍ଦିର ଏକ ଶ୍ରେଷ୍ଠ ନିଦର୍ଶନ ବୋଲି ନିଶ୍ଚିତ ଭାବେ କୁହାଯାଇପାରେ । ଏବେବି ଏହି ମନ୍ଦିର ପାରିପାର୍ଶ୍ୱର ବିଷର୍ଣ୍ଣତା ମଧ୍ୟରେ ସେହିପରି ସୁଦୃଢ଼ ପ୍ରକାଣ୍ଡ ରୂପେ ଦଣ୍ଡାୟମାନ । ଷ୍ଟର୍ଲିଂଙ୍କ ବର୍ଣ୍ଣନା ଅନୁସାରେ "ମୁଖ୍ୟମନ୍ଦିର ନିକଟରେ ଠିଆ ହେଲେ ଜଣେ ୪୦ରୁ ୫୦ ପର୍ଯ୍ୟନ୍ତ ପଥର ମନ୍ଦିର ଉପରୁ ଅନ୍ୟ କୌଣସି ଦିଗକୁ ଆଖି ଫେରାଇ ନେଇପାରିବ ନାହିଁ ।" ଏଠାକାର ଅଧିବାସୀମାନେ କୁହନ୍ତି, ଭୁବନେଶ୍ୱର ଯେତେବେଳେ ସମୃଦ୍ଧଶୀଳ ନଗର ଥିଲା, ସେତେବେଳେ ସହର ମଧ୍ୟରେ ଏବଂ ସହର ଆଖପାଖ ଅଞ୍ଚଳରେ ସାତ ହଜାରରୁ ଊର୍ଦ୍ଧ୍ୱ ମହାଦେବ ମନ୍ଦିର ଥିଲା । ଯେଉଁ ମନ୍ଦିରମାନଙ୍କରେ ଏକ କୋଟି ଲିଙ୍ଗ ପୂଜା ପାଉଥିଲେ । ଏବେ ଜଣେ ବିଶ୍ୱାସ କରିପାରିବ ନାହିଁ, ସେତେବେଳେ ଏତେ ପରିମାଣରେ ମନ୍ଦିର ଏଠାରେ ଥିଲା ବୋଲି । ଏବେବି ବହୁ ମନ୍ଦିର ଭଗ୍ନ, ଅର୍ଦ୍ଧଭଗ୍ନ ଅବସ୍ଥାରେ ଉପେକ୍ଷିତ ହୋଇପଡିଛି । ସେଥିମଧ୍ୟରୁ କେତେକ ମନ୍ଦିରର ରକ୍ଷଣାବେକ୍ଷଣ

କଲେ, ସେସବୁ ଧ୍ୱଂସ ମୁଖରୁ ରକ୍ଷା କରାଯାଇପାରନ୍ତା । ବହୁ ମନ୍ଦିର ଦେହରେ ଗଛଲତା ମାଡି ଯାଇ ବାହାରକୁ ଦିଶୁନି । ଗୁଳ୍ମଲତାର ଜଙ୍ଗଲ ମଧ୍ୟରେ ଏସବୁ ମନ୍ଦିର ପଥରଗଦା ସଦୃଶ ପ୍ରତ୍ୟୟମାନ ହୁଏ । କେବଳ ଯେ ବହୁ ସଂଖ୍ୟାର ମନ୍ଦିର ଏହି ସ୍ଥାନର ଉଲ୍ଲେଖନୀୟ ବୈଶିଷ୍ଟ୍ୟ ଏକଥା ନୁହେଁ, ମନ୍ଦିରମାନଙ୍କରେ ଗଠନ ପ୍ରଣାଳୀ, ମନ୍ଦିର ଗାତ୍ରରେ ସୂକ୍ଷ୍ମ କାରୁକାର୍ଯ୍ୟ, ଏହାର ଆକାର ପ୍ରକାର, ମନ୍ଦିରର ସାଜସଜ୍ଜା, ଏସବୁ ମନ୍ଦିର ଦୃଶ୍ୟକୁ ଚମତ୍କାର ଭାବେ ଟେକି ଧରିଛି । ମନ୍ଦିରମାନଙ୍କର ବର୍ହିଭାଗ, ମୁଖ୍ୟତଃ ଉତ୍କୃଷ୍ଟ କାରୁକାର୍ଯ୍ୟପୂର୍ଣ୍ଣ ମୂର୍ତ୍ତିମାନଙ୍କ ଦ୍ୱାରା ଅଳଙ୍କୃତ । ମନ୍ଦିରର ଚତୁଃପାର୍ଶ୍ୱରେ ବିଭିନ୍ନ ଦେବାଦେବୀଙ୍କ ମୂର୍ତ୍ତିମାନ ସ୍ଥାନ ପାଇ ମୁଖ୍ୟ ମନ୍ଦିରର ସୌନ୍ଦର୍ଯ୍ୟକୁ ବଢ଼ାଇଥାଏ । ଏହି ମୂର୍ତ୍ତିମାନଙ୍କ ମଧ୍ୟରେ ମହାଦେବଙ୍କ ପାଇଁ ଉର୍ଦ୍ଧଷ୍ଟ ମୂର୍ତ୍ତି, ଷଣ୍ଢ, ଲିଙ୍ଗ ପ୍ରଭୃତି ସ୍ଥାନ ପାଇଥାଏ । ମନ୍ଦିର ବେଢ଼ା ଭିତରେ ଛୋଟବଡ ମନ୍ଦିର ମଧ୍ୟରେ ଗଣେଶ, ହନୁମାନ, ଶିବଙ୍କର ବିଭିନ୍ନ ରୂପ, ପାର୍ବତୀ, ଦୁର୍ଗା, କାଳୀ ମୂର୍ତ୍ତିମାନ ପୂଜା ପାଇଥାନ୍ତି । ମୟୂର ବାହନରେ ଆରୋହଣ କରିଥିବା କାର୍ତ୍ତିକେୟ, ନାରୀ ଶକ୍ତିର ପ୍ରତୀକ 'କୁମାରୀ ମୂର୍ତ୍ତି', ନୃସିଂହ, ବାମନ ଅବତାର ମୂର୍ତ୍ତିମାନ ବେଢ଼ା ମଧ୍ୟରେ ଦେଖାଯାଏ । ସଂପୂର୍ଣ୍ଣ ଭାବେ କାମ ସରିଥିବା ମନ୍ଦିରମାନଙ୍କରେ ବଡ ବଡ ଗ୍ରେ-କ୍ଲୋରାଇଟ୍-ସ୍ଲେଟ୍ ପଥର ଖଣ୍ଡମାନଙ୍କର ତିନିପଟେ ଖୋଦେଇ କରି ମଣିଷ ଉଚ୍ଚର ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ମୂର୍ତ୍ତିମାନ ଖଞ୍ଜା ଯାଇଛି । ଯେଉଁ ପ୍ରକାର କୌଶଳ ଓ ପ୍ରତିସାମ୍ୟ ରକ୍ଷାକରି ଏହି ମୂର୍ତ୍ତିମାନ ମନ୍ଦିର ଗାତ୍ରରେ ଖୋଦେଇ କରାଯାଇଛି, ତାହା କିଛି କମ୍ କଥା ନୁହଁ । ମୋଟା ପଥର ଦେହରେ ମନ୍ଦିରମାନଙ୍କର କାନ୍ଥ ତିଆରି କରାଯାଇଛି । ମନ୍ଦିର କାନ୍ଥମାନଙ୍କରେ ଏକ କିମ୍ବା ଏକାଧିକ ନୃତ୍ୟରତା ଅପ୍ସରା ବିଭିନ୍ନ ଭଙ୍ଗୀରେ ବସିଥିବା କିମ୍ବା ଠିଆ ହୋଇଥିବା ହର-ପାର୍ବତୀଙ୍କ ଅଶ୍ଳୀଳ ମୂର୍ତ୍ତି, ସୈନ୍ୟ ସାମନ୍ତ, ହାତୀ, ଘୋଡା, କୌଣସି କୌଣସି ଜାଗାରେ ଲଢ଼ିବା ଅବସ୍ଥାରେ ହାତୀ, ଘୋଡାମାନଙ୍କର ମୂର୍ତ୍ତି, ରାଜକୀୟ ଶୋଭାଯାତ୍ରା, ବିକଟକାୟ ସିଂହ ମୂର୍ତ୍ତିମାନ ଖୋଦଇ ହୋଇଛି । କେତେକ ସ୍ଥାନରେ ଧ୍ୟାନରତ ମୁନୀ, ଋଷୀ କିମ୍ବା ଶିଷ୍ୟମାନଙ୍କ ଗହଣରେ ଶିକ୍ଷାଦାନ ଦୃଶ୍ୟର ମୂର୍ତ୍ତିମାନ ଖୋଦେଇ ହୋଇଥିବା ଦେଖାଯାଏ । ଓଡ଼ିଶାର ପ୍ରତ୍ୟେକ ମନ୍ଦିରର ପ୍ରବେଶ ଦ୍ୱାରରେ ଉପବିଷ୍ଟ ଅବସ୍ଥାରେ ନଅଟି ମୂର୍ତ୍ତି ଦେଖିବାକୁ ମିଳେ । ଓଡ଼ିଶା ସ୍ଥାପତ୍ୟ କଳାରେ ଏହି ମୂର୍ତ୍ତିକୁ ନବଗ୍ରହ କୁହନ୍ତି । ଯାହାଙ୍କ ମଧ୍ୟରୁ ସାତଗୋଟି ଦେବତା, ଯେଉଁମାନେ ସପ୍ତାହର ସାତଦିନକୁ ପ୍ରତିନିଧିତ୍ୱ କରନ୍ତି । ଆଉ ଦୁଇ ମୂର୍ତ୍ତି ହେଲେ ରାକ୍ଷସ ଗ୍ରହ-ରାହୁ, କେତୁ ଯେଉଁମାନେ ମାସର ଦୁଇପକ୍ଷ କୃଷ୍ଣ ଓ ଶୁକ୍ଳ ପକ୍ଷକୁ ବୁଝାନ୍ତି ।

ପୁରୀଠାରୁ ୩୩ ମାଇଲ୍ ଦୂର ଭୁବନେଶ୍ୱର ସହର ସମୟ ସ୍ରୋତରେ ବର୍ତ୍ତମାନ ଜରାଜୀର୍ଣ୍ଣ ଅବସ୍ଥାରେ ପଡିଛି । ଚାରିଆଡେ ଭଙ୍ଗା ମନ୍ଦିର, ପଥର ଗଦା, ବଡ ଛୋଟ ଗୁଳ୍ମଲତାର ଜଙ୍ଗଲ । କେବଳ ବିରାଟ ଲିଙ୍ଗରାଜ ମନ୍ଦିର, ଦୁଇଟି ସୁନ୍ଦର ପୁଷ୍କରିଣୀକୁ ଛାଡିଦେଲେ ସେଦିନର ସେହି ପୁରାତନ ସହରର ବିଭବ ଆଜି ଲୁପ୍ତପ୍ରାୟ । ବର୍ତ୍ତମାନ

ମଧ୍ୟ ପ୍ରତ୍ୟେକ ରାସ୍ତା କଡରେ ଜଣେ ପୁରୁଣା କୀର୍ତ୍ତିରାଜିକୁ ଦେଖିବାକୁ ପାଇବ । ଏପରିକି ବହୁ ମନ୍ଦିରମାନଙ୍କରେ ଶିବଲିଙ୍ଗ ମାନ ଅପୂଜା ଅବସ୍ଥାରେ ପଡି ରହିଛନ୍ତି । (ବର୍ତ୍ତମାନ ଓଡ଼ିଶାରେ କୃଷ୍ଣ ପୂଜା, ଶିବ ପୂଜାକୁ ଅତିକ୍ରମ କରିଯାଇଛି) । ଲିଙ୍ଗ ସଂପର୍କରେ ମିଃ ଲାଓରିସ୍ ସୂଚାଇ ଦେଇ କହିଛନ୍ତି 'ଲିଙ୍ଗମ୍ ବା ମୁଖ୍ୟ ଆରାଧ ଦେବତା 'ଶିବ' ଖଣ୍ଡେ ସଲିଡ୍ କଳା ମୁଗୁନି ଶଙ୍କୁ ଆକାରର । ଚିକ୍କଣ ପଥର ଖଣ୍ଡଛଡା କିଛି ନୁହଁ । ଏହି ପ୍ରତୀକ ଆଉ ଖଣ୍ଡେ ଥାଳିଆ ଆକାରର କଳାମୁଗୁନି ପଥର ସହିତ (ଯୋନି) ସଂଯୋଗ ହୋଇ ଯାହାକୁ ଅର୍ଘ୍ୟ (ARGHYA) କୁହନ୍ତି ଠିଆ ହୋଇଥାଏ ।' ଦେଖିବାକୁ ଗଲେ ଏପରି ସାଂକେତିକ ମୂର୍ତ୍ତିରେ କୌଣସି ପ୍ରକାର ଅଶ୍ଳୀଳତା ଦେଖାଯାଏ ନାହିଁ ମାତ୍ର ମିଃ ମୁର୍, ଟିପ୍ପଣୀ ଦେଇ କହନ୍ତି "ଗ୍ରୀସ୍ ଏବଂ ଇଜିପ୍ଟର ରୁଚିହୀନ ବାସ୍ତବତା ସଦୃଶ ହୋଇନଥିଲେ ମଧ୍ୟ ହିନ୍ଦୁମାନଙ୍କ ମନ୍ଦିରରେ କାହା ମନରେ ପ୍ରତିକ୍ରିୟା ସୃଷ୍ଟି କଲାଭଳି ପୁରୁଷ ଯୌନାଙ୍ଗର ପ୍ରତୀକ 'ଲିଙ୍ଗ' ପୂଜାପାଏ ।' (ଚତୁର୍ଥ ଶତାବ୍ଦୀରେ ଖ୍ରୀଷ୍ଟିୟାନ ତୀର୍ଥଯାତ୍ରୀମାନେ ସହୀଦମାନଙ୍କର ସମାଧି ସ୍ଥଳକୁ ନିଜ ଓ ନିଜ ପରିବାରର ସ୍ୱାସ୍ଥ୍ୟ ସଂପଦ, ବନ୍ଧ୍ୟା ସ୍ତ୍ରୀର ପୁତ୍ର ସନ୍ତାନ ଲାଭ ଏବଂ ପିଲାମାନଙ୍କ ମଙ୍ଗଳ ପାଇଁ ଆଧ୍ୟାତ୍ମିକ ଓ ଲୌକିକ ଆଶୀର୍ବାଦ ପାଇଁ ପ୍ରାୟତଃ ଯାଇଥାନ୍ତି । ସେହିସବୁ ସମାଧି ମନ୍ଦିରର କାନ୍ଥ ଦେହରେ ବିଭିନ୍ନ ଅନୁଗ୍ରହ ପ୍ରାପ୍ତର ସଂକେତ ମାନ ଓହଳା ହୋଇଥାଏ । ସୁନା, ରୂପା ତିଆରି, ହାତ, ଗୋଡ, ଆଖି ଏ ସମସ୍ତ ପ୍ରତୀକ ମଧ୍ୟରେ ଦେଖାଯାଏ । ଏସବୁ ଛଡା ବିଭିନ୍ନ ପ୍ରକାର ଅଶ୍ଳୀଳ ଚିତ୍ର ମଧ୍ୟ ସମାଧି ମନ୍ଦିର ଗାତ୍ରରେ ଦେଖିବାକୁ ମିଳେ) ।

ଭୁବନେଶ୍ୱର ସହରରେ କେବଳ ଗୋଟିଏ ମାତ୍ର ମୁଖ୍ୟ ରାସ୍ତା ଅଛି, ଯାହାର ଦୁଇ ପାର୍ଶ୍ୱରେ ସ୍ଥାନୀୟ ଲୋକମାନଙ୍କର ଦୋକାନ, ପଣ୍ଡାମାନଙ୍କର ଘର, ମଠ ଏବଂ ଗୋଟିଏ ଛୋଟ ପୋଲିସ୍ ଷ୍ଟେସନ ଦେଖାଯାଏ । ରାସ୍ତାଟି ବେଶ୍ ପ୍ରସସ୍ତ ଓ ପରିଷ୍କାର । ମୁଖ୍ୟ ରାସ୍ତାକୁ ଛାଡିଦେଲେ ଜଣେ ଦେଖିବାକୁ ପାଇବ ଭାଙ୍ଗି ପଡିଥିବା ଘର, ଯାହାର ଚାରିପଟେ ଅନାବନା କଣ୍ଟା ଗଛର ଜଙ୍ଗଲ, ଯାହା ଭିତରକୁ ଥରେ ପଶିଲେ ବାହାରିବା କଷ୍ଟକର ହୋଇପଡେ । ୧୨୦୦ବର୍ଷ ପୂର୍ବେ ଉତ୍କଳବାସୀ (ଓଡ଼ିଶା ପୂର୍ବେ ହୁଗୁଳି ଠାରୁ କର୍ଣ୍ଣାଟକ ପର୍ଯ୍ୟନ୍ତ ବିସ୍ତୃତ ଥିଲା) ଶିବଭକ୍ତ ଥିଲେ । ଆଜି ସେହି ଉତ୍କଳୀୟମାନଙ୍କ ପ୍ରିୟ ପୂଜା ସ୍ଥାନ ଭଗ୍ନସ୍ତୂପରେ ପରିଣତ ହୋଇ ପଶୁ,ପକ୍ଷୀ, ସରିସୃପମାନଙ୍କ ଆଶ୍ରୟ ସ୍ଥଳ ହୋଇଛି । ସମୟ ସ୍ରୋତରେ ଭୁବନେଶ୍ୱରର ପୂର୍ବ ଗାରିମା, ଅବଲୁପ୍ତ ପ୍ରାୟ ହୋଇଯାଇଥିଲେ ମଧ୍ୟ ଭଗ୍ନ ମୁଗୁନି ପ୍ରସ୍ତରର କାରୁକାର୍ଯ୍ୟ ଏହାର ପ୍ରାଚୀନ ଗାରିମାକୁ ମନେ ପକାଇ ଦେଇଛି । ମୋଟାମୋଟି ଭାବେ ଏହି ସହରକୁ ଦେଖିଲା ପରେ ମୋର ପଢ଼ା ବହିରେ ପଢ଼ିଥିବା ଆରବ ଦେଶର ଗପକଥା ମନେପଡେ । ଯେଉଁ ଦେଶର ଲୋକମାନେ ଦିନେ ହଠାତ୍ ପଥର ପାଲଟି ଯାଇଥିଲେ, କାରଣ ପର୍ଯ୍ୟଟକମାନେ ଯେତେବେଳେ ସୁନ୍ଦର ପ୍ରାସାଦ, କାମ୍ଭା କୋଠରୀମାନ ବୁଲି ଦେଖି ଆଶ୍ଚର୍ଯ୍ୟ ହେଉଥିବେ, ସେତେବେଳେ ସେମାନଙ୍କର

ସଙ୍ଗେ କଥାବାର୍ତ୍ତା ହେବାକୁ କେହି ନଥିବେ, ସେମାନେ କେବଳ ନିଜ ନିଜର ପଦଧ୍ୱନୀ ଛଡା ଆଉ କାହାର ସ୍ୱର ଶୁଣିବାକୁ ପାଉନଥିବେ । ଆଜି ଯଦି ଭୁବନେଶ୍ୱର ତାର ପ୍ରାଚୀନ କୀର୍ତ୍ତିରାଜି ପାଇଁ ୟୁରୋପିୟାନ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିଥାଏ, ଭାରତୀୟ ତୀର୍ଥଯାତ୍ରୀମାନଙ୍କ ପାଇଁ ଏ ସ୍ଥାନ କମ୍ ମହତ୍ୱପୂର୍ଣ୍ଣ ନୁହଁ । କଲିକତାରୁ ଯେଉଁ ତୀର୍ଥଯାତ୍ରୀମାନେ ପୁରୀ ଆସନ୍ତି, ପୁରୀ ଯିବା ବାଟରେ ସେମାନେ ଆଗେ ଭୁବନେଶ୍ୱର ଦେଇ ଯାଇଥାନ୍ତି, କିନ୍ତୁ ଛତିଶଗଡ, ସମ୍ବଲପୁର, ମଧ୍ୟଭାରତ ଅଞ୍ଚଳରୁ ଆସୁଥିବା ଯାତ୍ରୀମାନେ ପୁରୀରୁ ଫେରନ୍ତା ବାଟରେ ଭୁବନେଶ୍ୱର ଦେଖିବାକୁ ଆସନ୍ତି ।

ପରିମଳ ବ୍ୟବସ୍ଥା ଦୃଷ୍ଟିରୁ ଭୁବନେଶ୍ୱର ପରିବେଶର ଅବସ୍ଥା ଏପରି କଦର୍ଯ୍ୟ ଯେ, ଏହି ଟାଉନ୍‌କୁ ପରିଷ୍କାର, ପରିଚ୍ଛନ୍ନ କରି ସୁନ୍ଦର କରିବା କଥା ଭାବିବା ବୃଥା । ପୁରୀ ପରି ଏଠାକାର ପଣ୍ଡାମାନେ ଟାଉନ୍‌ର ପରିଷ୍କାର ପରିଚ୍ଛନ୍ନତାକୁ ନିୟନ୍ତ୍ରଣ କରିଥାନ୍ତି । ଗୋଟିଏ ଦୃଷ୍ଟିରୁ ଭଲ ଯେ, ଯେଉଁମାନେ ଏଠାକୁ ଆସନ୍ତି, ସେମାନେ ଦିନେ ଦୁଇଦିନରୁ ଅଧିକା ସମୟ ଏଠାରେ ରହିନଥାନ୍ତି । ଭୁବନେଶ୍ୱର ଟାଉନର ଭଗ୍ନସ୍ତୁପ ଭିତରୁ ବାହାରି ଆସିଲା ପରେ ମାଇଲ୍ ମାଇଲ୍ ଧରି ସବୁଜ ଧାନକ୍ଷେତ ଦୃଷ୍ଟିଗୋଚର ହୁଏ ।

## ଭୁବନେଶ୍ୱରରୁ କଟକ

ଭୁବନେଶ୍ୱର ଛାଡି ମୁଁ ସରଦେଇପୁର ନିକଟକୁ ଆସିଥିଲି । ପିପିଲିଠାରୁ ସରଦେଇପୁରର ଦୂରତ୍ୱ ୬ ମାଇଲ୍ । ଜୁଲାଇ ୫ ତାରିଖ ସକାଳୁ କଟକରେ ପହଞ୍ଚିଥିଲି । କଟକର ସିଭିଲ୍ ସର୍ଜନ ମିଃ ଡବ୍ଲ୍ୟୁ.ଡବ୍ଲ୍ୟୁ.ଷ୍ଟିଓ୍ୱାର୍ଟ୍ ମୋତେ କଟକରେ ପାଛୋଟି ନେଇଥିଲେ । ଏଠାରେ ମୁଁ ୩ ଦିନ ରହିଥିଲି । ମୋର ୩ ଦିନ ରହଣି କାଳ ମଧ୍ୟରେ ମୁଁ କଟକ ଜେଲ୍, ପାଗଳାଖାନା, ଡାକ୍ତରଖାନା ଏବଂ ଅନ୍ନଛତ୍ର ପରିଦର୍ଶନ କରିଥିଲି । ତତ୍କାଳୀନ କଟକ କମିଶନର ମିଃ ରେଭେନ୍ସା, କେଉଁଝର ଗସ୍ତରେ ଯାଇଥିବା ଯୋଗୁଁ ଅଫିସିଏଟିଂ କମିଶନର ମିଃ ମଲୋନେ ଏବଂ ମାଜିଷ୍ଟ୍ରେଟ୍ ମିଃ ଆର୍ମଷ୍ଟ୍ରଙ୍ଗ ମୋ ସାଙ୍ଗରେ ଏସବୁ ସ୍ଥାନକୁ ଯାଇଥିଲେ ଏବଂ ସେସବୁ ସ୍ଥାନ ସମ୍ପର୍କରେ ଦରକାରୀ ଖବର ଦେଇଥିଲେ ।

'କଟକ' ମହାନଦୀ ଏବଂ କାଠଯୋଡି ନଦୀ ଦ୍ୱୟର ମଧ୍ୟସ୍ଥଳୀରେ ଅବସ୍ଥିତ । ୧୮୦୩ ମସିହାରେ କଟକ ବ୍ରିଟିଶ ଅଧିନକୁ ଆସିଥିଲା । ଗଙ୍ଗ ବଂଶର ଦ୍ୱିତୀୟ ମହାରାଜାଙ୍କର ୫ଟି କଟକ ବା ରାଜପ୍ରାସାଦ ମଧ୍ୟରୁ ଏଠି ଗୋଟିଏ ପ୍ରାସାଦ ଥିଲା । ଏହାର ପୁରାତନ ନାମ 'ବିଡାନାସୀ କଟକ' ଏବଂ ୯୮୯ ମସିହାରେ ଏହି ସହର ପ୍ରତିଷ୍ଠା ହୋଇଥିଲା । ଏହି ଟାଉନ୍ ମଧ୍ୟରେ ଥିବା ପୁରୁଣା ଦୁର୍ଗ, ବାରବାଟୀ ଦୁର୍ଗକୁ ଗଙ୍ଗବଂଶୀ ରାଜା ଅନଙ୍ଗଭୀମ ଦେଓ ୧୪ଶହ ଶତାବ୍ଦୀରେ ନିର୍ମାଣ କରିଥିଲେ । ଏହି ମହାରାଜା ପୁରୀର ଜଗନ୍ନାଥ ମନ୍ଦିର ୩୦ରୁ ୪୦ଲକ୍ଷ ଟଙ୍କା ଖର୍ଚ୍ଚକରି ନିର୍ମାଣ କରିଥିଲେ । (ପୁରୀ ମନ୍ଦିର ୧୧୯୬ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିଲା । ଏହି ମନ୍ଦିରର ପ୍ରତିଷ୍ଠା ଦିବସ

ବହୁ ଆଡମ୍ବରରେ ପାଳନ କରାଯାଇଥିଲା ।) ରାଜା ଅନଙ୍ଗଭୀମ ଦେଓ ବ୍ରହ୍ମହତ୍ୟା ଦୋଷରୁ ମୁକ୍ତି ପାଇବା ପାଇଁ ଏହିପରି ମନ୍ଦିର, ଦୁର୍ଗ ଏବଂ ବହୁ ଜନହିତକର କାର୍ଯ୍ୟ ତାଙ୍କ ରାଜତ୍ୱ ସମୟରେ କରିଥିଲେ ।

ଜୁଲାଇ ୬ ତାରିଖ ଦିନ ମୁଁ ଡକ୍ଟର ଷ୍ଟୁଓ୍ବାର୍ଟଙ୍କ ସଂଗେ କଟକ ଅନାଥାଶ୍ରମ ଦେଖିବାକୁ ଯାଇଥିଲି । ଗୋଟିଏ ଅନାଥାଶ୍ରମ ପୁଅ ଏବଂ ଅନ୍ୟଟି ଝିଅମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଦଶ, ବାରବର୍ଷ ତଳେ ଏସ୍କ୍ୱାର, ଜେ.ପିଟନ, ପିଟନ ସାହିରେ ପୁଅମାନଙ୍କ ଅନାଥାଶ୍ରମ ପାଇଁ ଦୁଇଟି ଘର, ବାପିଷ୍ଟି ମିଶନକୁ ଦାନ କରିଥିଲେ । ଅନାଥ ଶିଶୁମାନଙ୍କ ପାଇଁ ଏହି ଦୁଇଟି ଆଶ୍ରମ ନିଶ୍ଚିତ ଭାବେ ନିରାପଦ ଆଶ୍ରୟସ୍ଥଳୀ । ବାପା-ମା' ଛେଉଣ୍ଡ, ବନ୍ଧୁବାନ୍ଧବହୀନ ଏହି ଶିଶୁମାନେ କେଉଁଠି ଗଛମୂଳେ କିମ୍ବା ନଦୀକୂଳରେ ପଡି ପ୍ରାଣ ହରାଇଥାନ୍ତେ । ଅନାଥାଶ୍ରମ ଭିତରେ ଥିବା ପିଲାମାନଙ୍କର ରହିବା ଘର, ପାଇଖାନା, ଖେଳପଡିଆ, ଡାକ୍ତରଖାନା, କାରଖାନା ସବୁ ବୁଲି ଦେଖିଥିଲି । ଅନ୍ତେବାସୀ ଏହି ଶିଶୁମାନେ ପରିଷ୍କାର ପରିଚ୍ଛନ୍ନ ଲୁଗାପଟା ପିନ୍ଧିଥିଲେ । ସେମାନଙ୍କ ମୁହଁରେ ହସ ଫୁଟି ଉଠୁଥିଲା । ମୁଁ ଯାହା ଅନୁଭବ କଲି ଏଠି ଶିଶୁମାନେ ଶୃଙ୍ଖଳା ମଧ୍ୟରେ ରହିବା ବେଳେ ସେମାନଙ୍କ ତଦାରଖ କରୁଥିବା ବ୍ୟକ୍ତିମାନେ ଖୁବ୍ ଯତ୍ନଶୀଳ ଏବଂ ଶିଶୁମାନଙ୍କର ଆବଶ୍ୟକତା ପ୍ରତି ଯଥେଷ୍ଟ ସଚେତନ ଥିଲେ । ଏହି ଦୁଇଟି ଅନୁଷ୍ଠାନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ପିଲାମାନଙ୍କୁ ପ୍ରଥମରୁ ପରିଷ୍କାର, ପରିଚ୍ଛନ୍ନ ଭାବେ ରହିବା ପାଇଁ ଶିକ୍ଷା ଦେବା, ସତ୍ୟ ନିଷ୍ଠାର ସହ ଜୀବନଯାପନ କରିବା । ସେହିପରି ଝିଅମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ଦେଇ ଭବିଷ୍ୟତରେ ଜଣେ ଉପଯୁକ୍ତ ମହିଳା ଭାବେ ପରିବାର ତଥା ସମାଜର ମଙ୍ଗଳ ପାଇଁ କାର୍ଯ୍ୟ କରିବା । ଏଠି ଝିଅମାନଙ୍କୁ ସିଲେଇ, ବୁଣାବୁଣି କରିବା, ଲୁଗାପଟା ବୁଣିବା ପ୍ରଭୃତି କାର୍ଯ୍ୟ ଶିକ୍ଷା ଦିଆଯାଏ । ସେମାନେ ମଧ୍ୟ ଲେଖାପଢ଼ା କରିବା ସଙ୍ଗେ ଅଙ୍କ କଷିବା, ଗୀତ ଗାଇବା ମଧ୍ୟ ଶିଖିଥାନ୍ତି । ପୁଅମାନଙ୍କୁ ସେମାନେ ବଡ ହେଲେ ଯେପରି ରୋଜଗାରକ୍ଷମ ହୋଇ ଉପଯୁକ୍ତ ମଣିଷ ହୋଇପାରିବେ ସେ ସମସ୍ତ ଶିକ୍ଷା ଦିଆଯାଏ । ମୁଁ ଦେଖିଲି, ସେମାନଙ୍କ ମଧ୍ୟରୁ କେତେକ ବଢ଼େଇ, କୁମ୍ଭାର, ତନ୍ତୀ,ମାଳି, ଟେଲର, ରୋଷେୟା, ଏପରିକି ଆଉ କେତେକ ଲେଖାଲେଖି କରିବା ସଙ୍ଗେ ଛାପାଖାନାରେ କାର୍ଯ୍ୟ କରୁଛନ୍ତି । ଗୋଟିଏ ଗୃହରେ ଦେଖିଲି, କେତେକ ଅନ୍ତେବାସୀ ହାତୀ ଦାନ୍ତର ସୂକ୍ଷ୍ମ କାମ ମଧ୍ୟ କରୁଛନ୍ତି । ସେମାନଙ୍କ ଭିତରେ ଜାତି, ଭେଦ ମନୋଭାବ ନାହିଁ । ମିଶନାରୀ ପ୍ରଶିକ୍ଷକମାନେ ସେମାନଙ୍କ ମଧ୍ୟରୁ ଯେଉଁମାନେ ଅଧିକ ବୁଦ୍ଧିମାନ ସେମାନଙ୍କୁ ଇଂରାଜୀ ଭାଷା ଶିକ୍ଷା ଦେଇ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବା ପାଇଁ ପ୍ରଶିକ୍ଷଣ ବ୍ୟବସ୍ଥା କରିଛନ୍ତି । ସବୁ କ୍ଷେତ୍ରରେ ଏହି ଅନାଥ ଶିଶୁମାନଙ୍କୁ ମିଶନାରୀମାନେ ଉଦାରତା ତଥା ଆନ୍ତରିକତାର ସହ ଶିକ୍ଷା ଦେଉଛନ୍ତି । ପିତା-ମାତା ଏବଂ ନିକଟତମ ବନ୍ଧୁ, ବାନ୍ଧବ, ଶିଶୁମାନଙ୍କର ଯେପରି ଯତ୍ନ ନେଇଥାନ୍ତି, ଏମାନେ କେଉଁ ଗୁଣରେ ତାଙ୍କଠାରୁ କମ୍ ଯତ୍ନ ନିଅନ୍ତିନି ।

## କଟକରେ ଅନାଥାଶ୍ରମର ଇତିହାସ

୧୮୩୦ ମସିହା ମେ' ମାସ ୩ ତାରିଖ ଦିନ ପ୍ରଥମେ କଟକଠାରେ ୬ଟି ବାଳକ ଓ ୩ଟି ବାଳିକାଙ୍କୁ ନେଇ ଅନାଥାଶ୍ରମ ଆରମ୍ଭ ହୋଇଥିଲା । ଦୁର୍ଭିକ୍ଷ ସମୟରେ ଏହି ସଂଖ୍ୟା ଯଥେଷ୍ଟ ପରିମାଣରେ ବଢ଼ି ଯାଇଛି । ପରବର୍ତ୍ତୀ ବର୍ଷମାନଙ୍କରେ ବୌଦ୍ଧ ଓ ଘୁମୁସର ଅଞ୍ଚଳର କନ୍ଧମାନଙ୍କ ନରବଳୀ ପ୍ରଥା, ସାରା ସଭ୍ୟ ଜଗତର ଲୋକଲୋଚନକୁ ଆସିଥିଲା । ବେଙ୍ଗଲ ସରକାର ପ୍ରଥମଥର ପାଇଁ ପ୍ରଥମ ଦଫାରେ ୧୭ଜଣ ଶିଶୁଙ୍କୁ(ମେରିଆ) ନରବଳୀ ଦେବା ପୂର୍ବରୁ ରକ୍ଷାକରି ଏହି ଅନାଥାଶ୍ରମରେ ଖୋଲା ଯାଇଥିବା ବିଦ୍ୟାଳୟକୁ ଆଣିଥିଲେ । ୧୭ଜଣ ଶିଶୁଙ୍କ ମଧ୍ୟରେ ୧୪ଜଣ ବାଳକ ଓ ୩ଜଣ ବାଳିକା ଥିଲେ । 'ଏହି ଶରଣ ସ୍ଥାନ ପ୍ରତିଷ୍ଠା ହେବାର ୧୦ବର୍ଷ ପରେ ଦେଖାଗଲା ଯେ, ସର୍ବମୋଟ ୨୩୦ଜଣ ଶିଶୁ, କିଶୋର, କିଶୋରୀ ଏଠାରେ ଆଶ୍ରୟ ନେଇଥିଲେ ଏବଂ ଶିକ୍ଷାଲାଭ କରିଥିଲେ । ୧୮୩୭ ମସିହାରୁ ୧୮୬୧ ମସିହା ମଧ୍ୟରେ ୮୯ଜଣ 'ମେରିଆ'ଙ୍କୁ ଉଦ୍ଧାର କରି ଏହି ଦୁଇଟି ଆଶ୍ରୟସ୍ଥଳୀକୁ ଅଣାଯାଇଥିଲା । ଯେଉଁ ନିରୀହ ଶିଶୁମାନଙ୍କର ରକ୍ତ, ମାଂସ, ଘୁମୁସର ଅଞ୍ଚଳ ହଳଦୀ କିଆରୀର ମାଟିକୁ ବଳିଯାନ କରିଥାନ୍ତା, କେବଳ ଏହିମାନଙ୍କ ମହତ କାର୍ଯ୍ୟ ଯୋଗୁଁ ସେମାନଙ୍କୁ ଉଦ୍ଧାର କରାଯାଇ ଏହି ଆଶ୍ରୟ ସ୍ଥଳକୁ ଅଣାଯାଇ ପାରିଥିଲା ।'

କନ୍ଧମାନେ ତାଙ୍କର ଦେବୀ 'ଭୁବନୀ'ଙ୍କୁ ଆବାହନ କରି ବଳୀ ଦେଲାବେଳେ ନିମ୍ନୋକ୍ତ ମନ୍ତ୍ର ଉଚ୍ଚାରଣ କରୁଥିଲେ :-

Hail, mother, hail ! goddesss Bhobanee
Lo! we present a sacrifice to thee!
with music's various sounds, on festive day
Lo! the, we worship, and thy rites obey.
O! all ye gods and goddesses give ear and be propitious to our earnest prayer.
Blooming with tender flesh and flushed with blood
No sire, no matron says this youth is mine,
His flesh, his blood, his life, his all are there.
Without the pale of sacred wedlock throwny,
We took and fed him for they rites alone.
Now lo! with rites from all pollution free,
We offer him, O, Bhobanee
Taste now, this offering
And bid us Joyful.

ଉପରୋକ୍ତ ପଦ୍ୟଟି କଟକର ରେଭେରେଣ୍ଡ ମିଃ ଲେସି, ଗୋଟିଏ କନ୍ଧ ବାଳକ ଗାଇବା ବେଳେ ତାଙ୍କ ଭାଷାରୁ ଇଂରାଜୀରେ ଅନୁବାଦ କରିଥିଲେ । ଯେଉଁ ବାଳକ ଏହି ପଦ୍ୟଟିକୁ ବୋଲୁଥିଲା, ସେ ମଧ୍ୟ ବଳୀ ଉଦ୍ଦେଶ୍ୟରେ ରଖାଯାଇଥିଲା । ମାତ୍ର ଜଣେ ଇଂରେଜ ଅଫିସର ତାକୁ କନ୍ଧମାନଙ୍କ ହାତରୁ ଉଦ୍ଧାର କରିଥିଲେ ।

ମେରିଆମାନଙ୍କ ଉଦ୍ଧାର କାର୍ଯ୍ୟରେ ସରକାର ସବୁ ପ୍ରକାର ସାହାଯ୍ୟ, ମିଶନାରୀମାନଙ୍କୁ ଯୋଗାଇ ଦେଉଥିଲେ ।

ଦୁର୍ଭିକ୍ଷ ପଡିଥିବା ବେଳେ ମିଶନାରୀମାନେ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ ମାସ ମାସ ଧରି ରିଲିଫ କାର୍ଯ୍ୟ କରିଥିଲେ । ସେମାନେ ଏହି ଅସହାୟ ବୁଭୁକ୍ଷୁ ଜନତାଙ୍କୁ ଖାଦ୍ୟ ଯୋଗାଇ ଦେବା ସଂଗେ ସେମାନଙ୍କ ପାଖେ ବନ୍ଧୁତ୍ୱର ହାତ ବଢ଼ାଇଥିଲେ । ଫାମିନ ରିଲିଫ କମିଟି ସହିତ ଏମାନେ ହାତ ମିଳାଇ ବହୁ ଭୋକିଲା ଲୋକଙ୍କୁ ମୃତ୍ୟୁ ମୁଖରୁ ଉଦ୍ଧାର କରିଥିଲେ । ପିତା, ମାତା, ବନ୍ଧୁ ସ୍ୱଜନହୀନ ଶିଶୁମାନେ ଯେତେବେଳେ ଏମାନଙ୍କ ଦ୍ୱାରସ୍ଥ ହୋଇଛନ୍ତି, ଏମାନେ ସ୍ନେହ, ଶ୍ରଦ୍ଧାର ସହ ସେମାନଙ୍କୁ ଆଶ୍ରୟ ଦେଇଛନ୍ତି । ମାତୃହୀନ, ପିତୃହୀନ ବାଳକ ବାଳିକାମାନେ ଭାଗ୍ୟର ବିଡମ୍ବନା ଯୋଗୁଁ ଯେତେବେଳେ ତାଙ୍କର ସାହାଯ୍ୟ ଭିକ୍ଷା କରିଛନ୍ତି, ସେମାନେ ମିଶନାରୀମାନଙ୍କ ପାଖରୁ ପିତା, ମାତାର ସ୍ନେହ ପାଇଛନ୍ତି । ପିତୃମାତୃହୀନ ଶିଶୁମାନେ ଏମାନଙ୍କ ତତ୍ତ୍ୱାବଧାନରେ ରହିଥିବା ବେଳେ ସରକାରଙ୍କ ନିକଟରୁ ମାସକୁ ୩ଟଙ୍କା ଲେଖାଏଁ ଅନୁଦାନ ପାଉଥିଲେ । ଯେ ନିଜର ଜୀବନ ଧାରଣ ପାଇଁ ଜୀବିକା ଅର୍ଜନ କରିବାକୁ ଚାହୁଁଥିଲା, ତାଙ୍କୁ ୨୦ରୁ ୩୦ ଟଙ୍କା ପର୍ଯ୍ୟନ୍ତ ଏକକାଳୀନ ସାହାଯ୍ୟ ଦିଆଯାଉଥିଲା । ମୁଁ ନିଜେ ସ୍ୱଚକ୍ଷୁରେ ଦେଖିଛି, ଏହି ଅନାଥ ଶିଶୁମାନେ ମିଶନାରୀମାନଙ୍କ ପାଖରୁ କି ପ୍ରକାର ଅକୁଣ୍ଠିତ ସ୍ନେହ, ଶ୍ରଦ୍ଧା ପାଇ ଆନନ୍ଦରେ ରହୁଥିଲେ, ସେମାନଙ୍କ ମୁହଁରେ ଅଫୁରନ୍ତ ହସ ଦେଖି ମୁଁ ଆନନ୍ଦ ପାଉଛି । ଆଗରୁ କହିଛି, ଭବିଷ୍ୟତ ଜୀବନରେ ଜୀବିକା ଉପାର୍ଜନ ପାଇଁ ଏମାନଙ୍କୁ ମଧ୍ୟ ଏହି ଆଶ୍ରୟସ୍ଥଳୀରେ ବିଭିନ୍ନ ପ୍ରକାର ପ୍ରଶିକ୍ଷଣ ଦିଆଯାଇଥାଏ । କାହାକୁ ଜ୍ୱର, ବ୍ୟାଧି ହେଲେ ମିଶନାରୀମାନେ ନିଜର ଝିଅ, ପୁଅ ଭଳି ସେମାନଙ୍କର ସେବା ଶୁଶ୍ରୂଷା କରୁଥିଲେ । ମୁଁ ଏସବୁ ଲୋକହିତକର କାର୍ଯ୍ୟ ଦେଖି ଅଭିଭୂତ ହୋଇପଡିଥିଲି । ଓଡ଼ିଶାର ବାପିଷ୍ଟ ମିଶନାରୀମାନଙ୍କ ଜନହିତକର କଲ୍ୟାଣ କାର୍ଯ୍ୟ, ଇଂରେଜ ଶାସନ ତଥା ଇଂରେଜ ଜାତି ପାଇଁ ପ୍ରଭୁତ ସୁନାମ ଅର୍ଜନ କରିପାରିଛି । ସେମାନଙ୍କ ମଧ୍ୟରୁ ଜଣେ କହିବା ଶୁଣିଥିଲି - 'ସରକାର ଆମ ପାଇଁ ସବୁ କିଛି ।' 'ପ୍ରକୃତରେ ତାହା ସତ୍ୟ' ।

ଓଡ଼ିଶାରେ ମିଶନାରୀମାନେ ଲୋକହିତକର କାର୍ଯ୍ୟ କରିବା ସଂଗେ ଶିକ୍ଷା ଓ ସଭ୍ୟତାର ଅଗ୍ରଦୂତ ଥିଲେ । ଓଡ଼ିଶାରେ ପରିମଳ ବ୍ୟବସ୍ଥାର ପ୍ରସାରରେ ସେମାନେ ମୁଖ୍ୟ ଭୂମିକା ଗ୍ରହଣ କରିଥିବାବେଳେ ରୋଗୀମାନଙ୍କ ପାଇଁ ଡାକ୍ତର, ବସ୍ତ୍ରହୀନମାନଙ୍କ ପାଇଁ ବସ୍ତ୍ରଦାତା, ଭୋକିଲାମାନଙ୍କ ପାଇଁ ଅନ୍ନଦାତା, ବାସହୀନମାନଙ୍କ ପାଇଁ ଆଶ୍ରୟଦାତା,

ଅନାଥ, ବିଧବା ବନ୍ଧୁହୀନମାନଙ୍କ ପାଇଁ ଅଭିଭାବକ ଏବଂ ବନ୍ଧୁ ଥିଲେ । ସାଧାରଣ ଜନଜୀବନ ସଂପର୍କରେ ସ୍ଥାନୀୟ ଭାଷା ସଂସ୍କୃତି ବିଷୟରେ ସେମାନଙ୍କର ଯଥୋଚିତ ଜ୍ଞାନ ମଧ୍ୟ ଥିଲା । ବହୁ ସମୟରେ ସେମାନେ ଶିଶୁମାନଙ୍କୁ ଅନାହାର, ବେଶ୍ୟାବୃତ୍ତି, ଆତ୍ମାହୁତି ପ୍ରଭୃତି ଜଘନ୍ୟ ଅବସ୍ଥାରୁ ଉଦ୍ଧାର କରିଛନ୍ତି । ସେମାନଙ୍କର ମହତ୍ କାର୍ଯ୍ୟ କରିବାର ମନବୃତ୍ତି ଥିବା ଯୋଗୁଁ ସରକାର ସେମାନଙ୍କୁ ଅଧିକ ଆର୍ଥିକ ସାହାଯ୍ୟ ଦେବା ଦରକାର । ଓଡ଼ିଶାର ଦୁରାବସ୍ଥା ଦୂର କରିବା ଲାଗି ସାହାଯ୍ୟ ଅନିବାର୍ଯ୍ୟ । ମୁଁ ଏ ସଂପର୍କରେ ଅଧିକା ଲେଖିବାର ଉଦ୍ଦେଶ୍ୟ ହେଲା, ମୁଁ ବିଶ୍ୱାସ କରେ, ଏହି ମିଶନାରୀମାନେ ଯେପରି ମହତ୍ୱପୂର୍ଣ୍ଣ କାର୍ଯ୍ୟ କରିଛନ୍ତି ଏବଂ କରୁଛନ୍ତି, ସେମାନେ ଭବିଷ୍ୟତରେ ସରକାରଙ୍କ ଦାନଶୀଳତାର ତତ୍ତ୍ୱାବଧାରକ ଭାବେ କାର୍ଯ୍ୟ କରିବେ । ଆଗରୁ କୁହାଯାଇଛି, ଏମାନେ ଦାନ ସୂତ୍ରରେ ଯେଉଁ ଅର୍ଥ ପାଇଥାନ୍ତି, ସେ ସମସ୍ତ ଅର୍ଥର ପଇସାଟିଏ ପର୍ଯ୍ୟନ୍ତ ସେମାନେ ଏହି କାର୍ଯ୍ୟରେ ଲଗାଇଥାନ୍ତି ଏବଂ ସମସ୍ତ ଖର୍ଚ୍ଚର କଡାଗଣ୍ଡା ପର୍ଯ୍ୟନ୍ତ ହିସାବ ମଧ୍ୟ ରଖିଥାନ୍ତି ।

ମୁଁ କଟକରେ ଅନାଥାଶ୍ରମ ଦେଖିବାକୁ ଯାଇଥିବା ବେଳେ ଦେଖିଲି ରେଭରେଣ୍ଡ ମିଃ ମିଲରଙ୍କ ତତ୍ତ୍ୱାବଧାନରେ ପିଟନ ସାହି ଅନାଥାଶ୍ରମରେ ୩୨୦ଜଣ ବାଳକ ଓ ପିଟନ ସାହିକୁ ଲାଗି ଅନ୍ୟ ଅନାଥାଶ୍ରମରେ ମିସେସ୍ ଓ ମିଃ ବକଲଙ୍କ ତତ୍ତ୍ୱାବଧାନରେ ୩୨୦ଜଣ ଝିଅ ଥିଲେ । ମିସ୍ ଗୁଇନାଡ୍ ୧୮୦ଜଣ ଝିଅଙ୍କର ଦାୟିତ୍ୱ ନେଇଥାନ୍ତି । ଏମାନଙ୍କ ଛଡା ରେଭେରେଣ୍ଡ ମିଃ ଗଡ୍‌ବେ, ମିସେସ୍ ଗଓ୍ୱାଡବେ ଏବଂ ମିସ୍ ପାକରଙ୍କ ଦାୟିତ୍ୱରେ ପିପିଲି ଅନାଥାଶ୍ରମରେ ୪୦୦ ଶିଶୁ ଥିଲେ । ସର୍ବମୋଟ ୧୨୨୦ ଜଣ ଶିଶୁ ଏମାନଙ୍କର ଦାୟିତ୍ୱରେ ସୁସ୍ଥ ରକ୍ଷଣାବେକ୍ଷଣ ବ୍ୟବସ୍ଥା ମଧ୍ୟରେ ରହୁଥିଲେ । କଟକ ଏବଂ ପିପିଲି ଅନାଥାଶ୍ରମ ଛଡା ବରହମ୍ପୁର ଓ ବାଲେଶ୍ୱର ଠାରେ ଅନାଥାଶ୍ରମ ଅଛି, ମାତ୍ର ସେଠାରେ କେତେ ସଂଖ୍ୟକ ଅନାଥ ପିଲାମାନେ ଅଛନ୍ତି, ତାର ପରିସଂଖ୍ୟାନ ମୋ' ପାଖରେ ନାହିଁ ।

ମୁଁ ଓଡ଼ିଶା ଛାଡିବାର ଅଳ୍ପଦିନ ପରେ ମିଃ ଗଡ୍‌ବେ ମୁଁ ଯାହାଙ୍କୁ ଓଡ଼ିଶାରେ ସାକ୍ଷାତ କରିଥିଲି, ସେ ଇହଧାମ ତ୍ୟାଗ କରିଥିଲେ । ତାଙ୍କର ମିଶନ ଓଡ଼ିଶାର ପାର୍ବତ୍ୟାଞ୍ଚଳ, କନ୍ଧମାନଙ୍କ ଅଞ୍ଚଳରେ ବହୁଦିନ ଧରି କାର୍ଯ୍ୟ କରିଥିଲା । ରସୁଲକୋଣ୍ଡା, ମିଃ ଗଡ୍‌ବେଙ୍କର ମୁଖ୍ୟ କାର୍ଯ୍ୟସ୍ଥଳୀ ଥିଲେ ମଧ୍ୟ ସେ ସେହିଠାରୁ ଦୁର୍ଗମ ପାର୍ବତ୍ୟାଞ୍ଚଳରେ ବସବାସ କରୁଥିବା ଅସଭ୍ୟ, ମଦ୍ୟପ, ଅପରିଷ୍କାର ଆଦିବାସୀମାନଙ୍କ ମଙ୍ଗଳ ପାଇଁ ତାଙ୍କର ସମସ୍ତ ଶକ୍ତି ଖଟାଇ କାର୍ଯ୍ୟ କରୁଥିଲେ । ସେମାନଙ୍କୁ ସଭ୍ୟ ଜଗତ ସଂପର୍କରେ ସଚେତନ କରିବା, ସେମାନଙ୍କର ବର୍ବରୋଚିତ କାର୍ଯ୍ୟକୁ ସରଳ, ସୁନ୍ଦର କରିବା ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ସେମାନଙ୍କ ପାଇଁ ସେ ତାଙ୍କର ଜୀବନ ଉତ୍ସର୍ଗ କରି ମହାଆନନ୍ଦ ପାଉଥିଲେ । ଜଣେ ଉତ୍ତମ ବ୍ୟକ୍ତି ଭାବେ ଓଡ଼ିଶାର ବାପିଷ୍ଟି ମିଶନରେ କାର୍ଯ୍ୟ କରୁଥିବା ବହୁ ମିଶିନାରୀମାନଙ୍କ ମଧ୍ୟରୁ ମିଃ ଗଡୱେ, ଓଡ଼ିଶାବାସୀଙ୍କ ପାଇଁ ଯେଉଁ ଉତ୍ସର୍ଗୀକୃତ କାର୍ଯ୍ୟକରି

ଯାଇଛନ୍ତି ତାହା ସବୁଦିନ ପାଇଁ ଜାଜ୍ୱଲ୍ୟମାନ ହୋଇ ରହିବ । ସେମାନଙ୍କର ପ୍ରତ୍ୟେକ କାର୍ଯ୍ୟ ଓଡ଼ିଆମାନଙ୍କ କଲ୍ୟାଣ ପାଇଁ ଉଦ୍ଦିଷ୍ଟ ଥିଲା । ଏହି କାରଣରୁ ମୁଁ ସେମାନଙ୍କର ଉତ୍ତମ କାର୍ଯ୍ୟ ପାଇଁ କିଛି ପୃଷ୍ଠା ଦେଇଥିଲି ।

## କଟକ ଓ କଟକର ନିକଟବର୍ତ୍ତୀ ଅଞ୍ଚଳରେ ଏ ବର୍ଷ ହଇଜାରେ ମୃତ୍ୟୁବରଣ କରିଥିବାର ପରିସଂଖ୍ୟାନ

ମୋଟାମୋଟି ଭାବେ ଏହି ଋତୁରେ ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିବା ତୀର୍ଥଯାତ୍ରୀଙ୍କ ସଂଖ୍ୟା ବିଗତ ବର୍ଷମାନଙ୍କ ତୁଳନାରେ ସେପରି କିଛି ବେଶୀ ନୁହେଁ । ଏଠାକାର ବାସିନ୍ଦା ଓ ପୋଲିସ୍ ଉଭୟ ଏଥିରେ ଏକମତ ।

କଟକ ବାଟ ଦେଇ ତୀର୍ଥଯାତ୍ରୀମାନେ ଗଲାବେଳେ ରାସ୍ତାକଡ ରାଣୀହାଟ, ମଙ୍ଗଳାବାଗ ଏବଂ ବକ୍ସିବଜାର ଗାଁ ଦେଇ ଯାଇଥାନ୍ତି । ଏବର୍ଷ ହଇଜା, ପୋଲିସ ରିପୋର୍ଟ ଅନୁସାରେ ପ୍ରଥମେ ଜୁନ୍ ମାସ ୨୯ ତାରିଖ ଦିନ ବାଲୁବଜାରରୁ ଆରମ୍ଭ ହୋଇଥିଲା । ସେହିଦିନ ଜଣେ ମହିଳା ହଇଜାରେ ମୃତ୍ୟୁବରଣ କଲେ । ତା'ପରେ ୩୦ ତାରିଖ କିମ୍ବା ଜୁଲାଇ ୧ ଏବଂ ୨ ତାରିଖରେ କେହି ମରିଥିବା ରିପୋର୍ଟ ହୋଇନଥିଲା । କିନ୍ତୁ ଜୁଲାଇ ୩ ତାରିଖ ଦିନ ଚାନ୍ଦିନୀଚୌକର ଶିବ ମିଶ୍ର ନାମରେ ଜଣେ ଲୋକ ହଇଜାରେ ମଲେ ଏବଂ ସେହିଦିନ ଆଉ ଗୋଟେ ବଜାରରେ ଭିକାରୀ ସିଂହ ଏବଂ ସରବେଓ୍ୱା ହଇଜାରେ ମରିଥିଲେ । ସେହିଦିନ ବକ୍ସିବଜାର ପାଖ ଓଝା ସାହିରୁ ଜଣେ ଏବଂ ମଙ୍ଗଳାବାଗ ଅଞ୍ଚଳରୁ ଜଣେ ମୃତ୍ୟୁବରଣ କରିଥିଲେ । ପରେ ପରେ ଜୁଲାଇ ୪ ତାରିଖ ଦିନ ଯୋବ୍ରା ଅଞ୍ଚଳରୁ ଜଣେ ଏବଂ ପରଦିନ ଆଉଜଣେ ମଲେ । ଜୁନ୍ ୨୯ରୁ ଜୁଲାଇ ୬ ତାରିଖ ମଧ୍ୟରେ କଟକରୁ ୧୧ଜଣ ଲୋକ ହଇଜାରେ ମରିଥିଲେ । ସେହି ସମୟ ମଧ୍ୟରେ କଟକର ଆଖପାଖ ଅଞ୍ଚଳରୁ ଆଉ ୧୩ଜଣ ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିଲେ । ସମୁଦାୟ ୨୪ଜଣ ବ୍ୟକ୍ତି ମୃତ୍ୟୁବରଣ କରିବା କଥା ତାଙ୍କ ରିପୋର୍ଟରେ ଦର୍ଶାଇଥିବା ବେଳେ ପ୍ରକୃତରେ କେତେ ଲୋକ ହଇଜାରେ ପୀଡିତ ହୋଇ ସୁସ୍ଥ ହୋଇଥିଲେ ସେ ସଂପର୍କରେ କିଛି ବିବରଣୀ ଦେଇନଥିଲେ । ମୁଁ ପଚରା ଉଚରା କରି ଜାଣିଲି ବହୁ ବ୍ୟକ୍ତି ହଇଜାରେ ପୀଡିତ ହୋଇ ଶୀଘ୍ର ଭଲ ହୋଇଯାଇଥିଲେ ।

ମୁଁ ଅନୁରୋଧ କଲାପରେ ଡକ୍ଟର ଷ୍ଟିଓ୍ୱାର୍ଟ କଟକର ଏସ୍‌ପି ମିଃ ଲେସିଙ୍କ ପାଖକୁ ଗୋଟିଏ ଚିଠି ଲେଖି ଏ ସଂପର୍କରେ ବିଷଦ ବିବରଣୀ ଦେବା ପାଇଁ ଅନୁରୋଧ କରିଥିଲେ । କଟକଠାରୁ ୧୦ ମାଇଲ୍ ଉଭୟ ଦିଗ ରାସ୍ତା ଭିତରେ ଜୁନ୍ ମାସ ୨ ତାରିଖରୁ ମାସ ଶେଷ ପର୍ଯ୍ୟନ୍ତ ୩୭ଜଣ ହଇଜାରେ ମୃତ୍ୟୁବରଣ କରିଥିବା ଖବର ମିଳିଥିଲା ବେଳେ କଟକର ଚାଉଳିଆଗଞ୍ଜ ହସ୍‌ପିଟାଲରେ ଜୁନ୍ ୨ରୁ ଜୁନ୍ ୨୪ ତାରିଖ ମଧ୍ୟରେ ୨୧ଜଣ ହଇଜା ରୋଗୀ ଚିକିତ୍ସିତ ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରୁ ୧୧ଜଣ ମୃତ୍ୟୁବରଣ କରିଥିଲେ ।

ଚାଉଳିଆଗଞ୍ଜ ହସ୍‌ପିଟାଲ, ପ୍ରଥମେ ଫ୍ୟାମିନ ରିଲିଫ ହସ୍‌ପିଟାଲ ଭାବେ ଏହି ଅନୁଷ୍ଠାନଟି ଆରମ୍ଭ ହୋଇଥିଲା । ବର୍ତ୍ତମାନ ସିଭିଲ୍ ଡିସ୍‌ପେନସାରୀର ଏହା ଏକ ବ୍ରାଞ୍ଚ୍ ହସ୍‌ପିଟାଲ । ମିଃ ଷ୍ଟିଓ୍ବାର୍ଟଙ୍କ ସଂଗେ ମୁଁ ଏହି ହସ୍‌ପିଟାଲ ପରିଦର୍ଶନ କରିଥିଲି । ପ୍ରବଳ ବର୍ଷା ଯୋଗୁଁ ଏହାର ଅବସ୍ଥା ଶୋଚନୀୟ ହୋଇପଡିଲାଣି । ସହର ବାହାରେ ଏହି ହସ୍‌ପିଟାଲର ଆବଶ୍ୟକତା ଥିବା ଦୃଷ୍ଟିରୁ ମିଃ ଷ୍ଟିଓ୍ବାର୍ଟ ଏହାର ପୁନରୁଦ୍ଧାର ପାଇଁ ସ୍ଥାନୀୟ ପ୍ରଶାସନର ସାହାଯ୍ୟ ଚାହିଁଛନ୍ତି । ସହର ବାହାରେ ଏହି ହସ୍‌ପିଟାଲର ଆବଶ୍ୟକତା ଯେ ଯଥେଷ୍ଟ ବେଶୀ ଏଥିରେ କିଛି ହେଲେ ସନ୍ଦେହ ନାହିଁ । ମୁଁ ଆଶା କରୁଛି, ପୁନରୁଦ୍ଧାର କରି ଏହାର ରକ୍ଷଣାବେକ୍ଷଣ ସ୍ଥାନୀୟ ପ୍ରଶାସନ ଦେଖିବ କାରଣ ସହରକୁ ଲାଗି ଏପରି ଏକ ସ୍ଥାନ ପାଇବା କଷ୍ଟକର, ଯେଉଁଠି ସ୍ୱତନ୍ତ୍ର ରୋଗୀମାନଙ୍କୁ ଚିକିତ୍ସା କରାଯାଇପାରିବ ।

ପୁରୀକୁ ଯାଉଥିବା ବାହାର ତୀର୍ଥଯାତ୍ରୀମାନଙ୍କୁ ସହର ଭିତରକୁ ପ୍ରବେଶ କରିବା କିମ୍ବା ରହିବା ମନା ଯଦିଓ ଏ ପ୍ରକାର ବାସିନ୍ଦାମାନେ ପୁରୀକୁ ଯାଇ ପୁରୀରୁ ଫେରିବାରେ କିଛି ବାଛନ୍ଦ ନାହିଁ । ଆହୁରି ମଧ୍ୟ କଟକର ସହର ବାସିନ୍ଦାମାନେ ବାହାରକୁ ଯାଇ ବାହାର ତୀର୍ଥଯାତ୍ରୀମାନଙ୍କ ସଂଗେ ମିଶିବାରେ କିଛି ମନା ନାହିଁ ।

ଡକ୍ଟର ଷ୍ଟିଓ୍ବାର୍ଟ କଟକରୁ ଉତ୍ତର ଦିଗରେ ୩୨ ମାଇଲ୍ ଦୂରରେ ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ ଧର୍ମଶାଳା ଅଞ୍ଚଳକୁ କଲେରା ଦେଖିବା ପାଇଁ ୧୪ ଜୁଲାଇ ଦିନ ଯାଇଥିଲେ । ସେତେବେଳେ ରାସ୍ତାରେ ସ୍ୱଳ୍ପ ସଂଖ୍ୟକ ତୀର୍ଥଯାତ୍ରୀ ଯିବାର ସେ ଲକ୍ଷ୍ୟ କରିଥିଲେ । ଧର୍ମଶାଳା ନିକଟରେ ହଇଜାରେ ପୀଡିତ ହୋଇଥିବା ଏବଂ ମୃତ୍ୟୁବରଣ କରଥିବା ଯାତ୍ରୀମାନଙ୍କ ସଂଖ୍ୟା

| | ଚିକିତ୍ସା | ମୃତ୍ୟୁ |
|---|---|---|
| ମେ | ୫ | ୨ |
| ଜୁନ୍ | ୪୭ | ୧୯ |
| ଜୁଲାଇ | ୩୫ | ୫ |

ଖଣ୍ଡିତରା ପାଖେ ଜୁନ୍ ମାସରେ ୧୦ଜଣ ଏବଂ ଜୁଲାଇ ମାସରେ ୧୨ଜଣ ମରିଥିଲେ । ଡକ୍ଟର ଷ୍ଟିଓ୍ବାର୍ଟଙ୍କ ପରିଦର୍ଶନ ବେଳେ ସେ ଶୁଣିଥିଲେ ଯେ, ବ୍ରାହ୍ମଣୀ ନଦୀର ଆରପଟ ଗାଁ କେବଳ ଗୋପାଳପୁରକୁ ଛାଡିଦେଲେ ଅନ୍ୟ ଗାଁ ମାନଙ୍କରେ ହଇଜା ଲାଗିନଥିଲା । ଗୋପାଳପୁର-ଧର୍ମଶାଳାର ଆରପଟ ଗାଁ । ସେଠାକାର ଅବସ୍ଥା ବିଷୟରେ ସେ ଏହିପରି ଭାବେ ଉଲ୍ଲେଖ କରିଥିଲେ -

'ବନ୍ୟା ବେଳେ ବ୍ରାହ୍ମଣୀ ନଦୀ ପାରହୋଇ ଆରପଟକୁ ଦିନ ଦିନ ଧରି ଯାଇ ହୁଏନି । ଗୋପାଳପୁର ଗାଁ ଆଡେ ଆଣ୍ଠୁଏ ପାଣି । ଏହି ସମୟରେ ପୁରୀ ରଥଯାତ୍ରା ଦେଖିବାକୁ ଯାଉଥିବା ଯାତ୍ରୀମାନେ ଗୋପାଳପୁର ପାଖେ ଅଗତ୍ୟା ରହିବାକୁ ବାଧ୍ୟ

ହୋଇଥାନ୍ତି । ସେଠାରେ ରହିଯାଉଥିବା ଯାତ୍ରୀମାନଙ୍କ ମଧ୍ୟରୁ ବେଳେ ବେଳେ ନଦୀ ସ୍ରୋତରେ ମଧ୍ୟ କେତେ ଭାସି ଯିବାର ଖବର ଅଛି । ନଦୀପଠାରେ ଲାଗି ରହିଥିବା ଶବରୁ ଜଣାପଡେ, ସେମାନେ ଯାତ୍ରୀ କିମ୍ବା ସ୍ଥାନୀୟ ଲୋକ । ସେଇଥିପାଇଁ ଏହି ଗାଁରେ ହଇଜାର ପ୍ରାଦୁର୍ଭାବ ଦେଖାଯାଏ । ଜୁଲାଇ ମାସ ୭ ତାରିଖ ମଧ୍ୟରେ ୯ଜଣ ଯାତ୍ରୀ ହଇଜାରେ ମରିଥିବା କଥା ପୋଲିସ୍ କହୁଥିଲେ ମଧ୍ୟ ସ୍ଥାନୀୟ ଲୋକମାନେ ୫୦ରୁ ୬୦ଜଣ ମରିଥିବା କଥା କହୁଥିଲେ । ମୁଁ କଟକରେ ଥିବା ସମୟରେ ଗୋପାଳପୁର ଗାଁରେ ହଇଜା ଲାଗିଥିବା କଥା ଶୁଣି ସ୍ଥାନୀୟ ଡାକ୍ତରଙ୍କୁ ସେଠାକୁ ଯାଇ ଚିକିତ୍ସା ଯୋଗାଇ ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲି । ଦରକାର ହେଲେ ସେଠାରେ କିଛିଦିନ ରହିବାକୁ ମଧ୍ୟ କହିଥିଲି । ଡାକ୍ତର ମଧ୍ୟ କିଛି ଔଷଧ ସେଠାକୁ ପଠାଇଥିବା କଥା କହିଥିଲେ । ସ୍ଥାନୀୟ ପୋଲିସ୍ ଇନ୍ସପେକ୍ଟରଙ୍କୁ ମୁଁ ବ୍ରାହ୍ମଣୀ ନଦୀପଠା ଏବଂ ବାଲିରେ ମରି ପଡିଥିବା ଲୋକମାନଙ୍କ ଶବ ସଂପର୍କରେ ପଚାରିଥିଲି । ସେ ସଂଗେ ସଂଗେ ଲୋକ ପଠାଇ ସେସବୁ ଶବଗୁଡିକୁ ଏକାଠି କରି ପୋଡିବାର ବନ୍ଦୋବସ୍ତ କରିଥିଲେ ।' ଯାତ୍ରୀମାନେ ଯାଉଥିବା ମୁଖ୍ୟ ରାସ୍ତା ପାଖ ଗାଁକୁ ଛାଡିଦେଲେ ଅନ୍ୟ ଗାଁ ଆଡେ ହଇଜା ଲାଗି ନଥିଲା । ଡକ୍ଟର ଷ୍ଟିଓ୍ୱାର୍ଟ ମୋତେ କହିଥିଲେ ଯେ, ୨୮ ଶଗଡ ମହାପ୍ରସାଦ ପୁରୀରୁ-କଲିକତା ଗଲାବେଳେ ବ୍ରାହ୍ମଣୀ ନଦୀ ପାର ହୋଇଥିଲା । ତା'ଆଗରୁ ମଧ୍ୟ ବହୁ ପରିମାଣରେ ମହାପ୍ରସାଦ ଯିବାର ଖବର ଶୁଣିଛି ।

## ଯାଜପୁର ଯାତ୍ରା

ଜୁଲାଇ ୭ ତାରିଖ ଦିନ ୪ଟା ବେଳେ (ଅପରାହ୍ନ) କଟକ ଛାଡି ପରଦିନ ସକାଳ ୯ଟା ସମୟରେ ଯାଜପୁର ଟାଉନରେ ପହଞ୍ଚିଥିଲି । ଓଡ଼ିଶା ଇତିହାସରେ ଯାଜପୁରର ସ୍ଥାନ ସ୍ୱତନ୍ତ୍ର । ହଜାର ହଜାର ବର୍ଷ ଧରି ଯାତ୍ରୀମାନେ ଏହି ପୀଠକୁ ଦେବୀ ଦର୍ଶନ ପାଇଁ ଆସୁଛନ୍ତି । କେଶରୀ ଏବଂ ତୁଙ୍ଗ ବଂଶର ରାଜାମାନଙ୍କର ଯାଜପୁର ରାଜଧାନୀ ଥିଲା । ବ୍ରହ୍ମା ଏଠାରେ ଦଶାଶ୍ୱମେଧ ଯଜ୍ଞ କରି ବଳିଦାନ କରିଥିବା ଯୋଗୁଁ ଯାଜପୁରକୁ 'ସିଟି ଅଫ୍ ସାକ୍ରିଫାଇସ୍' ବୋଲି କୁହାଯାଏ । ବ୍ରହ୍ମା ଯଜ୍ଞ କଲାବେଳେ ହିନ୍ଦୁମାନଙ୍କର ସବୁ ଦେବାଦେବୀ ଏହି ସ୍ଥାନରେ ଉପସ୍ଥିତ ଥିଲେ ଏବଂ ସେହିଦିନଠାରୁ ଗଙ୍ଗାନଦୀ ବୈତରଣୀ ନାମରେ ଏହି ସ୍ଥାନରେ ପ୍ରବାହିତ ହେଉଛି । ଲୋକମାନେ ବିଶ୍ୱାସ କରନ୍ତି ଯେ, ଗୟାସୁରକୁ ବିଷ୍ଣୁ ମାରିଲା ପରେ ତାର ନାଭି ମଣ୍ଡଳ ଯାଜପୁର ନିକଟରେ ପଡିଥିଲା । ତାର ମସ୍ତକ ଗୟା ଏବଂ ପାଦ ଅଂଶ ରାଜମହେନ୍ଦ୍ରି ପାଖରେ ପଡିଥିଲା ।

ଯାଜପୁର ଟାଉନଠାରୁ ୨ ମାଇଲ୍ ଦୂରରେ ଅବସ୍ଥିତ ନାଭିଗୟା ମନ୍ଦିର ଏକ ଦର୍ଶନୀୟ ସ୍ଥାନ । ଏହି ମନ୍ଦିର ଭିତରକୁ କୌଣସି ୟୁରୋପୀୟାନମାନଙ୍କୁ ଯିବାକୁ ମନା ଥିଲେ ମଧ୍ୟ ବାହାର ପଟୁ ମନ୍ଦିର ଦେଖିବାରେ କିଛି ମନା ନାହିଁ । ମନ୍ଦିର ବାହାରପଟେ

ବହୁ ସୁନ୍ଦର ସୁନ୍ଦର ମୂର୍ତ୍ତିମାନ ଦେଖିବାକୁ ମିଳେ । ଏହି ମନ୍ଦିର ପରିସରରେ ଗୋଟିଏ କୂପ ଅଛି । କୁହାଯାଏ, ଏହି କୂପ ଗୟାସୁରର ନାଭିମଣ୍ଡଳ ପର୍ଯ୍ୟନ୍ତ ବ୍ୟାପ୍ତ । ଏଇଠି ହିନ୍ଦୁମାନେ ତାଙ୍କ ପିତୃ ପୁରୁଷମାନଙ୍କ ପାଇଁ ପିଣ୍ଡ ଦେଇଥାନ୍ତି । ଚାଉଳରେ ତିଆରି ପିଠା, ମିଠା ପ୍ରଭୃତି ପିତୃ ପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଆକାରରେ ଦିଆଯାଇଥାଏ ! ନଦୀକୂଳରେ ଅବସ୍ଥିତ ଗୋଟିଏ ମନ୍ଦିରରେ ସାତଗୋଟି ଖୁବ୍ ସୁନ୍ଦର ମୂର୍ତ୍ତି ମୁଁ ଦେଖିଥିଲି । ଏପରି ସୁନ୍ଦର ମୂର୍ତ୍ତି ଭାରତ ବର୍ଷରେ ମୁଁ ଆଗରୁ କେଉଁଠି ଦେଖିନଥିଲି । ଏସବୁ ମୂର୍ତ୍ତି ଖୁବ୍ ବିରାଟକାୟ ପଥରରୁ କଟାହୋଇ ନିର୍ମାଣ କରାଯାଇଛି । ସେମାନେ ସାତଗୋଟି ଦେବୀଙ୍କ ମୂର୍ତ୍ତି । ସମସ୍ତ ମୂର୍ତ୍ତି ଅତି ସୁନ୍ଦର କାରୁକାର୍ଯ୍ୟରେ ମଣ୍ଡିତ । ସେହି ଅଞ୍ଚଳରେ ମୁସଲିମ୍ ମସଜିଦ୍ 'ବୁକାରୀ' ପାଖରୁ ତିନିଗୋଟି କମନୀୟ ମୂର୍ତ୍ତି ମିଳିଥିଲା । ସେସବୁ ମୂର୍ତ୍ତିଗୁଡିକ ହେଲା କାଳୀ, ଭାରତୀ ଏବଂ ଇନ୍ଦ୍ରାଣୀଙ୍କ ମୂର୍ତ୍ତି । ଏ ସମସ୍ତ ମୂର୍ତ୍ତିମାନଙ୍କୁ ମୁସଲମାନ ଆକ୍ରମଣକାରୀମାନେ ମନ୍ଦିର ଭିତରୁ ବାହାର କରି ରାସ୍ତାରେ ଫିଙ୍ଗି ଦେଇଥିଲେ । ଶେଷରେ ସେସବୁ ମୂର୍ତ୍ତିମାନଙ୍କୁ ଏପରି ଅବସ୍ଥାରୁ ଉଦ୍ଧାର କରି ବର୍ତ୍ତମାନର ସହକାରୀ ମାଜିଷ୍ଟ୍ରେଟଙ୍କ ବଙ୍ଗଳା ପାଖ ଖୋଲା ପଡିଆରେ ରଖାଯାଇଛି । ମୁଁ ସାରା ଭାରତ ବର୍ଷରେ ଏପରି କାରୁକାର୍ଯ୍ୟ ଖଚିତ ସୁନ୍ଦର ମୂର୍ତ୍ତି କେଉଁଠି ଦେଖିନଥିଲି । ଏପରି ଦେବାଦେବୀଙ୍କ ମୂର୍ତ୍ତିମାନଙ୍କର ଅବସ୍ଥିତି ଯାଜପୁରର ଗୋଟିଏ ପବିତ୍ର ତୀର୍ଥ ସ୍ଥାନର ପରିଚୟ ଦିଏ, ଯାହାଲାଗି ଏବେ ବି ଶହ ଶହ ଯାତ୍ରୀ ଏଠାକୁ ଆସୁଛନ୍ତି । ଯାଜପୁର ଟାଉନ-କଲିକତା-କଟକ ରାସ୍ତାଠାରୁ ୯ ମାଇଲ୍ ଏବଂ କଟକ ଠାରୁ ୪୩ ମାଇଲ୍ ଦୂରରେ ଅବସ୍ଥିତ ।

ଯାଜପୁର ଟାଉନ୍‌ରେ ଥିବା ଡାକ୍ତରଖାନା ଯାତ୍ରୀମାନଙ୍କ ଯିବା ଆସିବା ଦୃଷ୍ଟିରୁ ଏକ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ । ପ୍ରତ୍ୟେକ ବର୍ଷ ହଜାର ହଜାର ଯାତ୍ରୀ ଏଠାକୁ ଆସିଥାନ୍ତି । ମୁଁ ଅତ୍ୟନ୍ତ ଦୁଃଖର ସହିତ କହିବାକୁ ଯାଉଛି ଯେ, ଏହି ଡିସ୍‌ପେନସାରୀ ଯେପରି ଚାଲିବା କଥା, ଆର୍ଥିକ ଅଭାବରୁ ସେପରି ଚାଲୁନାହିଁ । ଯାହାକିଛି ଆର୍ଥିକ ସାହାଯ୍ୟ ମିଳିବ ବୋଲି କୁହାଯାଉଥିଲା, ତା'ବି ମିଳୁନାହିଁ । ଡିସ୍‌ପେନସାରୀ ପରିଦର୍ଶନ ବହିରୁ ମୋର ମନ୍ତବ୍ୟ ପଢ଼ି ଡିଆଇଜି ହସ୍‌ପିଟାଲ ଭାବିବେନି ଯେ, ମୁଁ ତାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରୁଛି । ଯାଜପୁର ଦେଇ ଯେଉଁ ହଜାର ହଜାର ଯାତ୍ରୀ ପ୍ରତ୍ୟେକ ବର୍ଷ ଯାଇଥାନ୍ତି, ସେମାନଙ୍କ ପାଇଁ ପରିମଳ ଏବଂ ସ୍ୱାସ୍ଥ୍ୟସେବାର ଉନ୍ନତି କଳ୍ପେ ମୁଁ ତାହା ଲେଖିଛି ।

## ୮, ଜୁଲାଇ ୧୮୬୮

ଜଣେ ଦର୍ଶକ ଭାବେ ମୁଁ ଯାଜପୁର ଡାକ୍ତରଖାନାକୁ ଆସି ପରିଦର୍ଶନ କରିଥିଲି । ଡାକ୍ତରଖାନାର ଗୃହ, ବେଶ୍ ମଜଭୁତ ଏବଂ ଡାକ୍ତରଖାନା ହେବା ପାଇଁ ଉପଯୁକ୍ତ । ସ୍ଥାନୀୟ ଡାକ୍ତର ମୀର କୁମାର ଅଲ୍ଲୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଯୋଗୁଁ ଡାକ୍ତରଖାନା ବେଶ୍ ପରିଷ୍କାର ପରିଚ୍ଛନ୍ନ । ଏଥିଲାଗି ସେ ନିଶ୍ଚିତ ଭାବେ ଧନ୍ୟବାଦର ପାତ୍ର । ଦୁଃଖର କଥା,

ଯେଉଁ ଦାତାମାନେ ଯାହା ଦାନ ଦେବାକୁ ପ୍ରତିଶ୍ରୁତି ଦେଇଥିଲେ ସେମାନେ ତାଙ୍କ ପ୍ରତିଶ୍ରୁତି ରଖୁନାହାଁନ୍ତି । ମୁଁ ଦେଖିଲି ୨୭୨ଟଙ୍କା ଏପର୍ଯ୍ୟନ୍ତ ଆଦାୟ ହୋଇପାରି ନାହିଁ, ଯେଉଁଥିପାଇଁ ଡାକ୍ତରଖାନାରେ ରୋଗୀମାନେ ରହି ଚିକିତ୍ସିତ ହୋଇପାରୁ ନାହାଁନ୍ତି କାରଣ ସେଇ ଆଦାୟ ଟଙ୍କାରୁ ହିଁ ଇନ୍‌ଡୋର ରୋଗୀମାନଙ୍କର ଚିକିତ୍ସା ବାବଦ ଖର୍ଚ୍ଚ ଭରଣା କରାହୁଏ । ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତିମାନେ ଯେଉଁମାନେ ଡାକ୍ତରଖାନା ପରିଚାଳନା ପାଇଁ ଦାନ ଦେବାକୁ ପ୍ରତିଶ୍ରୁତି ଦେଇ ଠିକ୍ ସମୟରେ ତାଙ୍କ ପ୍ରତିଶ୍ରୁତି ଅର୍ଥ ପ୍ରଦାନ କରୁନାହାଁନ୍ତି, ତାଙ୍କ ପାଇଁ ଏହା ଏକ ଗୌରବର କଥା ନୁହେଁ । ବାକି ପଡିଥିବା ଟଙ୍କା ଆଦାୟ ହେଲା ଭଳି ମୋତେ ଆଉ ଲାଗୁନାହିଁ ।

ଏହି ଡାକ୍ତରଖାନାଟି ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଅବସ୍ଥିତ । ପ୍ରତ୍ୟେକ ବର୍ଷ ହଜାର ହଜାର ତୀର୍ଥଯାତ୍ରୀ ଏହି ବାଟ ଦେଇ ଯାଇଥାନ୍ତି । ଯଦି ସେମାନଙ୍କୁ ପରୀକ୍ଷା କରାନଯାଏ, ତେବେ ସେମାନେ ତାଙ୍କ ସହିତ ବହୁ ପ୍ରକାର ରୋଗ ଧରିଯିବେ । ପରିମଳ ଦୃଷ୍ଟିରୁ ମୋ' ମତରେ ଆଉ କିଛି ଅଧିକା କରିବାର ଆବଶ୍ୟକତା ଅଛି । ପ୍ରତିଶ୍ରୁତି ଦେଇଥିବା ଅର୍ଥ ଆଦାୟ ହେବା ଦରକାର । ତାହା ଯଦି ନହୁଏ, ତେବେ ସରକାରଙ୍କୁ ସ୍ୱତନ୍ତ୍ର ଆର୍ଥିକ ସାହାଯ୍ୟ ଦେବା ପାଇଁ ଲେଖାଯିବା ଉଚିତ୍ । ଅତି ଦୁଃଖର କଥା, ଏତେ ସୁନ୍ଦର ଘରେ ଅର୍ଥାଭାବରୁ ରୋଗୀମାନଙ୍କୁ ରଖି ଚିକିତ୍ସା କରିବାରୁ ବଞ୍ଚିତ କରାଯାଉଛି । କଟକରୁ କଣ ଏପରି ଦାନଶୀଳ କାର୍ଯ୍ୟ ପାଇଁ କିଛି ଅର୍ଥ ସଂଗ୍ରହ ହୋଇପାରନ୍ତା ନାହିଁ? ମୁଁ ଭାବୁଛି, ଏଥିଲାଗି କଟକ କମିଶନର, ଧାର୍ମିକ ଲୋକ, ସରକାରୀ ଅଫିସରମାନେ ଆଗ୍ରହ ପ୍ରକାଶ କରିବା ଦରକାର । କାର୍ଯ୍ୟ ଗୋଟିଏ ଛୋଟିଆ କାର୍ଯ୍ୟ ନୁହଁ । ଯଦି ରୋଗୀମାନଙ୍କୁ ଡାକ୍ତରଖାନାରେ ରଖି ଚିକିତ୍ସା କରାନଯାଏ, ତେବେ କଟକର ସ୍ୱାସ୍ଥ୍ୟ ଅବସ୍ଥାରେ ମଧ୍ୟ ଗୁରୁତର ଅବ୍ୟବସ୍ଥା ଦେଖାଯାଇ ପାରେ । ମୁଁ ଭାବୁଛି, ସ୍ଥାନୀୟ ଡାକ୍ତର ଏବଂ ତାଙ୍କର ସହଯୋଗୀମାନେ ଯେଉଁ ପ୍ରକାର ଆର୍ଥିକ ଅନଟନ, ଅବ୍ୟବସ୍ଥା ମଧ୍ୟରେ ତାଙ୍କର କର୍ତ୍ତବ୍ୟ କରୁଛନ୍ତି, ସେମାନେ ନିଶ୍ଚିତ ଭାବେ ଧନ୍ୟବାଦାର୍ହ ।

## ଯାଜପୁରରେ ହଇଜା

ଏ ବର୍ଷ ଯାଜପୁରରେ ପ୍ରଥମ ହଇଜା କେସ୍ ଜୁନ୍ ମାସ ୧୩ ତାରିଖରେ ଦେଖାଦେଇଥିଲା । ଏହାର ଦୁଇଦିନ ପୂର୍ବରୁ ଭଦ୍ରକରେ ହଇଜା ହେବାର ଖବର ମିଳିଥିଲା । ମେଦିନାପୁରର ଜଣେ ମହିଳା ହଇଜାରେ ପ୍ରାଣ ହରାଇଥିଲେ । ଜୁନ୍ ୧୫ ତାରିଖରେ ଆଉ ୫ଜଣ ହଇଜାରେ ଆକ୍ରାନ୍ତ ହେଲେ । ସେମାନଙ୍କ ମଧ୍ୟରୁ ଜଣେ ମୃତ୍ୟୁବରଣ କଲେ । ସେମାନେ ସମସ୍ତେ ମେଦିନାପୁର ଆଡର ଲୋକ । ଜୁନ୍ ୧୬ ତାରିଖ ଦିନ ମେଦିନାପୁର ଆଡର ୩ଜଣ ମହିଳା ହଇଜାରେ ପଡିଥିଲେ । ସେମାନଙ୍କ ମଧ୍ୟରୁ ୨ଜଣ ମଲେ ଜଣେ ଭଲ ହୋଇଗଲେ ।

ଜୁନ୍ ୧୭ ତାରିଖରେ ହଇଜା ହେବାର ଖବର ନଥିଲେ ମଧ୍ୟ ୧୮ରେ ୪ଜଣ, ୧୯ରେ ୩ଜଣ ହଇଜାରେ ପଡିଲେ ଏବଂ ସେମାନଙ୍କ ମଧ୍ୟରୁ ୩ଜଣ ମୃତ୍ୟୁବରଣ କଲେ । ଏମାନେ ସମସ୍ତେ ମେଦିନାପୁର ଅଞ୍ଚଳର ମହିଳା ଥିଲେ । ଜୁନ୍ ୧୯ ପରେ ହଇଜା ହେବାର ଖବର ମିଳିନଥିଲା । ଯାଜପୁରରେ ସର୍ବମୋଟ ୧୬ଜଣ ଏହି ଋତୁରେ ହଇଜାରେ ପଡିଥିଲେ । ସେମାନଙ୍କ ମଧ୍ୟରୁ ୮ଜଣ ମୃତ୍ୟୁବରଣ କଲାବେଳେ ୮ଜଣ ଭଲ ହୋଇଯାଇଥିଲେ । ଜୁଲାଇ ୮ ତାରିଖ ରାତ୍ରି ୯ଘଣ୍ଟା ସମୟରେ ମୁଁ ଯାଜପୁର ଛାଡିଲି । ସକାଳ ୭ଘଣ୍ଟା ସମୟରେ ଭଦ୍ରକରେ ପହଞ୍ଚିଥିଲି । ଆସିଷ୍ଟାଣ୍ଟ ମାଜିଷ୍ଟ୍ରେଟ୍ ମିଃ ଆର.ରାମ୍‌ପିନି ମୋତେ ପାଛୋଟି ନେଇଥିଲେ ।

## ଭଦ୍ରକରେ ହଇଜା

ଯାଜପୁରରୁ ଭଦ୍ରକ ଆସିବା ରାସ୍ତା ଖାଲଖମଣାପୂର୍ଣ୍ଣ ଅତ୍ୟନ୍ତ କଷ୍ଟକର ରାସ୍ତା । ବହୁ ସ୍ଥାନରେ ରାସ୍ତା ସଂପୂର୍ଣ୍ଣ ଭାବେ ଧୋଇଯାଇଛି । ଭଦ୍ରକରୁ ମୋତେ ହଇଜା ସଂପର୍କରେ ମିଳିଥିବା ବିବରଣୀ ମୋ ପାଇଁ ଗୁରୁତ୍ୱପୂର୍ଣ୍ଣ । ଜୁନ୍ ଏବଂ ଜୁଲାଇ ମାସରେ ହଇଜା କି ପ୍ରକାରେ ବ୍ୟାପୁଛି ଏବଂ କେଉଁ ଦିଗ ଦେଇ ଗତି କରୁଛି, ମୋତେ ଏହି ବିବରଣୀରୁ ଜଣାଗଲା । ସ୍ଥାନୀୟ ଡାକ୍ତର ଶେଖ୍ ରହିମ୍ ମୋତେ ଦେଇଥିବା ବିବରଣୀ ହେଲା -

### ୯ ଜୁଲାଇ ୧୯୬୮ ପର୍ଯ୍ୟନ୍ତ

| ତାରିଖ | ପୁରୁଷ | ମହିଳା | କେଉଁସ୍ଥାନ | ଭଲହେବା | ମୃତ | କେଉଁଠାକୁ ଯାଇଥିଲେ |
|---|---|---|---|---|---|---|
| ୧୧ଜୁନ୍ | - | ୧ | ବାଲେଶ୍ୱର | - | ୧ | ବାଲେଶ୍ୱର |
| ୧୨ଜୁନ୍ | ୧ | - | ବାଲେଶ୍ୱର | - | - | ବାଲେଶ୍ୱର |
| ୧୪ଜୁନ୍ | ୧ | - | ବାଲେଶ୍ୱର | - | - | ବାଲେଶ୍ୱର |
| ୧୫ଜୁନ୍ | ୧ | - | ବାଲେଶ୍ୱର | - | - | ବାଲେଶ୍ୱର |
| ୧୬ଜୁନ୍ | - | ୫ | ବାଲେଶ୍ୱର | ୧ | ୧ | ବାଲେଶ୍ୱର |
| ୧୭ଜୁନ୍ | ୩ | ୫ | ବାଲେଶ୍ୱର | ୨ | ୧ | ବାଲେଶ୍ୱର |
| ୧୮ଜୁନ୍ | ୭ | ୧୦ | ବାଲେଶ୍ୱର | - | ୧ | ବାଲେଶ୍ୱର |
| ୧୯ଜୁନ୍ | ୩ | - | - | - | - | - |
| ୨୦ଜୁନ୍ | ୧ | - | - | - | - | - |
| ୨୧ଜୁନ୍ | ୧ | - | - | - | - | - |
| ୨୨ଜୁନ୍ | - | - | - | - | - | - |
| ୨୩ଜୁନ୍ | - | - | - | - | - | - |

| | | | | | | |
|---|---|---|---|---|---|---|
| ୨୪ଜୁନ୍ | - | - | - | - | - | - |
| ୨୫ଜୁନ୍ | - | - | - | - | - | - |
| ୨୬ଜୁନ୍ | ୩ | - | - | - | - | - |
| ୨୭ଜୁନ୍ | - | - | - | - | - | - |
| ୨୮ଜୁନ୍ | - | - | - | - | - | - |
| ୨୯ଜୁନ୍ | - | - | - | - | - | - |
| ୩୦ଜୁନ୍ | ୧ | - | - | - | - | - |
| ୧ଜୁଲାଇ | - | - | - | - | - | - |
| ୨ଜୁଲାଇ | ୧ | - | - | - | - | - |
| ୩ଜୁଲାଇ | - | - | - | - | - | - |
| ୪ଜୁଲାଇ | ୨ | - | - | - | - | - |
| ୫ଜୁଲାଇ | - | - | - | - | - | - |
| ୬ଜୁଲାଇ | - | - | - | - | - | - |
| ୭ଜୁଲାଇ | - | - | - | - | - | - |
| ୮ଜୁଲାଇ | - | - | - | - | - | - |
| ୯ଜୁଲାଇ | - | - | - | - | - | - |

ଉପରୋକ୍ତ ଘଟଣାରୁ ଜଣାପଡେ ଯେ, ୧୧ଜୁନ୍‌ରୁ ୩୦ ଜୁନ୍ ମଧ୍ୟରେ ଭଦ୍ରକରେ ଘଟିଥିବା ହଇଜା ଏବଂ ହଇଜାଜନିତ ରୋଗରେ ମୃତ୍ୟୁବରଣ କରିଥିବା ସମସ୍ତ ବ୍ୟକ୍ତି ତୀର୍ଥଯାତ୍ରୀ ଥିଲେ ଏବଂ ସେମାନେ ସମସ୍ତେ ବାଲେଶ୍ୱର ଆଡୁ ପୁରୀ ଯାଉଥିଲେ, ମାତ୍ର ଜୁନ୍ ୨୯ ତାରିଖରୁ ଜୁଲାଇ ୯ ତାରିଖ ମଧ୍ୟରେ ହଇଜାରେ ମରିଥିବା ଲୋକମାନେ ପୁରୀରୁ ଫେରୁଥିଲେ । ଏହି ରିପୋର୍ଟରେ ଆହୁରି ଦର୍ଶାଇଦେଉଛି ଯେ, ଏ ବର୍ଷ ହଇଜା ପୁରୀ ସହରରେ ଲାଗିବା ପୂର୍ବରୁ ପୁରୀର ଉତ୍ତର ଦିଗରୁ ଆସିଥିଲା । ଜୁନ୍ ମାସ ପୂର୍ବରୁ ଏପ୍ରିଲ ୨ ତାରିଖ, ୧୮୬୮ ମସିହା ଦିନ ଭଦ୍ରକରେ ଆଉ ଜଣେ ବ୍ୟକ୍ତି ହଇଜାରେ ପଡି ମରିଥିଲେ । ସେ ଲୋକଟି ହେଉଛି ମିଃ ରାମ୍‌ପିନିଙ୍କ ମାଳୀ । ଏପ୍ରିଲ ପରଠାରୁ ଜୁନ୍ ମାସ ୧୧ ପର୍ଯ୍ୟନ୍ତ ଭଦ୍ରକରେ ହଇଜାରେ କେହି ପୀଡିତ ହୋଇନଥିଲେ । ଜୁନ୍ ୫ ତାରିଖରୁ ୧୧ ତାରିଖ ପର୍ଯ୍ୟନ୍ତ ଭଦ୍ରକ ଅଞ୍ଚଳରେ ପ୍ରବଳ ବର୍ଷା ପରେ ଗୋଟିଏ ସପ୍ତାହ ପାଇଁ ପାଗ ଶୁଖିଲା ଥିଲା । ଭଦ୍ରକର ଡାକବଙ୍ଗଳା ଭାଙ୍ଗି ପଡିବା ଅବସ୍ଥାରେ ଅଛି । ଭଦ୍ରକ ଡିସ୍‌ପେନସାରୀରେ ୯ଜଣ ହଇଜା ରୋଗୀ ଚିକିତ୍ସିତ ହେଉଥିଲେ ।

ଜୁନ୍ ମାସ ୯ ତାରିଖ ରାତ୍ରି ୧୦ଟାରେ ମୁଁ ଭଦ୍ରକ ଛାଡିଲି । ସକାଳ ୯ଘଣ୍ଟା ସମୟରେ ଖଣ୍ଡପଡା ବଙ୍ଗଳାରେ କିଛି ସମୟ ପାଇଁ ରହି ୧୦ ତାରିଖ ଅପରାହ୍ନ ୧ଟା ସମୟରେ ବାଲେଶ୍ୱରରେ ପହଞ୍ଚିଲି ।

ବାଲେଶ୍ୱରରେ ମୁଁ ବାଲେଶ୍ୱର ଜେଲ୍, ରେଳ ଷ୍ଟେସନ ଏବଂ ବଜାର ପରିଦର୍ଶନ କରିଥିଲି । ମୁଁ ଟି.ଏଫ୍.ବିଗ୍‌ନୋଲ୍ଡ, ମାଜିଷ୍ଟ୍ରେଟ୍ ଏବଂ ଡକ୍ଟର ଜେ.ଡେସିଙ୍କ ପାଖରୁ ସମସ୍ତ ସାହାଯ୍ୟ ପାଇଥିଲି । ପରିଦର୍ଶନ ସମୟରେ ମୁଁ ଜାଣିଲି, ଏ ବର୍ଷ ୨୮ ମାର୍ଚ୍ଚ ଠାରୁ ୯ ଜୁଲାଇ ମଧ୍ୟରେ ବାଲେଶ୍ୱର ଜିଲ୍ଲାରେ ୧୯୧ଜଣ ବ୍ୟକ୍ତି ହଇଜାରେ ମରିଥିଲେ । ଜାନୁୟାରୀ ପହିଲାରୁ ୧୦ ଜୁଲାଇ ମଧ୍ୟରେ ବାଲେଶ୍ୱର ଜିଲ୍ଲା ହେଡକ୍ୱାର୍ଟରେ ଯାତ୍ରୀ ହସ୍‌ପିଟାଲ (ପିଲିଗ୍ରିମିଜ୍ ହସ୍‌ପିଟାଲ)ରେ ୨୪ଜଣ ହଇଜା ରୋଗୀ ଆଡମିଟ୍ ହୋଇ ଚିକିତ୍ସିତ ହେଉଥିଲେ । ସେମାନଙ୍କ ମଧ୍ୟରୁ ୮ଜଣ ଭଲ ହୋଇଗଲେ, ୧୨ଜଣ ମରିଥିଲେ ଏବଂ ୪ଜଣ ଏବେବି ଚିକିତ୍ସିତ ହେଉଛନ୍ତି । ଜୁଲାଇ ୫ ତାରିଖରୁ ୧୦ତାରିଖ ମଧ୍ୟରେ କେହି ଆଡମିଶନ ହୋଇନାହାଁନ୍ତି । ହସ୍‌ପିଟାଲ ରେକର୍ଡ କୁହେ, ପ୍ରଥମ ହଇଜା ରୋଗୀ ମାର୍ଚ୍ଚ ମାସ ୨୯ ତାରିଖରେ ଚିକିତ୍ସା ପାଇଁ ଆଡମିଶନ ହୋଇଥିଲେ । ଶିବ ରାଉତ ନାମକ ଏହି ଲୋକଜଣକ ପୁରୀ ଯାଉଥିଲେ ।

ମୁଁ ୧୧ ଜୁଲାଇ ରାତ୍ରିରେ ବାଲେଶ୍ୱରରୁ ଜଳେଶ୍ୱର ଅଭିମୁଖେ ବାହାରିଲି । ୧୨ ଜୁଲାଇ ମଧ୍ୟାହ୍ନ ସୁଦ୍ଧା ଜଳେଶ୍ୱରରେ ପହଞ୍ଚିଥିଲି । ଜଳେଶ୍ୱର ଠାରୁ ୬ କୋଷ ଦୂର ଦକ୍ଷିଣରେ ମୁଁ ଦେଖିଲି ଗୋଟିଏ ତୀର୍ଥଯାତ୍ରୀ ଦଳ ପୁରୀରୁ ୧୨ଦିନ ତଳେ ବାହାରିଥିଲେ । ସେମାନେ ସମସ୍ତେ ବହୁତ ଦୁର୍ବଳ ଦେଖାଯାଉଥିଲେ । ଗୋଟିଏ ଡଙ୍ଗା ଉପରେ ସମସ୍ତେ ବିଶ୍ରାମ ନେଉଥିଲେ ।

କେଉଁପରି ଅବସ୍ଥାରେ, ପୁରୀରୁ ତୀର୍ଥଯାତ୍ରୀମାନେ ଓଡ଼ିଶା ମଧ୍ୟ ଦେଇ ସେମାନଙ୍କ ଗୃହକୁ ଫେରୁଥାନ୍ତି, ସେ ସଂପର୍କରେ ମୋର ମତାମତ ଉଲ୍ଲିଖିତ କରୁଛି । ଏହି ବିଷୟରେ ବେଳେ ବେଳେ କେତେକ ପୁସ୍ତକରେ ଲେଖାମାନ ଦେଖିବାକୁ ମିଳେ । ମାତ୍ର ଲେଖା କଥା ଓ ନିଜ ଆଖିରେ ଦେଖିବା କଥା ଅଲଗା ।

ରେଭରେଣ୍ଡ ଏ.ଏଫ୍.ଲାକ୍ରୋସ୍କିଙ୍କ "ତୀର୍ଥଯାତ୍ରୀମାନଙ୍କର ପୁରୀ ଫେରନ୍ତା ଯାତ୍ରା" ସଂପର୍କରେ ବର୍ଣ୍ଣନା ଲେଖା ସୁବର୍ଣ୍ଣିତ ଏବଂ ଅତିରଞ୍ଜିତ ନୁହେଁ । ମୁଁ ତାଙ୍କରି ଲେଖାରୁ କିଛି ଅଂଶ ଉଦ୍ଧୃତ କରୁଛି ।

"ବହୁଦିନ ଧରି ପୁରୀ ରହଣି କାଳ ମଧ୍ୟରେ, ସେମାନେ ନାନାବିଧ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ବର୍ଷାଦିନ ଆରମ୍ଭ ହୋଇଥାଏ । ରାସ୍ତାଘାଟର ଅବସ୍ଥା କହିଲେ ନସରେ । ପୁରୀ ଯାଇ ଜଗନ୍ନାଥ ଦର୍ଶନ କରିବା ବେଳର ଯେଉଁ ଅଦମ୍ୟ ଉତ୍ସାହ ତାହା ମଉଳି ଯାଇଥାଏ । ସାଙ୍ଗରେ ନେଇଥିବା ଆର୍ଥିକ ସମ୍ବଳର ପ୍ରାୟ ଶେଷ ଅବସ୍ଥା - (ପଇସା ସରି ଆସିଥାଏ), ଏହି ଅବସ୍ଥାରେ ସେମାନେ ଏକତ୍ର ହୋଇ ଛୋଟ ଦଳରେ ଫେରନ୍ତା ଯାତ୍ରା ଆରମ୍ଭ କରନ୍ତି । ଘରକୁ ଫେରିବାର ଉତ୍ସାହରେ ସେମାନେ ପ୍ରତ୍ୟେକ ଦିନ ଅଧିକା ବାଟ ଚାଲିଥାନ୍ତି । ଏପରିକି ଚାଲି ଚାଲି ଥକିଗଲା ବେଳେ ଜଣେ ଜଣେ

ଭଲ ଚାଲି ପାରନ୍ତିନି । ଉଦାହରଣ ସ୍ୱରୂପ ଏ ବର୍ଷ ପ୍ରଥମ ଯାତ୍ରୀ ଦଳ, ପୁରୀରୁ ରଥ ସାରି ୪ଦିନ ମଧ୍ୟରେ ଭଦ୍ରକ ଠାରେ ପହଞ୍ଚିଥିଲେ । ସେମାନେ ଦିନକୁ ହାରାହାରି ୪୦ ମାଇଲ୍ ରାସ୍ତା ଚାଲିଥିଲେ । ସକାଳୁ ସକାଳୁ ଯାତ୍ରୀମାନେ ଧାଡି ଧାଡି ହୋଇ ରାସ୍ତାରେ ଚାଲିବା, ଗୋଟିଏ ଦୃଶ୍ୟ । ହଜାର ହଜାର ଫେରନ୍ତା ଯାତ୍ରୀ ଦଳ ଦଳ ହୋଇ ମାଇଲ୍ ମାଇଲ୍ ରାସ୍ତା କଭର କରି ଚାଲିଥାନ୍ତି । ସେମାନଙ୍କ ମଧ୍ୟରେ ପୁରୁଷ, ସ୍ତ୍ରୀ, ବୁଢ଼ାବୁଢ଼ୀ, ଦୁର୍ବଳ, ସବଳ ସମସ୍ତେ ଥାନ୍ତି । ମାତ୍ର ସେମାନେ ଯେ ଖାଲି ହାତରେ ଯାଉଥାନ୍ତି ଏକଥା ନୁହଁ । ସମସ୍ତଙ୍କ ପାଖରେ କିଛି ନା କିଛି ବୋଝଟିଏ ମାନ ଥାଏ, ଯେଉଁଥିରେ ତାଙ୍କର ଲୁଗାପଟାକୁ ଛାଡି ମହାପ୍ରସାଦ କୁଡୁଆ ମଧ ଥାଏ । ମହିଳାମାନଙ୍କ ପାଇଁ ଏହି ବୋଝ ପ୍ରକୃତରେ ଅତ୍ୟନ୍ତ କଷ୍ଟକର । ପୁରୀରୁ ମହାପ୍ରସାଦ ଏତେ ପରିମାଣରେ ଆସେ ଯେ, ରାସ୍ତାରେ ଭାରୁଆମାନ ଏସବୁକୁ ବୋହୁଥିବାର ଦେଖାଯାଏ ।

ଚଲାଳି ଯାତ୍ରୀମାନଙ୍କ ସାଙ୍ଗରେ ବହୁ ସଂଖ୍ୟାର ଶଗଡ ଗାଡି ମଧ ଚାଲିଥାଏ । ଏସବୁ ଶଗଡ ଗାଡିରେ ହିନ୍ଦୁସ୍ତାନୀ ଯାତ୍ରୀମାନେ ଆସିଥାନ୍ତି । ବହୁ ଯାତ୍ରୀ ସାଙ୍ଗରେ ଛତା ଏବଂ ଛତା ବେଣ୍ଟ ଦେହରେ ପୁରୀରୁ ଆଣିଥିବା ନାଲି ରଙ୍ଗର ବେତବାଡି ବାନ୍ଧି ଥିବାର ଦେଖାଯାଏ । କିନ୍ତୁ ତାଳପତ୍ର ଛତା ମୁଖ୍ୟତଃ ଯାତ୍ରୀମାନେ ଧରିଥାନ୍ତି । ଦିନ ଦିନ ଧରି ସେମାନଙ୍କ ଭଗ୍ନ ସ୍ୱାସ୍ଥ୍ୟରେ ସେମାନେ କଷ୍ଟେମଷ୍ଟେ ଘରେ ପହଞ୍ଚିବା ପର୍ଯ୍ୟନ୍ତ ଚାଲିଥାନ୍ତି ।

ରାତ୍ରିରେ ରାସ୍ତା ଉପରେ ଯାତ୍ରୀମାନଙ୍କ ଅବସ୍ଥା ସଂପର୍କରେ ସେଇ ଲେଖକ ଯାହା ଲେଖିଛନ୍ତି, ତା'ନିଶ୍ଚିତ ଭାବେ ରେକର୍ଡଯୋଗ୍ୟ । ତାଙ୍କର ବିବରଣୀ - "ଏଇ ଯାତ୍ରୀମାନଙ୍କର ଅବସ୍ଥା ଦିନବେଳେ ଯାହା ଥାଏ, ରାତ୍ରିରେ ତାଙ୍କର ଦୁଃଖ ଆହୁରି ବଢ଼ିଯାଏ । ଚାଲିଚାଲି ଯେତେବେଳେ ସେମାନେ ରାତ୍ରିରେ କୌଣସି ଗାଁ କିମ୍ବା ଛୋଟ ବଜାରରେ ପହଞ୍ଚି ଯାଆନ୍ତି, ସଂଗେ ସଂଗେ ସେଠାରେ ଥିବା ସମସ୍ତ ଲଜିଂ ଘର, ଧର୍ମଶାଳା ଭରପୁର ହୋଇଯାଏ । ବହୁ ଯାତ୍ରୀ ଲଜିଂ ହାଉସ୍, ଧର୍ମଶାଳା ମାନଙ୍କରେ ସ୍ଥାନାଭାବରୁ ଖୋଲା ପଡିଆରେ ଶୋଇ ଯାଆନ୍ତି । ସେମାନଙ୍କର ଏହି ଅବସ୍ଥା ଆହୁରି ଶୋଚନୀୟ ହୋଇପଡେ ଯେତେବେଳେ ସେସବୁ ସ୍ଥାନରେ ପଇସା ଦେଲେ ମଧ ଖାଇବାକୁ ମିଳେନି । ଦୋକାନ ବଜାର ନଥାଏ । ମିଃ ବାଚେଲର ଥରେ କହୁଥିଲେ, ଦିନେ ବାଲେଶ୍ୱର ଟାଉନ୍‌ରେ ୨୦,୦୦୦ ଯାତ୍ରୀ ସକାଳୁ ସଂଧ୍ୟା ଭିତରେ ପହଞ୍ଚିଗଲେ । ଧର୍ମଶାଳା ସରାଇଘର, ଯାହାଥିଲା ସବୁ ପୂର୍ଣ୍ଣ ହୋଇଗଲା । ଏପରିକି ବାଲେଶ୍ୱର ବଜାରରେ ଚାଲିବା କଷ୍ଟକର ହେଲା । ଏହି ପରିସ୍ଥିତିରେ ଯାତ୍ରୀମାନଙ୍କ ଅବସ୍ଥା ଯାହାଥିଲା ତାହା ବର୍ଣ୍ଣନା କରିବା କଷ୍ଟକର ହେଲା । ସେମାନେ ଯେଉଁ ଅବସ୍ଥାରେ ଶୋଇଥାନ୍ତି, ଦେଖିଲେ କଷ୍ଟ ଲାଗେ । ସେମାନଙ୍କ ମଧ୍ୟରୁ କେତେକ ବଜାର, କାହା ଘର ବାରଣ୍ଡାରେ, ସରାଇଘର ପିଣ୍ଡାରେ, ମଝି ରାସ୍ତା ଉପରେ, ଶଗଡ ଗାଡି ଭିତରେ କିଏ କେତେ ପ୍ରକାର ଅବସ୍ଥାରେ ଶୋଇ ଯାଇଥାନ୍ତି । କିଏ କିଏ ସେମାନଙ୍କ ଗଣ୍ଠିଲି ଉପରେ ମୁଣ୍ଡ ଦେଇ ବିଶ୍ରାମ କରୁଥାନ୍ତି । ଗଛ

ତଳଠାରୁ ଆରମ୍ଭ କରି ପୋଲମାନଙ୍କର ଶୃଙ୍ଖଳା ପାରାପିଟି ଉପରେ ଯାତ୍ରୀମାନେ ବିଶ୍ରାମ ନେଇଥାନ୍ତି । ସେମାନଙ୍କ ବିଶ୍ରାମ ପାଇଁ ଏପରି କୌଣସି ସ୍ଥାନ ନଥିଲା, ଯାହାକୁ ସେମାନେ ବ୍ୟବହାର କରୁନଥିଲେ ।

ରେଭରେଣ୍ଡ ମିଃ ମୁଲେନ ମଧ୍ୟ ସେହି ପ୍ରକାର ଦୃଶ୍ୟର ବର୍ଣ୍ଣନା କରିଛନ୍ତି । "ସେମାନେ ଯେତେବେଳେ ଏକାଠି ହୋଇ ଖୋଲା ସ୍ଥାନମାନଙ୍କରେ ଶୃଙ୍ଖଳା ପାଗରେ ବିଶ୍ରାମ ନେଇଥାନ୍ତି, ସେତେବେଳେ ସେମାନଙ୍କ ଅବସ୍ଥା ଏକ ପ୍ରକାର ଠିକ୍ ଥାଏ, ମାତ୍ର ଯେତେବେଳେ ବର୍ଷା ଆରମ୍ଭ ହୋଇଯାଏ, ଅବସ୍ଥା ଅବର୍ଣ୍ଣନୀୟ ହୋଇଉଠେ । ଶୋଇବା ସ୍ଥାନରୁ ଉଠିବା କଷ୍ଟକର ହୁଏ । ଉଠିକରି ବି କୁଆଡେ ଯିବେ ? ସବୁଘରେ ଲୋକ ଭର୍ତ୍ତି, ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ କାହିଁ ? ତେଣୁ ସେମାନେ ସେହି ବର୍ଷାରେ ଶୋଇ ଯାଆନ୍ତି । ସେମାନଙ୍କର କେଶ ସବୁ ପାଣିରେ ଭିଜି କାଦୁଅରେ ମିଶିଯାଏ । ସେହି ଅବସ୍ଥାରେ ସେମାନେ ସକାଳୁ ପୁଣି ଚାଲିବା ଆରମ୍ଭ କରନ୍ତି । ବର୍ଷାରେ ଭିଜି ଭିଜି ସେମାନେ ଏତେ ଅବସନ୍ନ ହୋଇପଡନ୍ତି ଯେ, ସେମାନଙ୍କ ମଧ୍ୟରୁ ବହୁ ଆଉ ଉଠି, ଚାଲି ପାରନ୍ତି ନାହିଁ । ସାଙ୍ଗରେ ଆସିଥିବା ଲୋକମାନେ ସେମାନଙ୍କୁ ସେହି ମୁମୂର୍ଷୁ ଅବସ୍ଥାରେ ରାସ୍ତାରେ ଛାଡିଦେଇ ଚାଲି ଯାଆନ୍ତି । ପୁରୀରୁ ଯାତ୍ରୀମାନେ ରଥଯାତ୍ରା ସରିବାର ଠିକ୍ ଅଳ୍ପଦିନ ପରେ ଫେରିଲା ବାଟରେ ଓଡ଼ିଶାର ମୁଖ୍ୟ ରାସ୍ତାରେ ଯାହା ଯାହା ଘଟୁଥିଲା, ମୁଁ ବିଶ୍ୱାସ କରେ, ତାହା ଠିକ୍ ଭାବେ ଉପରୋକ୍ତ ଲେଖାମାନଙ୍କରେ ବର୍ଣ୍ଣନା କରାଯାଇଛି ।

ମୁଁ ଖୁସି ଯେ, ପ୍ରତ୍ୟେକ ବର୍ଷ ପରି ଏବର୍ଷ ହଇଜାରେ ବିଶେଷ ଯାତ୍ରୀ ମୃତ୍ୟୁବରଣ କରିନାହାଁନ୍ତି । ବିଗତ ବର୍ଷମାନଙ୍କର ମୃତ୍ୟୁ ସଂଖ୍ୟାକୁ ଦେଖିଲେ ତା'ତୁଳନାରେ ଏ ବର୍ଷର ମୃତ୍ୟୁ ସଂଖ୍ୟା କମ୍ । ଯେତେ ଯାହା କହିଲେ ବି ଯେତେବେଳେ ଦଳ ଦଳ ଯାତ୍ରୀ ପହଞ୍ଚି ଯାଆନ୍ତି, ସେତେବେଳେ ସେହି ଜାଗାର ଅବସ୍ଥା ଶୋଚନୀୟ ହୋଇପଡେ । ଦାରିଦ୍ର୍ୟତା, ଅନାବରଣ, ରୋଗାଗ୍ରସ୍ତ, ଅବସ ଏବଂ ମୃତ୍ୟୁ- ଯାତ୍ରୀମାନଙ୍କ ପାଇଁ ଏସବୁ ଥିଲା ସାଧାରଣ ଘଟଣା । ଜଗନ୍ନାଥଙ୍କର ଏହି ନିରୀହ ଭକ୍ତମାନେ ଦେହ ଲୁଚୁ ନଥିବା ଲୁଗାଖଣ୍ଡେ ପିନ୍ଧି ହାତରେ ଅଖାବସ୍ତା ଧରି ପାଖରେ ପଇସା ନଥାଇ, ମାଇଲ୍ ମାଇଲ୍ ଚାଲି ଗୋଡ ଛିଣ୍ଡି ଏବଂ ବିଭିନ୍ନ ରୋଗରେ ପଡି ମଧ୍ୟ ଯେପରି ମେହନତ କଷ୍ଟ କରନ୍ତି ତାହା ଦେଖିବା କଥା । ଜଗନ୍ନାଥଙ୍କ ଆକର୍ଷଣ ଓ ତାଙ୍କରି ଦର୍ଶନ ପାଇଁ ସେମାନେ ସବୁ ଦୁଃଖ, ମାନସିକ ଯନ୍ତ୍ରଣା ସବୁ ଭୁଲି ଯାଆନ୍ତି । ସେମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ କିଛି ନା କିଛି ରୋଗ ଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି । ଜଗନ୍ନାଥ ଦର୍ଶନ କରିବାର ଅମୋଘ ଅଭିଳାଷ, ଜଗନ୍ନାଥଙ୍କ ନାମକୁ ନେଇ ସେମାନଙ୍କ ମନରେ ଭରି ଦେଉଥିବା ଅଫୁରନ୍ତ ଶକ୍ତି, ତୀର୍ଥ କରିବାର ପୁଣ୍ୟ, ଏସବୁ ଆଗରେ ତାଙ୍କର ଦୁଃଖ, ଦୁର୍ଦ୍ଦଶା, କଷ୍ଟ ସବୁକିଛି ପଛରେ ପଡିଯାଏ । କିନ୍ତୁ ଏସବୁ ସତ୍ତ୍ୱେ ଦୀର୍ଘଦିନ ଧରି ସ୍ୱଚ୍ଛ ଖାଦ୍ୟରେ ଚାଲି ଚାଲି ଥକି ଯାଇ ରାସ୍ତାକଡର ବର କି ପିପଳ ଗଛମୂଳେ ଆଶ୍ରୟ ନେଲାବେଳେ ସେମାନେ ତାଙ୍କର ବାହ୍ୟ ଜଗତକୁ ଭୁଲି

ନିଘୋଡ ନିଦରେ ଶୋଇ ଯାଆନ୍ତି । ନିଦ ଭାଙ୍ଗିଲେ ପୁଣି ଚାଲିବା ଆରମ୍ଭ କରନ୍ତି । ଗୋଟିଏ ଦିନର ଘଟଣା ନୁହେଁ, ଘରେ ନପହଞ୍ଚିବା ପର୍ଯ୍ୟନ୍ତର ତାଙ୍କର ଏସବୁ ଥିଲା ପ୍ରତ୍ୟେକ ଦିନର ଘଟଣା । ଦିନ ଦିନ ଧରି ଖରାବର୍ଷାରେ ଚାଲି ଚାଲି ରାସ୍ତାରେ ଯାତ୍ରୀମାନଙ୍କ ଅବସ୍ଥା ଦେଖି ଏସବୁ ଘଟଣା ସେମାନଙ୍କର ଦେହସୁହା ହୋଇଯାଇଥାଏ । ରାସ୍ତାରେ ସେମାନଙ୍କର ସାଥୀମାନେ ଅଖିଆ ଅପିଆ, ଅନିଦ୍ରା ଏବଂ ଯାତ୍ରା କଷ୍ଟରେ ପଥପ୍ରାନ୍ତରରେ ପଡି ମୃତ୍ୟୁବରଣ କରିବା ଏବଂ ରାସ୍ତା କଡରେ ସେମାନଙ୍କୁ ସେହି ଅବସ୍ଥାରେ ଛାଡ଼ି ଯିବା ପ୍ରତି ସେମାନଙ୍କର ଏତେ ଚିନ୍ତା ନଥାଏ । ସେମାନଙ୍କ ମନରେ କେବଳ ଧାର୍ମିକ ଅଗ୍ନିଶିଖା ପ୍ରଜ୍ଜ୍ୱଳିତ ଥିବା ଜଣାପଡେ । ବହୁ ସମୟରେ ଯାତ୍ରୀମାନେ ମୁମୂର୍ଷୁ ଅବସ୍ଥାରେ ରାସ୍ତା କଡରେ ପଡିଥିଲା ବେଳେ ବିଲୁଆ, କୁକୁର, ଶାଗୁଣାମାନେ ସେମାନଙ୍କୁ ଘେରିଯାଇ ଜିଅନ୍ତା ଖାଉବାର ଦୃଶ୍ୟ ବିରଳ ନଥିଲା । କେତେଘଣ୍ଟା ପରେ ସେମାନଙ୍କର କେତେଖଣ୍ଡ ହାଡ, ମୁଣ୍ଡମାନ ରାସ୍ତା କଡରେ ପଡି ରହେ । ଧର୍ମ ପାଇଁ ହିନ୍ଦୁମାନେ ଯେଉଁ ତୀର୍ଥଯାତ୍ରାରେ ଯାଇଥାନ୍ତି, ସେମାନଙ୍କ ମଧ୍ୟରୁ ବହୁ ଲୋକ ଏପରି ଅବସ୍ଥାର ସମ୍ମୁଖୀନ ହୋଇଥାନ୍ତି ।

ସେମାନଙ୍କ ମୃତ୍ୟୁ ପରେ ଇନକ୍ୟୁଏଷ୍ଟ ହବାର ଦରକାର ପଡେନି- କ'ଣ ବା ଏସବୁର ମୂଲ୍ୟ ? ଡକ୍ଟର ମାଓ୍ୱଟ, ଏସବୁର ସାମାଜିକ ତାତ୍ପର୍ଯ୍ୟ ସଂପର୍କରେ ଉଲ୍ଲେଖ କରିଥିଲେ ଯେ, ରାସ୍ତାକୁ ଲାଗି ବାଲେଶ୍ୱର ଦାତବ୍ୟ ଚିକିତ୍ସାଳୟର ସ୍ଥାନୀୟ ଡାକ୍ତର ମୋତେ କହିଥିଲେ ଯେ, ଯେଉଁ ଯାତ୍ରୀମାନେ ଫେରିଲା ବାଟରେ ହଇଜା କିମ୍ବା ଅନ୍ୟାନ୍ୟ ରୋଗରେ ପଡି ମୃତ୍ୟୁବରଣ କରନ୍ତି, ବେଳେ ବେଳେ ସେମାନଙ୍କ ମୃତଦେହରୁ ଖଣ୍ଡେ ଦି'ଖଣ୍ଡ ହାଡ, ତାଙ୍କ ସାଥୀମାନେ ସାଙ୍ଗରେ ନେଇ ଯାଇଥାନ୍ତି, ଯାହାକି ପରେ ସେମାନେ ସେହି ଅସ୍ଥିକୁ ଉତ୍ତର ପଶ୍ଚିମ ଦିଗରେ ଅବସ୍ଥିତ 'ବନାରସ' ଠାରେ ଗଙ୍ଗାନଦୀରେ ବିସର୍ଜନ କରିଥାନ୍ତି ।

ଜୁଲାଇ ୧୨ ତାରିଖ ସଂଧ୍ୟା ୬ଘଣ୍ଟା ସମୟରେ ଜଲେଶ୍ୱର ଛାଡ଼ି ସୋମବାର ଦିନ ୧୩ ଜୁଲାଇ ସକାଳ ୧୧ଘଣ୍ଟା ସମୟରେ ମେଦିନାପୁର ଠାରେ ପହଞ୍ଚିଲି । ଅବଶ୍ୟ ବାଟରେ ନାରାୟଣଗଡ ପାଖରେ ୨ଘଣ୍ଟା ଲାଗି ରହିଥିଲି । ମୁଁ ପହଞ୍ଚିଲା ବେଳେ ମାଜିଷ୍ଟ୍ରେଟ୍ ଏଚ.କେ.ରେନୋଲ୍ଡ ମୋତେ ଅପେକ୍ଷା କରିଥିଲେ । ମେଦିନାପୁର ଠାରେ ମୁଁ ଜେଲ୍ ଏବଂ ସେଠାକାର ଡାକ୍ତରଖାନା ପରିଦର୍ଶନ କରିଥିଲି ।

ଏବର୍ଷ ମେଦିନାପୁର ଜିଲ୍ଲାରେ ହଇଜା ସଂପର୍କରେ ବିବରଣୀ ଦେବା ପାଇଁ ଜଏଣ୍ଟ ମାଜିଷ୍ଟ୍ରେଟ୍ ମିଃ ଟି.ଏଚ୍.ସଟ୍ ମୋତେ ବହୁତ ସାହାଯ୍ୟ କରିଥିଲେ । ଏ ସମସ୍ତ ବିବରଣୀକୁ ପ୍ରତ୍ୟେକ ଦିନ ପୋଲିସ ଷ୍ଟେସନମାନଙ୍କରୁ ଆସୁଥିବା ଖବରରୁ ସଂଗ୍ରହ କରାଯାଉଥିଲା । ଏପରି ଅସଂଗତ ବିବରଣୀ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇ ନପାରିଲେ ମଧ୍ୟ ଏସବୁକୁ ସଂପୂର୍ଣ୍ଣ ଭାବେ ଭୁଲ୍ କହିବା ମଧ୍ୟ ଠିକ୍ ହେବନି । ମିଃ ସର୍ଟଙ୍କ ସହାୟତାରେ ମୁଁ ନିମ୍ନଲିଖିତ କେତେକ ଘଟଣାମାନ ବିବରଣୀଭୁକ୍ତ କରିପାରିଥିଲି ।

ମାର୍ଚ୍ଚ ୧୧ରୁ ଏପ୍ରିଲ ୨୦ ମଧ୍ୟରେ ଡାଣ୍ଟନ ଠାରେ ୮୧ଜଣ କଲେରା ରୋଗରେ ଆକ୍ରାନ୍ତ ହୋଇ ୬୨ଜଣ ମୃତ୍ୟୁବରଣ କରିଥବଲେ । ୫ ଫେବୃୟାରୀରୁ ୮ ଏପ୍ରିଲ ମଧ୍ୟରେ କେଶପୁର ଠାରେ ୪୦ଜଣ ମୃତ୍ୟୁବରଣ କରିଥିଲେ । ୨୦ ଫେବୃୟାରୀରୁ ୨ ଏପ୍ରିଲ ମଧ୍ୟରେ ସୁବଙ୍ଗଠାରେ ୨୮ଜଣ ହଇଜାରେ ମରିଥିଲେ । ୧୧ ଫେବୃୟାରୀରେ 'ସୋରଣା' ଠାରେ ୧ଜଣ, ୫ ମାର୍ଚ୍ଚରୁ ୮ ଜୁନ୍ ମଧ୍ୟରେ 'ଡେରାବରାହ' ପାଖେ ସାତରୁ ଆଠ ଜଣ ମରିଥିଲେ । ୨୭ ମାର୍ଚ୍ଚ ଦିନ ନାରାୟଣଗଡରେ ୫ଜଣ ଗୁରୁବେତା ଠାରେ ୬ ଏପ୍ରିଲ୍‌ରେ ୩ଜଣ, ସାଲେବେରୁଣୀ ପାଖେ ୧୬ ମେ'ରୁ ୧୮ ମେ' ମଧ୍ୟରେ ୨ଜଣ, ଚୁନ୍ଦ୍ରା ନିକଟରେ ୬ ଜୁନ୍‌ରେ ୧ଜଣ, ନାରଗୋଲଠାରେ ୨୪ ଜୁନ୍‌ରେ ୮ଜଣରୁ ୪ଜଣଙ୍କ ମୃତ୍ୟୁ, ମୁନେଘର ନିକଟରେ ୭ ଜୁଲାଇରେ ୧ଜଣ ଏବଂ ଶେଷରେ ମେଦିନାପୁରରେ ୩ ଏପ୍ରିଲ୍‌ରୁ ୯ ଏପ୍ରିଲ ମଧ୍ୟରେ ୩୨ଜଣ୍ ହଇଜା ରୋଗୀଙ୍କ ମଧ୍ୟରୁ ୩୧ଜଣ ମୃତ୍ୟୁବରଣ କରିଥିଲେ ।

ଏ ସମସ୍ତ ବିବରଣୀ (ଯେତେ ଭେଗ୍ ହେଲେବି) ପ୍ରମାଣ କରେ ଯେ, ପୁରୀକୁ ରଥଯାତ୍ରା ଦେଖିବା ପାଇଁ ଯାଉଥିବା ଯାତ୍ରୀମାନଙ୍କ ମଧ୍ୟରୁ କେବଳ ମେଦିନାପୁର ଜିଲ୍ଲାରେ ଏତିକି ଲୋକ ହଇଜାରେ ପ୍ରାଣ ହରାଇଥିଲେ । ଯାହା ହେଲେ ବି ଏହି ବିବରଣୀର ନିଶ୍ଚିତ ମୂଲ୍ୟ ଅଛି । ମୁଁ ଆଶା କରୁଛି, ମେଦିନାପୁର ଜିଲ୍ଲାର ସିଭିଲ୍ ସର୍ଜନ ଡକ୍ଟର ଆଲେନ୍ ତଥ୍ୟ ସମ୍ବଳିତ ଠିକ୍ ବିବରଣୀ ମୋତେ ପ୍ରଦାନ କରିବେ । ଓଡ଼ିଶା ମଧ୍ୟକୁ ପ୍ରବେଶ କରିବାର ଦ୍ୱାର ଦେଶରେ ସେ ଅବସ୍ଥାପିତ । ତେଣୁ ମେଦିନାପୁର ଠାରେ ହଇଜାରେ ମୃତ୍ୟୁବରଣ କରିଥିବା ତୀର୍ଥଯାତ୍ରୀଙ୍କ ସଂପର୍କରେ ତଥ୍ୟ ନିଶ୍ଚିତ ଭାବେ ଭବିଷ୍ୟତକୁ ସାହାଯ୍ୟ କରିବ ।

୧୪ ଜୁଲାଇ ସଂଧ୍ୟା ୬ ଘଣ୍ଟାରେ ମୁଁ ମେଦିନାପୁର ଛାଡି ୧୫ତାରିଖ ଅପରାହ୍ନ ଗୋଟାଏ ବେଳେ ଓଲ୍‌ବେରିଆ ଠାରେ ପହଞ୍ଚିଥିଲି । ସେଠାରେ ଦୁଇଘଣ୍ଟା କଟାଇ ଡଙ୍ଗାରେ କଲିକତା ବାହାରି ୧୫ ଜୁଲାଇ ରାତି ୮ଘଣ୍ଟା ସମୟରେ କଲିକତାରେ ପହଞ୍ଚିଥିଲି । ଏଥିମଧ୍ୟରେ ୩୫ଦିନ କଟି ଯାଇଥିଲା ।

□□□

# ଦ୍ୱିତୀୟ ପରିଚ୍ଛେଦ

## ପୁରୀର ସ୍ୱାସ୍ଥ୍ୟର ସର୍ବେକ୍ଷଣ :
## ସ୍ୱାସ୍ଥ୍ୟର ଆବଶ୍ୟକତା ପାଇଁ ପ୍ରସ୍ତାବ

ପୁରୀ ସହରରେ ମ୍ୟୁନିସିପାଲିଟି ବ୍ୟବସ୍ଥା ନାହିଁ। ବର୍ତ୍ତମାନ ମାଜିଷ୍ଟ୍ରେଟ୍ ମିଃ ରାବନ୍ ସହରର ସ୍ୱାସ୍ଥ୍ୟ ଏବଂ ପରିମଳ ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି। ଆଗରୁ ସହରକୁ ପରିଷ୍କାର ରଖିବା ପାଇଁ ସେପରି କିଛି ବ୍ୟବସ୍ଥା ଗ୍ରହଣ କରାଯାଇ ନଥିଲା କିମ୍ବା ଏଥିପାଇଁ କୌଣସି ଆର୍ଥିକ ବ୍ୟବସ୍ଥା କରାଯାଇ ନଥିଲା। ବର୍ତ୍ତମାନ ମଧ୍ୟ ଆବଶ୍ୟକୀୟ ଅର୍ଥ ଯୋଗାଇ ଦିଆଯାଇନାହିଁ। ନାମକୁ ମାତ୍ର ସଫେଇ ବିଭାଗ ଅଛି। କେତେଖଣ୍ଡ ସଫେଇ ଗାଡିକୁ ଛାଡିଦେଲେ ଆଉ କିଛି ନାହିଁ। ଏପରିକି ମଇଳା ସଫା କରିବା ପାଇଁ ଯେତିକି ସଫେଇ ଗାଡି ଦରକାର, ତାହା ମଧ୍ୟ ନାହିଁ। ଲୋକମାନଙ୍କ ପାଇଁ ସାଧାରଣ ପରିଶ୍ରାଗାର, ଶୌଚାଳୟ, ଗାଧୁଆ ଘରର ବ୍ୟବସ୍ଥା ନାହିଁ। ଗାତ ଖୋଳି, ମଳତ୍ୟାଗ କଲାପରେ ଶୁଖିଲା ମାଟି ପକାଇବା ବ୍ୟବସ୍ଥା ଉପରେ ଜିଲ୍ଲା ପ୍ରାଧିକାରୀ ଗୁରୁତ୍ୱ ଦେଇଥିଲେ ମଧ୍ୟ କଦବା କ୍ୱଚିତ୍ ଏପରି କରାଯାଇଥାଏ। ସହରର ବହୁ ଅଞ୍ଚଳରେ ଲୋକମାନେ ଖୋଲା ସ୍ଥାନରେ ଝାଡା ଫେରି ଏପରି ଦୁର୍ଗନ୍ଧ ସୃଷ୍ଟି କରୁଛନ୍ତି ଯେ, ସେସବୁ ବାଟ ଦେଇ ଯିବା କଷ୍ଟକର। ସହରରେ ପାଣି ନିଷ୍କାସନ, ମଇଳା ନିଷ୍କାସନ ପାଇଁ ସେପରି କିଛି ଡ୍ରେନେଜ୍ ବ୍ୟବସ୍ଥା ନାହିଁ ବରଂ ବାହାରୁ ମଇଳା ପାଣି ସହର ମଧ୍ୟକୁ ପ୍ରବେଶ କରୁଛି କାରଣ ସହରର ମଧ୍ୟସ୍ଥଳୀ, ବାହାର ଅଞ୍ଚଳ ଠାରୁ ଖାଲୁଆ। ଯାହା ଖଣ୍ଡେ ଅଧେ ଡ୍ରେନ୍ ଅଛି ସେସବୁ ଅବସ୍ଥା ନକହିବା ଭଲ।

କଟକ ସର୍କଲ ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟରଙ୍କ ଅନୁସାରେ ସହର ନିକଟସ୍ଥ ବିଭିନ୍ନ ଅଂଚଳର ସମତଳତା ନିମ୍ନ ପ୍ରକାରେ -

**Reduced to Mean Sea level**

| | | |
|---|---|---|
| ପୁରୀ ପି.ଡବ୍ଲ୍ୟୁ. ଡାକବଙ୍ଗଳାର ପ୍ଲିନ୍ଥ | - | ୨୩.୩୫ |
| ପିଡବ୍ଲ୍ୟୁ ବଙ୍ଗଳାଠାରୁ ଫାଗ୍ ଷ୍ଟାଫ୍ | - | ୨୦.୮୭ |
| ୟୁରୋପିୟାନ ଟାଉନ୍‌କୁ ଯାଇଥିବା ରାସ୍ତା ଛକ | - | ୧୯.୦୫ |
| ମଙ୍ଗଳା ଘାଟ | - | ୮.୭୦ |
| ପୁରୀର ପଶ୍ଚିମରେ ଥିବା ଧାନଜମି | - | ୭.୮୭ |
| Mean level of native part of laon | - | ୨୬.୩୫ |
| ସମହରା ପାଟର ନିକଟ ଅଞ୍ଚଳ | - | ୧୭.୭୧ |

| | | |
|---|---|---|
| ସର ହ୍ରଦ- ୭ ମାଇଲ୍ - N.E. to Puri | - | ୧୦.୨୨ |
| ବର୍ଷାଦିନେ, ଚିଲିକା ହ୍ରଦର ବନ୍ୟା ପାଣିର ଗଭୀରତା | - | ୩.୦୦ |
| (ordinary flood height, during rain screen of Chilika lake) | | |
| Heigh of Flood in 1866 | - | 9.04 |
| Bulwunta (Balianta) 12 miles for CTC | - | 61.11 |
| Balcotti or surdeipore | - | 50.52 |
| Town of Pipili | - | 36.36 |

ସହରର ବାସଗୃହ ଗୁଡିକ ସ୍ୱଚ୍ଛକର ଦୃଷ୍ଟିକୋଣରୁ ଉପଯୁକ୍ତ ଭାବେ ନିର୍ମାଣ କରାଯାଇନାହିଁ । ପ୍ରତ୍ୟେକ ଘର ୩ରୁ ୬ କିମ୍ବା ୮ ଫୁଟ ଉଚ୍ଚ ମୂଳଦୁଆ ଉପରେ ତୋଳା ହୋଇଚି । ଏହି ମୂଳଦୁଆ ଭିତର ଦେଇ ଭିତରୁ ବାହାର ପର୍ଯ୍ୟନ୍ତ ଇଟା ଦେହରେ ଗୋଲେଇ ନାଳ ତିଆରି ହୋଇଥାଏ । ଏହି ଗୋଲାକାର ନାଳ ଦେଇ ଘର ଭିତର ମଇଳା ପାଣି, ପରିଶ୍ରା ଇତ୍ୟାଦି ବାହାରକୁ ଆସେ । ଏ ପ୍ରକାର ବ୍ୟବସ୍ଥା ଅତ୍ୟନ୍ତ ଆପତ୍ତିଜନକ ହୋଇଥିଲେ ମଧ୍ୟ ପୁରୀ ସହରର ପ୍ରାୟ ପ୍ରତ୍ୟେକ ଘରେ ଏହି ବ୍ୟବସ୍ଥା ଅଛି ।

ଦୁର୍ଗନ୍ଧ ମଇଳା ପାଣି, ପ୍ରତ୍ୟେକ ଘରର ସାମ୍ନା ପିଣ୍ଡାତଳେ ଖୋଲା ହୋଇଥିବା ଏକ ମଇଳା ଖାତରେ ପଡେ । ଏ ପ୍ରକାର ଡ୍ରେନେଜ୍ କିମ୍ବା ସ୍ୱରେଜ ସିଷ୍ଟମ ସ୍ୱପ୍ନରେ ସୁଦ୍ଧା ଜଣେ ଚିନ୍ତା କରିପାରିବନି । ବହୁ ଘର ଭିତରେ ମଧ୍ୟ ମଳକୁଣ୍ଡମାନ ଖୋଳାଯାଇ ମଇଳା ପାଣି ସେଇଥିରେ ଛଡାଯାଏ । ମଳକୁଣ୍ଡମାନ ଦୁର୍ଗନ୍ଧମୟ କଳା ପାଣିରେ ପୁରି ରହି ଏପରି ଦୂଷିତ ବାଷ୍ପ ସୃଷ୍ଟିକରେ ଯେ, ସେ ବାଟଦେଇ ଗଲାବେଳେ ନାକରେ ହାତ ନଦେଇ ଯାଇହେବନି । ଏସବୁ ସତ୍ତ୍ୱେ ପୁରୀ ସହରରେ ଏପରି ମଇଳା ଖାତମାନ ହଜାର ହଜାର ସଂଖ୍ୟାରେ ଦେଖାଯାଏ । ପ୍ରତ୍ୟେକ ଘର ସାମ୍ନାରେ ଗୋଟିଏ ପିଣ୍ଡା ଏବଂ ସେଇ ପିଣ୍ଡା ତଳକୁ ମଇଳା ଖାତ । ପିଣ୍ଡା ଉପରେ ବସିଲେ ଏହି ମଇଳା ଖାତ (କୁଣ୍ଡ) ମାନ ମାତ୍ର ଦୁଇ କି ତିନି ଫୁଟ ଦୂରତ୍ୱରେ ରହେ । ଏ ସମସ୍ତ (ମଳକୁଣ୍ଡ) ମଇଳା ପାଣିରେ ଖାତମାନ, ସ୍ୱାସ୍ଥ୍ୟ ପ୍ରତି ସବୁବେଳେ ବିପଦ ସୃଷ୍ଟିକରେ । ପ୍ରତ୍ୟେକ ଘରର ଭିତର ଖଞ୍ଜାରେ ପ୍ରାୟ ୩ଟିରୁ ୪ଟି ଛୋଟ ଛୋଟ ପ୍ରକୋଷ୍ଠ ଥାଏ । ଗୋଟିଏ କୋଠରୀରୁ ଅନ୍ୟ ଗୋଟିଏ କୋଠରୀକୁ ଗଲାବେଳେ କାଦୁଅ ଚକଟି ଯିବାକୁ ପଡେ । ଏପରିକି ବହୁ କୋଠରୀ ଦେହରେ ଆଲୁଅ ପବନ ଯିବା ଆସିବା ପାଇଁ ଝରକା ନଥାଏ । ଏହିସବୁ କୋଠରୀମାନଙ୍କରେ ଯାତ୍ରୀମାନେ ଖୁନ୍ଦାଖୁନ୍ଦି ହୋଇ ରୁହନ୍ତି । ଲୋକମାନେ ଏପରି ଭାବେ ରୁହନ୍ତି ଯେ, କୋଠରୀ ମାନଙ୍କରେ ଇଞ୍ଚେ ସ୍ଥାନ ମିଳିବା ଦେଖାଯାଏ ନାହିଁ । ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ଲୋକମାନେ ଏ ପ୍ରକାର ଅବସ୍ଥାରେ କିପରି ରୁହନ୍ତି । ପ୍ରକୃତରେ ଏ

ପ୍ରକାର ଅବସ୍ଥା କେବଳ ବିପଜ୍ଜନକ ନୁହଁ ବିଷାକ୍ତ ମଧ୍ୟ । ତଥାକଥିତ କୋଠରୀଗୁଡ଼ିକରେ ସୂର୍ଯ୍ୟକିରଣ ପ୍ରବେଶ କରେନି, ବାୟୁ ଚଳାଚଳ ବଡ କଷ୍ଟକର ଏପରିକି ଗୋଟିଏ ଗୋଟିଏ କୋଠରୀରେ ଭେଣ୍ଟିଲେସନ ପ୍ରାୟ ନଥାଏ କହିଲେ ଚଳେ । ଯେଉଁ ସ୍ଥାନର ଜଳବାୟୁ ଉଷ୍ଣ, ଝାଳୁଆ, ଅନମନୀୟ ସେଇପରି ସ୍ଥାନର ଏପରି କୋଠରୀମାନଙ୍କରେ ଏତେ ସଂଖ୍ୟାର ଲୋକ ରହିବା, ସ୍ୱାସ୍ଥ୍ୟ ରକ୍ଷା ନିୟମର ସଂପୂର୍ଣ୍ଣ ବିରୋଧୀ । ଏଠାରେ ସବୁ ପ୍ରକାର ବିଷାକ୍ତ ଜୈବ ପଦାର୍ଥ ସୃଷ୍ଟି ହୋଇ ରୋଗର ମଞ୍ଜି ବୁଣୁଛନ୍ତି । ଏସବୁ ରୋଗର ପ୍ରତିରୋଧ ପାଇଁ କି ପ୍ରକାର ବ୍ୟବସ୍ଥା କରାଯିବ ଏହା ଏକ ସମସ୍ୟା ରୂପେ ଦେଖାଦେଲାଣି ।

ଏସବୁ ଦେଖିଲା ପରେ, ମୋର ଡକ୍ଟର ସାଉଥ୍ ଉଡ୍ ସ୍ମିଥ୍ କହିଥିବା କଥାଟି ମନେ ପଡୁଛି । ଥରେ ମିରିଲ୍ ବୋନ୍ ସହରତଳି ଅଞ୍ଚଳର ଗୋଟିଏ କୋଠରୀରେ ୫ଟି ପରିବାର ରହୁଥିଲେ । ୪ଟି ପରିବାର କୋଠରୀର ଚାରି କଣରେ ରହିଥିବା ବେଳେ ଆଉ ଜଣେ କୋଠରୀ ମଝିରେ ରହୁଥିଲେ । ସାନିଟାରୀ ଇନ୍ସପେକ୍ଟର ତାଙ୍କ ମଧ୍ୟରୁ ଜଣେ ମହିଳାଙ୍କୁ ଏପରି ଅବସ୍ଥାରେ କିପରି ରହୁଛନ୍ତି ବୋଲି ପଚାରିବାରେ ମହିଳା ଜଣକ କହିଲେ, "ମହାଶୟ, ମଝିରେ ଥିବା ଲୋକ ଜଣକ ଭଡା ଘରକୁ ଯିବା ପର୍ଯ୍ୟନ୍ତ ଆମର ବିଶେଷ କିଛି ଅସୁବିଧା ହୋଇନି ।"

ପୁରୀରେ ଯାତ୍ରୀମାନେ ପ୍ରତ୍ୟେକ ଘରେ ଏପରି ଭିଡକରି ରୁହନ୍ତି ଯେ, ଘର ଭିତରେ କଣ କିମ୍ବା ମଝିରେ ଜଣକୁ ରଖିବାକୁ ସ୍ଥାନ ନଥାଏ । କୋଠରୀର ପ୍ରତ୍ୟେକ ସ୍ଥାନରେ ଯାତ୍ରୀମାନେ ରହିଯାନ୍ତି । ଡକ୍ଟର ମେଓ୍ୱାଟ୍ ଏପରି ଗୋଟିଏ କୋଠରୀର ଅବସ୍ଥା ଦେଖି ବର୍ଣ୍ଣନା କରିଥିଲେ "ଲଜିଂ ହାଉସ୍ ମାନଙ୍କରେ ତୀର୍ଥଯାତ୍ରୀମାନେ ଏପରି ଖୁନ୍ଦାଖୁନ୍ଦି ହୋଇ ରହିଥାନ୍ତି ଯେ, ମୋତେ ପୁରୀର ସବୁଠାରୁ ଭଲ, ଯେଉଁ ତୀର୍ଥଯାତ୍ରୀ ନିବାସ ଦେଖାଇଥିଲେ ସେଠାରେ ଗୋଟିଏ ଆପାର୍ଟମେଣ୍ଟରେ ରାତ୍ରିରେ ୮୦ଜଣ ଯାତ୍ରୀ ରାତ୍ରି କଟାଇଥିଲେ । ଏହି କୋଠରୀଟିର ଲମ୍ବା ୧୩ଫୁଟ, ଚଉଡା ୧୧.୫ଫୁଟ, ନୂଆଁଳିଆ ଚାଳଘର, କୋଠରୀକୁ ଲାଗି ୬ଫୁଟ ଉଚ୍ଚର ଗୋଟେ ସାଇଡ୍ କାନ୍ଥ । ଏହି କୋଠରୀର ଗୋଟିଏ ମାତ୍ର ଦ୍ୱାର ଥିଲା । ପବନ ଚଳାଚଳ ପାଇଁ ଝରକାଟିଏ ମଧ୍ୟ ନଥିଲା । କୋଠରୀଟି ଅନ୍ଧାରୁଆ ଅପରିଷ୍କାର । ଯାତ୍ରୀ ନଥିଲା ବେଳେ ଏହି ଘର ଖାଲି ପଡିଥାଏ । ଯେଉଁଠି ପୋକଯୋକ ସରୀସୃପମାନେ ରହିଥାନ୍ତି । ଏହି ସ୍ଥାନରୁ ସେ ବର୍ଷ ପୁରୀ ସହରରେ ପ୍ରଥମ ହଇଜା ରୋଗ ଆରମ୍ଭ ହୋଇଥିଲା । ଏପରି ଘରକୁ ଯଦି ପୁରୀର ସବୁଠାରୁ ଭଲ ଯାତ୍ରୀ ନିବାସ ବୋଲି କୁହାଯାଏ, ତେବେ ଏହି ସହର ମଧ୍ୟରେ ଥିବା ଅନ୍ଧାରୁଆ ଆବର୍ଜନାପୂର୍ଣ୍ଣ ଦୁର୍ଗନ୍ଧମୟ ପଚାପାଣିର ଖାଲଖମଣା ପାଖରେ ଥିବା ଯାତ୍ରୀ ନିବାସ ମାନଙ୍କରେ ସାଧାରଣ ଯାତ୍ରୀ କେଉଁ ଅବସ୍ଥାରେ ରହୁଥିବେ, ସେଥିରୁ ଅନୁମାନ କରିବା କଥା ।"

ପ୍ରତ୍ୟେକ ପଣ୍ଡା, ଯାତ୍ରୀମାନଙ୍କୁ ରଖିବା ନିମନ୍ତେ ନିଜର ଯାତ୍ରୀ ଘର କରିଥାନ୍ତି । ଯେତେବେଳେ ତାଙ୍କ ଯାତ୍ରୀଘର ସବୁ ଭରପୂର ହୋଇଯାଏ, ସେତେବେଳେ ସେମାନେ ଅଧିକ ଦାମରେ ଘରଭଡ଼ା ନେଇଥାନ୍ତି । ସ୍ଥାନାଭାବରୁ ଯାତ୍ରୀମାନେ ଏହିସବୁ ଘରେ ଖୁନ୍ଦାଖୁନ୍ଦି ହୋଇ ରହିବାକୁ ବାଧ ହୋଇଥାନ୍ତି । ଯେଉଁ ଘରେ ୫୦ରୁ ୧୦୦ ପର୍ଯ୍ୟନ୍ତ ଯାତ୍ରୀ ରୁହନ୍ତି, ସେପରି ଘରେ ପବନ ଯିବାକୁ ବାଟ ନଥାଏ କିମ୍ବା ସୂର୍ଯ୍ୟକିରଣ ଭଲ ଭାବେ ପଡେନି । ପୁରୀ ଜିଲ୍ଲା ପୋଲିସ୍ ଅଧକ୍ଷ ତାଙ୍କ ଡାଏରୀରେ ୧୮୬୫ ମସିହା ଜୁନ୍ ମାସ ଶେଷ ସପ୍ତାହରେ ଯାହା ଲେଖିଥିଲେ ତାର କିଛି ଅଂଶ ହେଲା 'ମୁଁ ଭାବୁଛି ୨୦,୦୦୦ ବଙ୍ଗାଳୀ ମହିଳାମାନେ ଯେଉଁସବୁ ଛୋଟ ଛୋଟ ଲଜିଂ ଘରମାନଙ୍କରେ ରହୁଛନ୍ତି ସେଠାରେ କୌଣସି ପ୍ରକାର ଲଜିଂ ନିୟମ କାମ କରେନି । ଜଣେ ଯେତିକି ସ୍ଥାନରେ ଶୋଇପାରିବ ସେତିକି ସ୍ଥାନ ମୁଣ୍ଡପିଛା ଦିଆଯାଇଛି । ଗୋଟିଏ ସେମି-ସିଭିଲାଇଜଡ୍ ଦେଶରେ ଏ ପ୍ରକାର ବ୍ୟବସ୍ଥା ଏବଂ ଏହାର ପରିଣାମ ସଂପର୍କରେ ଜିଲ୍ଲାପାଳଙ୍କ ଦୃଷ୍ଟି ଆକର୍ଷଣ କରିବା ମୋର କର୍ତ୍ତବ୍ୟ ବୋଲି ମୁଁ ମନେକରେ ।'

ପୁଣି ଫାଷ୍ଟ ସର୍କଲ, ଡେପୁଟି ଇନ୍ସପେକ୍ଟର ଜେନେରାଲ ଅଫ୍ ପୋଲିସ୍, ୧୮୬୭ ମସିହା ନଭେମ୍ବର ମାସ ୧୬ ତାରିଖ ଶେଷ ସୁଦ୍ଧା ତାଙ୍କ ଡାଏରୀରେ ଲେଖିଥିବା କ୍ଷୁଦ୍ର ଉଦ୍ଧୃତାଂଶ ନିମ୍ନରେ ଦିଆଗଲା - ଜିଲ୍ଲା ପୋଲିସ୍ ଅଧକ୍ଷ ଲେଖିଛନ୍ତି - "ଆଜି ଉପରବେଳା, ମୁଁ ସହରର ଗୋଟିଏ ଘରକୁ ଯାଇଥିଲି । ସେହି ଘରେ ପୁରୁଷ, ସ୍ତ୍ରୀ ମିଶି ୪୫ରୁ ଊର୍ଦ୍ଧ୍ୱ ଯାତ୍ରୀ ରହୁଥାନ୍ତି । ଘରର ଦୁଇଟି ଦ୍ୱାର, ସେଥିମଧ୍ୟରୁ ଗୋଟିଏ ବନ୍ଦ ହୋଇ ରହିଛି । ଘରେ ଗୋଟିଏ ହେଲେ ଝରକା ନାହିଁ । ଘରର ଲମ୍ବ, ଓସାର ୨୦ଫୁଟରେ ୧୨ଫୁଟ । ଏତିକିଟିଏ ଘରେ ୪୫ରୁ ଊର୍ଦ୍ଧ୍ୱ ବ୍ୟକ୍ତି ଭର୍ତ୍ତିହୋଇ ରହୁଥାନ୍ତି । ଘର ଭିତରେ ଗୁଳୁଗୁଳି ଯୋଗୁଁ ବାମ୍ଫ ଉଠୁଥାଏ । ଲୋକମାନେ ଝାଳରେ ବୁଡି ରହୁଥିଲେ । ଏପରି ପରିସ୍ଥିତିରେ ଏମାନେ ଯେ ହଇଜାରେ ଆକ୍ରାନ୍ତ ନହେବେ, ସେକଥା କିଏ କହିବ? ଅତିଶୀଘ୍ର ଯଦି ଯାତ୍ରୀମାନେ ରହୁଥିବା ଲଜିଂ ଘର ସଂପର୍କରେ ନିୟମ ନହୁଏ, ତେବେ ଖାଲି ହଇଜା ନୁହଁ, ଅନ୍ୟ ସଂକ୍ରାମକ ରୋଗ ମଧ୍ୟ ଆରମ୍ଭ ହୋଇଯିବ ।"

ଏ ସଂପର୍କରେ ପୁରୀ ଜିଲ୍ଲାପାଳ ମିଃ ରାବନ୍ ତାଙ୍କ ଚିଠି ନମ୍ବର- ୯୩୧, ତା.୧୯.୨.୧୯୬୮ରେ କଟକ କମିଶନରଙ୍କୁ ଲେଖିଥିଲେ, 'ଓଡ଼ିଶା ବାହାରୁ ଆସୁଥିବା ତୀର୍ଥଯାତ୍ରୀମାନେ ଗୋଟିଏ କୋଠରୀରେ ଅଧିକ ସଂଖ୍ୟାରେ ରୁହନ୍ତି ସତ, ମାତ୍ର ଓଡ଼ିଆ ଯାତ୍ରୀମାନେ ସେହିପରି ଘରେ ଏତେ ଗହଳିକରି ରୁହନ୍ତି ଯେ, ସେ ଘର ଭିତରକୁ ଅଧିକା ଜଣେ ଲୋକ ପ୍ରବେଶ କରିବା ସମ୍ଭବ ହୁଏନି । ମୁଁ ଓଡ଼ିଆ ଯାତ୍ରୀମାନେ ରହୁଥିବା ଗୋଟିଏ କୋଠରୀକୁ ଯାଇ ଦେଖିଥିଲି । ଏହି ଯାତ୍ରୀମାନେ ମାଡ୍ରାସ ପ୍ରେସିଡେନ୍ସି ଖେମଣ୍ଡି

ଅଞ୍ଚଳରୁ ଆସିଥାନ୍ତି । ସେହି କୋଠରୀଟି ଏତେ ଗହଳି ହୋଇଥିଲେ ମଧ୍ୟ ତାରି ଭିତରେ ସେମାନେ ଗୀତ ଗାଇବାଠାରୁ ଆରମ୍ଭ କରି ରୋଷେଇ କରୁଥାନ୍ତି । କୋଠରୀର ଗୋଟିଏ କୋଣରେ ଜଣେ ମହିଳା କାଠ ଜାଳି ସମସ୍ତଙ୍କ ପାଇଁ ରୋଷେଇ କରୁଥାନ୍ତି । ଧୂଆଁରେ କୋଠରିଟି ସଂପୂର୍ଣ୍ଣ ଭର୍ତ୍ତି ହୋଇଯାଇଥାଏ । ମୁଁ ସିନା ଏପରି ଗୋଟିଏ କୋଠରୀ ଦେଖିଲି, ମାତ୍ର ଯାତ୍ରୀମାନେ ଯେଉଁପରି ଭାବେ ଏହି ସହରରେ ଯାତ୍ରା ସମୟରେ ରହୁଛନ୍ତି ଯଦି ଲଜିଂ ଘର ଗୁଡିକ ନିୟନ୍ତ୍ରଣ କରିବା ପାଇଁ ଶୀଘ୍ର ସ୍ୱତନ୍ତ୍ର ଆଇନ ନହୁଏ, ତେବେ ସହର ସ୍ୱାସ୍ଥ୍ୟରକ୍ଷା ସମ୍ଭବ ହେବନି । କେତେଗୁଡ଼ିଏ ଘର ଅଛି, ଯେଉଁଠି କମ୍ ସଂଖ୍ୟାରେ ଯାତ୍ରୀମାନଙ୍କୁ ଭଲ ଭାବେ ରଖାଯାଇ ପାରିବ ମାତ୍ର ଯାତ୍ରୀମାନଙ୍କ ଗହଳି ଯୋଗୁଁ ସେସବୁ ସମ୍ଭବ ହେଉନି । ଗୋଟିଏ ୩ୟ ଶ୍ରେଣୀ ରେଲ୍ ଡବାରେ ସ୍ଥାନୀୟ ଲୋକମାନେ ଗଲାବେଳେ ଯେପରି ଭିଡ କରିଥାନ୍ତି ଲଜିଂ ଘରମାନଙ୍କରେ ପ୍ରାୟ ସେହି ପ୍ରକାର ଭିଡ ହୋଇଥାଏ । ସବୁଠାରୁ ଆଶ୍ଚର୍ଯ୍ୟର କଥା, ଏହି ଭିଡ ମଧ୍ୟରେ ମଧ୍ୟ ଯାତ୍ରୀମାନେ ସେସବୁ ଘରେ ଶୋଇପାରନ୍ତି । ତାଙ୍କର ସେହି ରିପୋର୍ଟରେ ଆଉ ଗୋଟିଏ ସ୍ଥାନରେ ସେ ଉଲ୍ଲେଖ କରିଥିଲେ ଯେ, ମିଃ ରାବନ୍ ଗୋଟିଏ ଘରକୁ ପ୍ରବେଶ କଲାପରେ ଦେଖିଲେ, ଜଣେ ମହିଳା ହଇଜାରେ ପୀଡିତ ହୋଇପଡିଥିବା ବେଳେ ତାରି ପାଖରେ ଆଉ କେତେଜଣ ମହିଳା ପରିବା କାଟୁଥାନ୍ତି । ପ୍ରତ୍ୟେକ ବ୍ୟକ୍ତି ଘଣ୍ଟାକୁ ୧୬.୬୬ କ୍ୟୁବିକ୍ ଫିଟ୍ ବାଷ୍ପ ଶ୍ୱାସ ପ୍ରଶ୍ୱାସ ପାଇଁ ଦରକାର କଲାବେଳେ ହଇଜା ରୋଗରେ ଆକ୍ରାନ୍ତ ଅବସ୍ଥାରେ ତାର ପରିମାଣ ୨୦୦୦ କ୍ୟୁବିକ୍ ଫିଟ୍ ଫ୍ରେସ୍ ବାୟୁକୁ ବଢ଼ି ଯାଇଥାଏ । କିନ୍ତୁ ପୁରୀର ଲଜିଂ ହାଉସ୍‌ମାନଙ୍କର ଅବସ୍ଥା ଯାହା ଦେଖୁଛେ, ସେଇଥିରୁ ଅନୁମାନ କରିବା କଥା ଏମାନେ କି ପ୍ରକାର ଫ୍ରେସ୍ ବାୟୁ ପାଉଛନ୍ତି । ପୁରୀ ସହର ମଧ୍ୟରେ ମୁଁ ଯେତେ ଲଜିଂ ଘର ଦେଖିଲି ସେଥିମଧ୍ୟରୁ ବଳଭଦ୍ର ଗୁରୁଙ୍କ ଲଜିଂ ଘର ସବୁଠାରୁ ଭଲ । ବଳଭଦ୍ର ଗୁରୁଙ୍କ ଲୋକମାନେ ବଳିଆ ଗୁରୁ ବୋଲି ଡାକନ୍ତି । ତାଙ୍କ ଘରଗୁଡ଼ିକ ଭଲ ଭାବେ ତିଆରି କରାଯାଉଛି, ଅବଶ୍ୟ ଏହାର ନିର୍ମାଣ ପ୍ରଣାଳୀ ଏତେ ଖରାପ ନୁହଁ, ଯଦିଓ ସ୍ୱାସ୍ଥ୍ୟ ବିଭାଗ ନିରୀକ୍ଷକ ଚାହିଁଲେ କିଛି କହିବାକୁ ଖୋରାକ ପାଇବ । ଏହି ଲଜିଂ ଘରର ମାଲିକ ଜଣେ ଧନୀ ବ୍ୟକ୍ତି । ତାଙ୍କ ଲଜିଂ ଗୃହକୁ ଯେଉଁ ଯାତ୍ରୀମାନେ ରହିବାକୁ ଆସନ୍ତି, ସେ ସେମାନଙ୍କର ସୁବିଧା ପାଇଁ ଆଗ୍ରହ ପ୍ରକାଶ କରି ନିଜେ ସେମାନଙ୍କର ସୁବିଧା ଅସୁବିଧା ବୁଝନ୍ତି । ଏସବୁ ଦେଖିଲା ପରେ ମୁଁ ଗୁରୁଙ୍କୁ କହିଲି ଯେ, ମୁଁ ବେଙ୍ଗଲ ସରକାରଙ୍କୁ ତାଙ୍କ ଲଜିଂ ସଂପର୍କରେ ରିପୋର୍ଟ ଦେବି ।' ମୋ କଥା ଶୁଣି ଗୁରୁ ଖୁସି ହୋଇଗଲେ ।

ପୁରୀର ପ୍ରତ୍ୟେକ ଘରର ପଛପଟେ ଗୋଟେ ଛୋଟ ବଗିଚା ନିଶ୍ଚୟ ଥିବ । ଘର ପାଖକୁ ଲାଗି ବଗିଚାର କିଛି ଅଂଶ ପରିଷ୍କାର ଥାଏ ମାତ୍ର ବାକି ସମସ୍ତ ସ୍ଥାନରେ ପଚା,

ଷଡ଼ା, ଭଙ୍ଗା ଜିନିଷ କେଉଁ ଯୁଗରୁ ଜମାହୋଇ ବଣପରି ପଡିଥାଏ । ଏହି ତଥାକଥିତ ବଗିଚାମାନ ପ୍ରକୃତରେ ଆବର୍ଜନାର ଆଧାର । ବଗିଚାର ଗୋଟିଏ କୋଣରେ ଦେଖିବ, ଓଳିଆ ଓଳି ହୋଇଯାଇଥିବା ସମସ୍ତ ମଇଳା ସେଇ ସ୍ଥାନରେ ଜମା ହୋଇଥିବ, ତା'ଉପରେ ଭଙ୍ଗା ମାଟିହାଣ୍ଡି କୁଡୁଆମାନ ଜମାହୋଇ କୁଦପରି ଦିଶୁଥିବ, ତା'ପଛକୁ ଦେଖିବ, ବଗିଚାର କିଛି ଅଂଶ ଓଦାହୋଇ ଖସଡା ହୋଇଥିବ, ଯେଉଁଠି ମଲା ଜୀବଜନ୍ତୁ, ପଚାଷଢ଼ା ପରିବା, ମଲା ଗଛ ପଡି ନାକଫଟା ଦୁର୍ଗନ୍ଧ ବାହାରୁଥିବ । ଏସବୁ ସ୍ଥାନରେ ପ୍ରାୟତଃ ଗବଗଛ, ଅନାବନା ଗଛ ଉଠି ଜଙ୍ଗଲ ସୃଷ୍ଟି କରେ । ପୁରୀ ବଗିଚା ସଂପର୍କରେ ମୁଁ ଯାହା ଲେଖୁଛି, ଏଥିରେ ଟିକିଏ ମାତ୍ର ଅଧିକା ଲେଖୁନି । ମୁଁ ପୁରୀ ସହରର ପ୍ରାୟ ପ୍ରତ୍ୟେକ ଅଞ୍ଚଳ ବୁଲି ଦେଖିଛି, ସବୁଠାରେ ମୁଁ ସେହି ଏକ ପ୍ରକାର ଅବସ୍ଥା ଦେଖିଛି ।

ପୁରୀର ସବୁଠାରୁ ବଡ ରାସ୍ତା ଖୁବ୍ ଚଉଡା ଏବଂ ଖୋଲା । ଯାତ୍ରା ସମୟରେ ଏହି ରାସ୍ତା ଉପରେ ସବୁବେଳେ ହଜାର ହଜାର ଯାତ୍ରୀ ଥାଆନ୍ତି । ସହରର ଅନ୍ୟ ରାସ୍ତାମାନ ଯେପରି ସଂକୀର୍ଣ୍ଣ ସେହି ପରିମାଣରେ ଅପରିଷ୍କାର । ସେହି ଗଳି ରାସ୍ତାରେ ଗଲାବେଳେ ସ୍ଥାନୀୟ ଢୋଲବାଜା ସଂଗେ ଶବ ଶୋଭାଯାତ୍ରା ଯିବାର ଦୃଶ୍ୟ ଦେଖିବାକୁ ମିଳିଥାଏ । ଶବ ଶୋଭାଯାତ୍ରାରେ ଗଲାବେଳେ ଲୋକମାନେ ପଇସା ବଦଳରେ ଚାଉଳ ରାସ୍ତା ଉପରେ ଫିଙ୍ଗୁଥାନ୍ତି । ଦାରିଦ୍ର୍ୟତା ଯୋଗୁଁ ପଇସା ଫିଙ୍ଗିବା ସମସ୍ତଙ୍କ ପକ୍ଷେ ସମ୍ଭବ ହୁଏନି । କେତେକ ଗଳି ଏତେ ସଂକୀର୍ଣ୍ଣ ଯେ ତା'ଭିତର ଦେଇ ଯିବା ଅତ୍ୟନ୍ତ କଷ୍ଟକର । ଗଳି ମୁଣ୍ଡରେ ମଇଳା ଜମା ହୋଇଥାଏ । ପ୍ରତ୍ୟେକ ଗଳିରେ ସେହି ଘର ପଛପଟ ବଗିଚା ଦେଖିବାକୁ ମିଳେ । ରାସ୍ତାଗୁଡିକ ବାଲି ରାସ୍ତା ଏବଂ ସୁଖିଲା ମଧ୍ୟ । ବହୁ କମ୍ ଜାଗା, ଯେଉଁଠି ଗ୍ରାଉଣ୍ଡ୍ ଲେଭଲ୍ ତଳୁଆ ସେହି ରାସ୍ତାମାନଙ୍କରେ ପାଣି କାଦୁଅ ଦେଖାଯାଏ । ସେସବୁ ରାସ୍ତାମାନଙ୍କରେ ପାଣି ଜମିକରି ରହୁଥିବା ଯୋଗୁଁ ଜଣେ ଯିବାକୁ ଚାହିଁଲେ ଆଣ୍ଠୁଏ କାଦୁଅ-ପାଣି ଦେଇ ଯିବାକୁ ପଡେ । ସହରର ବିଭିନ୍ନ ସ୍ଥାନରେ ବହୁତ ବଡ ବଡ ପୋଖରୀ ଅଛି । ଏସବୁ ପୋଖରୀ ଗୁଡିକ ହିନ୍ଦୁମାନଙ୍କ ପାଇଁ ପବିତ୍ର ସ୍ଥାନ । କହିବାକୁ ଗଲେ ପୁରୀର ପ୍ରତ୍ୟେକ ଇଞ୍ଚ ମାଟି ମଧ୍ୟ ପବିତ୍ର ବୋଲି କୁହାଯାଏ । ପ୍ରାୟ ପ୍ରତ୍ୟେକ ପୋଖରୀ ଗୁଡିକର ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ଅପରିଷ୍କାର ପାଣି ସାଙ୍ଗକୁ ପୋଖରୀ କୂଳମାନଙ୍କରେ ଉଠିଥିବା ଅନାବନା ଗଛ, ପୋଖରୀ ମଧ୍ୟକୁ ପଶୁଥିବା ମଇଳା ପ୍ରତ୍ୟେକ ପୋଖରୀ ଜଳକୁ ଦୁର୍ଗନ୍ଧମୟ କରିଥାଏ । ପୋଖରୀଗୁଡିକ ସାଧାରଣରେ ନିମ୍ନସ୍ତରରେ ଥିଲାବେଳେ ତାର ଚାରିପଟେ ଘନ ଜନବସତି ଗଢ଼ି ଉଠିଛି ।

ଜୁଲାଇ ମାସ ୨ ତାରିଖ ଦିନ ମୁଁ ଶ୍ୱେତଗଙ୍ଗାର ପାଣିକୁ ପରୀକ୍ଷା କରି ଦେଖିଲି, ସେ ପାଣିରୁ ଖୁବ୍ ଦୁର୍ଗନ୍ଧ ବାହାରୁଥାଏ । ପାଣିର ରଙ୍ଗ ଚକୋଲେଟ୍ ରଙ୍ଗପରି ହୋଇଥିଲା ।

ଶ୍ୱେତଗଙ୍ଗା ଖୁବ୍ ନିମ୍ନଭାଗରେ ଥିବା ଯୋଗୁଁ ଏହାର ପାଣି ମଧ୍ୟ ନିକଟସ୍ଥ କୂଅମାନଙ୍କୁ ଯାଏ । ମୁଁ ବିଶ୍ୱାସ କରୁଛି ସହରର କୂଅ ପାଣି ମଧ୍ୟ ବହୁଳ ଭାବେ ଦୂଷିତ । ପ୍ରାୟ କୂଅଗୁଡ଼ିକ ଭଲ ଭାବେ ନିର୍ମାଣ କରାଯାଇ ନଥିବା ଯୋଗୁଁ ସେମାନଙ୍କର ଅବସ୍ଥା ମଧ୍ୟ ଭଲ ନୁହେଁ । ସ୍ଥାନୀୟ ଲୋକମାନେ ସବୁ ପୋଖରୀରୁ ଯଦିଓ ପାଣି ପିଅନ୍ତିନି ମାତ କୂଅ ପାଣି ସେମାନେ ବ୍ୟବହାର କରନ୍ତି । ପୁରୀରେ କେଉଁ ସାହିରେ କେତେ ଘର ଅଛି ସେ ସଂପର୍କରେ ମୁଁ ଖବର ସଂଗ୍ରହ କରିଥିଲି ।

| | |
|---|---|
| ବାଲିସାହି | ୧୦୯୯ |
| କାଳିକା ଦେବୀ ସାହି | ୪୪୮ |
| ମାଟିମଣ୍ଡପ ସାହି | ୨୯୧ |
| ଦୋଳମଣ୍ଡପ ସାହି | ୫୬୩ |
| ଗୌଡ଼ବାଡ଼ି ସାହି | ୨୮୯ |
| ହରଚଣ୍ଡୀ ସାହି | ୯୮୪ |
| ବାସେଲୀ ସାହି | ୫୯୪ |
| ଚୁଡଙ୍ଗ ସାହି | ୨୭୧ |
| ଦାଣ୍ଡମୂଳ ସାହି | ୩୯୩ |
| ଦଇତାପତି ସାହି | ୨୩୧ |
| ମାର୍କଣ୍ଡ ସାହି | ୧୨୫୪ |
| ମୋଟ | ୬,୩୬୩ ଘର |

ସହରର ୬,୩୬୩ଟି ଘର । ଏଇତକ ଘରେ ପୁରୀ ସହରର ୨୫୦୦୦ରୁ ୩୦,୦୦୦ ବାସିନ୍ଦାମାନଙ୍କ ସହ ତୀର୍ଥଯାତ୍ରୀମାନେ ରହିଥାନ୍ତି । ଅତ୍ୟଧିକ ସଂଖ୍ୟାରେ ଯାତ୍ରୀମାନେ ରହିବା ଏକ ବିରାଟ ସମସ୍ୟା । ୧୮୨୫ ମସିହାର ଷ୍ଟର୍ଲିଂଙ୍କ ଲେଖାରୁ ଜଣାଯାଏ ଯେ, ସହରରେ ୫,୭୪୧ଟି ଘର ଥିଲା । ସହର ବୃଦ୍ଧି ଏବଂ ଅଧିବାସୀମାନଙ୍କ ସୁଖ ସ୍ୱାଛନ୍ଦ୍ୟ, ମନ୍ଦିର ସହିତ ପୁଙ୍ଖାନୁପୁଙ୍ଖ ଭାବେ ଜଡ଼ିତ । ତାଙ୍କ ଲେଖା କହେ 'ସହର ମୁଖ୍ୟ ରାସ୍ତାର ଉଭୟ ପାର୍ଶ୍ୱରେ ଧାର୍ମିକ ଅନୁଷ୍ଠାନ 'ମଠବାଡ଼ି' ସବୁ ନିର୍ମାଣ କରାଯାଇଛି । ଏହି ମଠମାନଙ୍କର ଗୃହ ସବୁ ଇଟା କାନ୍ଥ, ଇଟା ଖୁଣ୍ଟରେ ତିଆରି । ସାମ୍ନା ପଟକୁ ନୂଆଣିଆ ଚାଳ ସହିତ ଅଣଓସାରିଆ ବାରଣ୍ଡା ଏବଂ ଛୋଟ ବଡ଼ ଗଛ ଦେଇ ମଠ ଭିତରକୁ ପ୍ରବେଶ ପଥ ଥାଏ । ଖୁବ୍ ପ୍ରସସ୍ତ ରାସ୍ତାର ଶେଷମୁଣ୍ଡ ଦକ୍ଷିଣ ପଟେ ବିରାଟକାୟ ମନ୍ଦିର ମାଜିଷ୍ଟିକାଲି ଦଣ୍ଡାୟମାନ ହୋଇ ଚିତ୍ରୋପମ ଉପସ୍ଥିତି ସୃଷ୍ଟି କରୁଛି ସତ କିନ୍ତୁ ରାସ୍ତାରେ ଜମିଥିବା ମଇଳା, ସାଲୁବାଲୁ ହେଉଥିବା ଜଟାଜୁଟଧାରୀ ବାବାଜୀଙ୍କ ସାଙ୍ଗକୁ

ନାନା ପ୍ରକାର ଅପରିଷ୍କାର ପଦାର୍ଥ ସହରର ପ୍ରତ୍ୟେକ ସ୍ଥାନରେ ଦେଖାଯାଇ ଜଣଙ୍କ ମନ ମଧ୍ୟରେ ବିତୃଷ୍ଣା ଭାବ ସୃଷ୍ଟି କରୁଛି । ଷ୍ଟର୍ଲିଂ ଏକଥା ଲେଖିବାର ୪ ୩ବର୍ଷ ବିତିଯାଇଥିଲେ ମଧ୍ୟ ସହରର ପରିମଳ ବ୍ୟବସ୍ଥାରେ ସେପରି କିଛି ଉନ୍ନତି ଘଟିନି ବରଂ ସହରରେ ମଇଳା ଗଦା, ଦୁର୍ଗନ୍ଧ ନଳା, ଏପରି ଅବସ୍ଥାରେ ପହଞ୍ଚିଛି ଯେ, ଜଣେ ଦର୍ଶକ ଏସବୁ ଦେଖି ଫେରିଯିବାକୁ ଇଚ୍ଛା କରିବ । ମୁଖ୍ୟତଃ ସାହି, ବସ୍ତି, ଗଳିକନ୍ଦିରେ ପରିମଳ ଅବସ୍ଥା ଅତ୍ୟନ୍ତ କଦର୍ଯ୍ୟ । ମଠଗୁଡ଼ିକର ନିର୍ମାଣ ବେଶ୍ ଉଚ୍ଚମାନର, ପ୍ରଶସ୍ତ, ପରିଷ୍କାର । ଏସବୁ ମଠମାନ ଧାର୍ମିକ ଅନୁଷ୍ଠାନ । କେତେକ ମଠର ଧନ ସମ୍ପତ୍ତି ଆୟ ପନ୍ଥା ଭଲ ଥିବା ଦୃଷ୍ଟିରୁ ସେସବୁ ମଠଗୁଡ଼ିକ ଆର୍ଥିକ ଦୃଷ୍ଟିରୁ ବେଶ୍ ପ୍ରଭାବଶାଳୀ । ମଠ ସମ୍ପତ୍ତିର ମାଲିକ ହେଲେ ମହନ୍ତ ଯେଉଁମାନେ ମଠର ପରିଚାଳନା ଦାୟିତ୍ୱରେ ରହିଥାନ୍ତି । ବେଳେ ବେଳେ ମଠର ପରିଚାଳନା ମଠେଦାରଙ୍କ ହାତରେ ଦିଆଯାଇଥାଏ । ମହନ୍ତ, ମଠେଦାରମାନେ କେତେକ ମଠର ବଂଶାନୁକ୍ରମିକ ଭାବେ ମଠର ଅଧିକାରୀ ହୋଇଥାନ୍ତି । କେତେକ ସ୍ଥାନରେ ମହନ୍ତମାନେ ପୁରୋହିତ କାର୍ଯ୍ୟ କରନ୍ତି ମାତ୍ର ଏହ ସବୁ ଜାଗାରେ ପ୍ରଯୁକ୍ତ ନୁହଁ । ଭାରତ ବର୍ଷର ପ୍ରତ୍ୟେକ ସ୍ଥାନକୁ ଯାତ୍ରୀମାନଙ୍କୁ ଜଗନ୍ନାଥ ଦର୍ଶନ ପାଇଁ ପ୍ରଲୁବ୍ଧ କରି ଆଣିବା ପାଇଁ ପଣ୍ଡାମାନେ ତାଙ୍କ ଲୋକଙ୍କୁ ପଠାନ୍ତି । ଏମାନଙ୍କୁ ଧୂଳିଆପଣ୍ଡା କହନ୍ତି । (ପିଲିଗ୍ରିମିଜ୍ ଟାଉଟର) । ଧୂଳିଆ ପଣ୍ଡାମାନେ ଯାତ୍ରୀଙ୍କୁ ଧରି ପୁରୀରେ ପହଞ୍ଚିଲେ ସେମାନଙ୍କୁ ପଠାଇଥିବା ପଣ୍ଡାମାନେ ଯାତ୍ରୀମାନଙ୍କୁ ତାଙ୍କ ଲଜିଂ ଘରେ ରଖନ୍ତି ଏବଂ ପୁରୀରେ ସେମାନେ ରହିବା ସମୟରେ ତାଙ୍କର ଗାଇଡ୍ ଭାବେ ମନ୍ଦିର ଏବଂ ମନ୍ଦିର ବାହାରେ କାର୍ଯ୍ୟ କରିଥାନ୍ତି । ମନ୍ଦିର ଭିତରେ ଯେଉଁସବୁ କାର୍ଯ୍ୟ ହୁଏ, ସେଥିପାଇଁ ଏକ ସ୍ୱତନ୍ତ୍ର ବ୍ୟବସ୍ଥା ଥାଏ । କେବଳ ଯେ ପଣ୍ଡାମାନେ ଯାତ୍ରୀମାନଙ୍କୁ ଆଣି ତାଙ୍କ ଲଜିଂରେ ରଖନ୍ତି ଏକଥା ନୁହେଁ, ଦେଖିବାକୁ ଗଲେ ପୁରୀ ସହରର ପ୍ରତ୍ୟେକ ଘର ଗୋଟିଏ ଗୋଟିଏ ଲଜିଂ ହାଉସ୍ । ସହରର କେତେକ ପ୍ରମୁଖ ଅଞ୍ଚଳରେ ମୁଁ ଦେଖିଛି, କେତେକ ଖାଲୁଆ ଜାଗା, ଖାଲଢ଼ିପ ଅଞ୍ଚଳକୁ ଲୋକମାନେ ଝାଡ଼ା ଫେରିବା ପାଇଁ ବ୍ୟବହାର କରିଥାନ୍ତି । ଏପରି କରିବା ଦ୍ୱାରା ସେଇ ପାଖ ଆଖ ଅଞ୍ଚଳର ବାୟୁମଣ୍ଡଳ ଦୂଷିତ ହେବା ସଂଗେ ଦୁର୍ଗନ୍ଧ ଜାତ ହୁଏ । ଚନ୍ଦନ ପୋଖରୀ ପାର ହୋଇଗଲା ପରେ ସେପଟ ରାସ୍ତା ଦେଇ ଯିବା ଅସମ୍ଭବ ହୋଇପଡ଼େ । ମୁଁ ଦେଖିଛି, ସ୍ଥାନୀୟ ଲୋକମାନେ ମଧ୍ୟ ସେଇବାଟ ଦେଇ ଗଲାବେଳେ ନାକରେ ହାତଦେଇ ଶୀଘ୍ର ଶୀଘ୍ର ପଳାଇ ଯାଆନ୍ତି । ଦୃଢ଼ ହସ୍ତରେ ଏସବୁକୁ ବନ୍ଦ କରିବା ଦରକାର । ପୁରୀ ସହରର କେତେଗୁଡ଼ିଏ ପୁଷ୍କରିଣୀ ଅତ୍ୟନ୍ତ ସୁନ୍ଦର । ଚନ୍ଦନ ପୋଖରୀ ଏବଂ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ଦୁଇଟିର ଗଠନ ଏବଂ ବିଶାଳତାକୁ ଦେଖି ମୁଁ ସ୍ତବ୍ଧ ହୋଇଯାଇଥିଲି । ପ୍ରଥମଟି ସହରର ମଝିରେ ଥିଲାବେଳେ ପଛଟି ପୂର୍ବ ଦିଗରେ ସହରର ଶେଷ ଭାଗରେ ଅବସ୍ଥିତ । ଦୁଇଟି ଯାକ ବେଶ୍ ବଡ ପୁଷ୍କରିଣୀ । ଯଦି ସ୍ଥାନୀୟ ଲୋକମାନେ

ସହରର ଦୁଇଟି ପୁଷ୍କରିଣୀ ପାଣିକୁ ପିଇବା ପାଇଁ ଛାଡି ଦିଅନ୍ତି । ତେବେ ଏହା ସହର ସ୍ୱାସ୍ଥ୍ୟ ଅବସ୍ଥାରେ ଉନ୍ନତି ଘଟାଇ ପାରନ୍ତା । ମାତ୍ର ମୁଁ ଯାହା ଶୁଣିଲି, ସେମାନେ ସେକଥା କରିବେନି । ମୋ' ମତରେ ସରକାର ଯଦି କିଛି କଠିନ ନିୟମ ପ୍ରଣୟନ କରି ଏହି ପୁଷ୍କରିଣୀମାନଙ୍କ ଜଳକୁ ଦୂଷିତରୁ ରକ୍ଷା କରିପାରନ୍ତେ, ତେବେ କିଛି ଭଲ ହୁଅନ୍ତା । ଯେତେଦିନ ପର୍ଯ୍ୟନ୍ତ ହଜାର ହଜାର ଯାତ୍ରୀ ଚନ୍ଦନ ଏବଂ ଅନ୍ୟ ପୋଖରୀମାନଙ୍କରେ ଗାଧୁଆ ପାଧୁଆ କରି ସେଇ ପାଣିକୁ ପିଇବେ, ଯେତେଦିନ ପର୍ଯ୍ୟନ୍ତ ଏପରି ଧାର୍ମିକ ବିଶ୍ୱାସ ପ୍ରଚଳନ ହୋଇଥିବ, ସେତଦିନ ପର୍ଯ୍ୟନ୍ତ ହଇଜା ଏବଂ ଅନ୍ୟ ରୋଗାକ୍ରାନ୍ତ ଲୋକମାନଙ୍କୁ ବଞ୍ଚାଇବା କଷ୍ଟକର ହେବ । ବହୁ ପରିମଳବିତ୍‌ଙ୍କ ମତରେ ଏହି ପୋଖରୀର ଜଳସବୁ ବିଭିନ୍ନ ରୋଗର ବାହକ । ମୋ' ମତରେ ଲୋକମାନେ ଯେକୌଣସି ପୋଖରୀର ପାଣି ପିଇବାକୁ ନିଷ୍ପତ୍ତି କରିବେ, ସେଇ ପୋଖରୀରେ ଗାଧୁଆ ପାଧୁଆ, ଲୁଗାସଫା, ଗୋରୁଗାଈଙ୍କୁ ଗାଧୋଇବା, ମଇଳା ପକାଇବା କାର୍ଯ୍ୟ ବନ୍ଦ କରନ୍ତୁ । ମୁଁ ଜାଣେ, ପୁରୀରେ ଏପରି ଗୋଟେ କାର୍ଯ୍ୟ ହାସଲ କରିବା କଷ୍ଟକର । ତେବେ ଚେଷ୍ଟାକଲେ ଯେ ଏହା ସମ୍ଭବ ହେବନି ଏକଥା ନୁହଁ । ଦୂଷିତ ପୋଖରୀମାନଙ୍କୁ ଲାଗି ଯେଉଁସବୁ କୂଅମାନ ଅଛି, ତାର ପାଣି ମଧ୍ୟ ଦୂଷିତ । ସେସବୁ କୂଅଗୁଡିକର ପାଣିକୁ ଉଝାଳି ସଫା କରିବା ଦରକାର, ନହେଲେ ଏସବୁ କୂଅମାନଙ୍କୁ ପୋତିଦେବା ଉଚିତ୍ । ମୁଁ ଏକଥା କହୁଛି, କାରଣ ମୁଁ ଭଲ ଭାବେ ଜାଣେ ଏସବୁ କୂଅପାଣି ଅତ୍ୟନ୍ତ ଦୂଷିତ । ଜଣେ ଭଲ ବିଶେଷଜ୍ଞ, ପୁରୀ ସହରର କୂଅ, ପୋଖରୀ ପାଣିକୁ ପରୀକ୍ଷା କରି ଏହା କେତେଦୂର ପିଇବା ଯୋଗ୍ୟ ସେକଥା କହିବା ଦରକାର । ଖାଲି ପୁରୀ କାହିଁକି, ପୁରୀକୁ ମେଦିନାପୁର ଠାରୁ ବାଲେଶ୍ୱର, ଭଦ୍ରକ, କଟକ, ପିପିଲି ଦେଇ ଆସିଥିବା ରାସ୍ତାକଡରେ ଥିବା କୂଅମାନଙ୍କର ପାଣିକୁ ମଧ୍ୟ ପରୀକ୍ଷା କରିବା ଦରକାର । ପୁରୀ ସହର ପୂର୍ବ ଏବଂ କେତେକ ପରିମାଣରେ ଦକ୍ଷିଣ; ଉତ୍ତର ଦିଗରେ ବାଲିକୁଦମାନ ସହରକୁ ଘେରିକରି ଅଛି । ସେସବୁ ସ୍ଥାନରେ ମଧ୍ୟ ସହର ବାସିନ୍ଦାମାନେ ଝାଡା ଫେରନ୍ତି । ମାତ୍ର ସେସବୁ ସ୍ଥାନମାନଙ୍କରେ କୌଣସି ଟ୍ରେଞ୍ଚ କିମ୍ବା ଲାଟିନ୍ ଥିଲେ ସେସବୁ ସ୍ଥାନ ଅପରିଷ୍କାର ହୁଅନ୍ତା ନାହିଁ । ସେହିପରି ଖୋଲା ଜାଗାରେ ଝାଡା ଫେରି ଅପରିଷ୍କାର କରିବା ଦ୍ୱାରା ଦୁର୍ଗନ୍ଧ ବାୟୁ ସାରା ସହରକୁ ଆସି ସହରର ବାୟୁମଣ୍ଡଳକୁ ଦୂଷିତ କରୁଛି । ସହରର ପଶ୍ଚିମ ଦିଗରେ ଖାଲୁଆ ଜଳପୂର୍ଣ୍ଣ ସ୍ଥାନ ଯୋଗୁଁ ସେପଟକୁ ଯିବା କଷ୍ଟକର । ସହରର ଦକ୍ଷିଣପଟେ, ନିକାଞ୍ଚନ ସ୍ଥାନରେ ସ୍ୱର୍ଗଦ୍ୱାର ଅବସ୍ଥିତ । ସ୍ୱର୍ଗ ହେଉଛି ସ୍ୱର୍ଗର ରାଜା ଇନ୍ଦ୍ରଙ୍କର ବାସସ୍ଥାନ । ଏହି ସ୍ଥାନରେ ହିନ୍ଦୁମାନେ ସେମାନଙ୍କ ମୃତବ୍ୟକ୍ତିଙ୍କ ଦେହକୁ ଦାହ କରିଥାନ୍ତି । ଯଦିଓ ଏହି ସ୍ଥାନଟି ଏକ ଅଦ୍ଭୁତ ସ୍ଥାନ, ମାତ୍ର ହିନ୍ଦୁମାନଙ୍କ ପାଇଁ ଏହା ଏକ ପବିତ୍ର ସ୍ଥାନ । ଏହି ସ୍ଥାନର ଚାରିପଟେ ବାଲିକୁଦ ଏବଂ କୁଦ ପାଖରେ କେତେଗୁଡିଏ ମଠ ଅଛି । ମୃତବ୍ୟକ୍ତିଙ୍କ ଦେହ ଭସ୍ମୀଭୂତ ହୋଇଗଲା

ପରେ ସେହି ନିର୍ଜନ ବାଲି ଉପରେ ପୋଡା ପାଉଁଶ ପଡି ରହେ । ବେଳେ ବେଳେ ଦରପୋଡା ଶବ ମଧ୍ୟ ପଡିବାର ଦେଖାଯାଏ । ପ୍ରକୃତରେ ଏହା ଏକ ପ୍ରକାର ଭୟାନକ ଦୃଶ୍ୟ । ଅବଶ୍ୟ ଦରପୋଡା କିମ୍ବା ପୋଡା ନହୋଇ ପଡିଥିବା ଶବଗୁଡିକୁ ଖୁବ୍ କମ୍ ସମୟ ମଧ୍ୟରେ ଶାଗୁଣା, ବିଲୁଆ, କୁକୁର ସମସ୍ତେ ସଫାକରି ଦେଇଥାନ୍ତି । କେବଳ ସଫେଦ ମୁଣ୍ଡ ଏବଂ କେତେଖଣ୍ଡ ହାଡକୁ ଛାଡିଦେଲେ ମଶାଣି ଭୂଇଁରେ ଆଉ କିଛି ଦେଖାଯାଏ ନାହିଁ । ଓଡ଼ିଶାରେ ରହୁଥିବା ୟୁରୋପିଆନମାନେ ଏପରି ସ୍ଥାନର ନାମକରଣ କରିଥାନ୍ତି 'ଗୋଲ୍‌ଗୋଥା' । ପୁରୀ ସହରର ପାଖାପାଖି ଏପରି ବହୁ ସ୍ଥାନ ଅଛି । ଦିନେ ସଂଧ୍ୟା ଭ୍ରମଣରେ ମିଃ ରାବନ୍‌ଙ୍କ ସଂଗେ ସହରର ଉତ୍ତର ଦିଗ ବାଲିବନ୍ତ ଆଡେ ବୁଲିଗଲା ବେଳେ ଗୋଟିଏ ସ୍ଥାନରେ କେତେକ ଛପରଲି ଘରର ଭଗ୍ନାବଶେଷ ଦେଖିବାକୁ ପାଇଲି । ଏସବୁ ଚାଳିଆ ଘର ୧୮୬୬ ମସିହା ଦୁର୍ଭିକ୍ଷ ସମୟରେ ଦୁର୍ଭିକ୍ଷ ପ୍ରପୀଡିତ ଲୋକମାନଙ୍କୁ ଆଶ୍ରୟ ଦେବା ପାଇଁ ତିଆରି ହୋଇଥିଲା । ଏହି ଆଶ୍ରୟସ୍ଥଳ ପାଖକୁ ଲାଗି ଗୋଟିଏ 'ଗୋଲଗୋଥା' ଥିଲା । ଏହାର ୨୦୦ ଫୁଟ୍ ବ୍ୟାସାର୍ଦ୍ଧ ମଧ୍ୟରେ ୬୦ଟି ମଣିଷ ମୁଣ୍ଡ ପଡିଥିବାର ମୁଁ ଗଣିଥିଲି ଏବଂ ଏହାଠାରୁ ଅଳ୍ପ ଦୂରରେ ୪ଫୁଟ ରେଡିୟସ ମଧ୍ୟରେ ଆଉ ୨୪ଟି ମୁଣ୍ଡ ପଡିଥିଲା । ଜଣେ ସ୍ଥାନୀୟ ଲୋକ ମୋତେ କହିଥିଲେ, ସେଇ ସ୍ଥାନର ବାଲିତଳେ ବହୁ ଲୋକଙ୍କ ଅସ୍ଥି, କଙ୍କାଳ ପୋତିହୋଇ ଯାଇଛି । ସେହି ସ୍ଥାନର ଦୃଶ୍ୟ 'ଦୁର୍ଭିକ୍ଷ ଏବଂ ମୃତ୍ୟୁ'ର ଏକ ସ୍ମାରକୀ ଭାବେ ଠିଆ ହୋଇଥିଲା, ଯାହାକୁ ଦେଖି ମନ ଦୁଃଖରେ ଭାଙ୍ଗି ପଡୁଥିଲା । ଏଠାକାର ବାଲିବନ୍ତମାନ ମଧ୍ୟ ପିକ୍ୟୁଲିଆର । ସମୁଦ୍ରକୂଳ ଠାରୁ ସହରର ବାହାର (ସହରର ପୂର୍ବ ସୀମା ପର୍ଯ୍ୟନ୍ତ) ସୀମା ପର୍ଯ୍ୟନ୍ତ ବାଲିର ଏକ ବିରାଟ ପ୍ରାନ୍ତ ଲମ୍ବି ଯାଇଛି । ସବୁ ଜାଗାରେ ଏହି ବାଲିପଡିଆ ସମତଳ ନୁହଁ, କେଉଁଠି ଖାଲ ତ କେଉଁ ଜାଗାରେ କୁଦ । ସାମୁଦ୍ରିକ ଝଡ ହିଁ ଏହାର ସୃଷ୍ଟିକାରୀ । ହିନ୍ଦୁମାନଙ୍କ ପୁରାଣ କୁହେ, ବର୍ତ୍ତମାନର ପୁରୀ ସହର ବହୁ ବର୍ଷ ତଳେ ବର୍ଷ ବର୍ଷ ଧରି ସମୁଦ୍ର ଗର୍ଭରେ ଥିଲା । ବର୍ତ୍ତମାନର ସରକାରୀ ଅଫିସ୍, ୟୁରୋପିୟାନ ଅଫିସରମାନଙ୍କ ବାସଗୃହ, ସବୁ ସମୁଦ୍ର କୂଳରେ ଥିବା ଯୋଗୁଁ ସବୁବେଳ ପାଇଁ ବଙ୍ଗୋପସାଗରରେ ଯେତେବେଳେ ଯେଉଁ ପ୍ରକାର ବାୟୁ ପ୍ରବାହମାନ ହୁଏ, ତାର ସମ୍ମୁଖୀନ ହୋଇଥାନ୍ତି । ସମୁଦ୍ର କୂଳର ଉତ୍ତରଦିଗ ଆଡକୁ ଏକ ନିଛାଟିଆ ବାଲିବନ୍ତରେ ୟୁରୋପିୟାନ ମାନଙ୍କର ସମାଧିସ୍ଥଳ । ଏହି ସମାଧି ସ୍ଥଳରେ ଗୋଟିଏ ହେଲେ ଗଛ ନାହିଁ କି ପାଖଆଖରେ ଘାସ ଉଠିବା ଦେଖାଯାଏ ନାହିଁ । ଏହାର ଚାରିପଟେ କେବଳ ବାଲି - ବାଲିଛଡା ଆଉ କିଛି ନାହିଁ । ଝଡ ସମୟରେ ସମୁଦ୍ରର ବାଲି ଉଡି ସମାଧି ସ୍ଥଳର ମନୁମେଣ୍ଟମାନଙ୍କୁ ବାଲିରେ ପୋତି ଦେବା ସଂଗେ ବାଲିଝଡରେ ସମାଧି ସ୍ତମ୍ଭରେ ଲେଖାଯାଇଥିବା 'ସ୍ମୃତିଲିପି' ଆସ୍ତେ ଲିଭିଯାଇ ପଢ଼ି ହେଉନି । ମୁଁ ମଧ୍ୟ ଚେଷ୍ଟାକରି କେତେକ ସ୍ମୃତି ସ୍ତମ୍ଭରେ ଲେଖି ଯାଇଥିବା

ଲିପିକୁ ପଢ଼ିପାରି ନଥିଲି । ସାମୁଦ୍ରିକ ବାଲି ଝଡର ପ୍ରଭାବରେ ଗ୍ରେ-କ୍ଲୋରାଇଟ୍ ସ୍ଲେଟ୍ ଉପରେ ଖୋଦିତ ହୋଇଥିବା ଅକ୍ଷର ନଷ୍ଟ ହେବାକୁ ବସିଲାଣି । ଏହି ସ୍ଥାନର ଅବସ୍ଥା ଅତ୍ୟନ୍ତ ଶୋଚନୀୟ - ପ୍ରକୃତରେ ଦେଖିଲେ ଦୁଃଖ ଲାଗେ । ମିଃ ଲାଉରୀ ଏହି ସ୍ଥାନକୁ 'ଏ ସ୍ମଲ୍ ମାଗାଜିନ୍ ଅଫ୍ ମୋଟାଲିଟ୍' କହି ଦେଖିବା ପାଇଁ ଏହା ଏକ ଅଯୋଗ୍ୟ ସ୍ଥାନ ନୁହେଁ ବୋଲି ବର୍ଣ୍ଣନା କରିଛନ୍ତି । ମିଃ ରାବନ୍‌ଙ୍କ ଭାଷାରେ, ସହରର ପରିବେଶ ହେଲା 'ପୁରୀର ଭୌଗୋଳିକ ସ୍ଥିତି, ବହୁ ଦୃଷ୍ଟିରୁ ଅଜବ ପ୍ରକାର ।' ବାଲିଆ ସମତଳ ଭୂମି ଉପରେ ସହରର ଅବସ୍ଥିତି ଥିଲାବେଳେ ଠିକ୍ ସହର ତଳକୁ ଆଲୁଭିୟାଲ ମୃତ୍ତିକାର ଏକ ବିଶାଳ ଅଞ୍ଚଳ, ଯେଉଁ ସ୍ଥାନ ପ୍ରତ୍ୟେକ ବର୍ଷ ବନ୍ୟା ଦ୍ୱାରା ପ୍ଲାବିତ ହୁଏ । ସହରର ଉତ୍ତର ଦିଗରେ ଏହି ବିସ୍ତୀର୍ଣ୍ଣ ସନ୍ତସନ୍ତିଆ ସ୍ଥାନ, ଭାର୍ଗବୀ ନଦୀରୁ ବାହାରି ଥିବା ଗୋଟିଏ ଛୋଟିଆ ନଦୀ ଦ୍ୱାରା ସହରଠାରୁ ବିଚ୍ଛିନ୍ନ ହୋଇଛି । ପୁରୀ ସହରଠାରୁ ପ୍ରାୟ ମାଇଲିଏ ପରେ 'ସମହରାପାଟ', ଗୋଟିଏ ଛୋଟିଆ ଅଗଭୀର ହ୍ରଦ । ବର୍ଷା ପାଣି କମିଗଲେ ଲୋକମାନେ ଏହି ପାଟର ଧାରାରେ ଧାନ ଫସଲ କରନ୍ତି । ସହରର ଅନ୍ୟ ତିନି ଦିଗରେ ବିସ୍ତୀର୍ଣ୍ଣ ବାଲିବନ୍ତ । ଏ ସମସ୍ତ ବାଲି ପଡିଆ, କୁଦମାନଙ୍କ ଠାରୁ ସହରର କେତେକ ଅଂଶ ନିମ୍ନ ଭାବରେ ଅବସ୍ଥିତ ହୋଇଥିବା ଯୋଗୁଁ ବର୍ଷାଦିନେ ବର୍ଷା ପାଣି ନିଷ୍କାସନ ହେବାରେ ଅସୁବିଧା ହୁଏ ।'

(Vide Report No. 93T dt. 19th Feb-1868)

ମୁଁ ବର୍ତ୍ତମାନ ପୁରୀର ବିଭିନ୍ନ ଅଞ୍ଚଳ ସଂପର୍କରେ ବର୍ଣ୍ଣନା କଲି ଏବଂ ଏସବୁ ସ୍ଥାନର ବିଚିତ୍ର ବିଷୟରେ ମଧ୍ୟ କହିଛି । ଏସବୁ ରିପୋର୍ଟରୁ ଜଣାପଡିବ ଯେ, ପୁରୀ ସହରକୁ ମୁଁ ଏକ ଆବର୍ଜନାପୂର୍ଣ୍ଣ ସହର ଭାବେ ଧରି ନେଇଛି । ସାନିଟାରୀ ଦୃଷ୍ଟିକୋଣରୁ ଏହି ସହରର ଅତ୍ୟନ୍ତ ଆବଶ୍ୟକୀୟ କାର୍ଯ୍ୟ କଣ ହେବା ଦରକାର ସେକଥା ମୁଁ ମଧ୍ୟ ଭାବିପାରୁନି । ଏତିକି କୁହାଯାଇପାରେ ଯେ, ସବୁ ଦୃଷ୍ଟିରୁ ସହରର ପରିମଳ ବ୍ୟବସ୍ଥାର ଉନ୍ନତି ଅତ୍ୟନ୍ତ ଜରୁରୀ । ସହର ଆବର୍ଜନାପୂର୍ଣ୍ଣ ହେବାର ବହୁ କାରଣ ଅଛି ଏବଂ ସବୁ ଅଞ୍ଚଳର ଅବସ୍ଥା ସେହିପରି । ବଡଦାଣ୍ଡକୁ ଛାଡିଦେଲେ ପ୍ରାୟ ସବୁ ଅଞ୍ଚଳ ଦୁର୍ଗନ୍ଧମୟ, ନାକରେ ହାତ ନଦେଇ ଚାଲି ହେବନି । ବଡଦାଣ୍ଡକୁ ଆସିଲେ ଟିକିଏ ଫ୍ରେସ୍ ଏୟାର ମିଳିଥାଏ । ସହରରେ ଡ୍ରେନେଜ୍ ସିଷ୍ଟମ ନାହିଁ, କି ସହରକୁ ପରିଷ୍କାର ରଖିବା ପାଇଁ କିଛି ବନ୍ଦୋବସ୍ତ ନାହିଁ । ମୁଁ ଦେଖୁଛି, ପୁରୀ ସହରର କୌଣସି ରାସ୍ତାରେ ରାସ୍ତା ଚଟାଣ ନାହିଁ । କେଉଁ ଅଜଣା ଯୁଗରୁ ପିଇବା ପାଣିର ମୂଳଉତ୍ସ ମଧ୍ୟ ଦୂଷିତ । ଯୁଗ ଯୁଗ ଧରି ବାସିନ୍ଦାମାନେ ସହରକୁ ଆବର୍ଜନାମୟ କରି ରଖିବାରେ ଚାଲିଛନ୍ତି । ଏବେ ମଧ୍ୟ ବହୁ ସ୍ଥାନରେ ପଚାସଢ଼ା ଜିନିଷମାନ ପଡି ସେଥିରୁ ଦୁର୍ଗନ୍ଧ ବାହାରୁଛି । ପ୍ରତ୍ୟେକ ଘର ପଛପଟେ ଥିବା

ବଗିଚାମାନଙ୍କରେ ଏପରି ପଚାସଢ଼ା ଜିନିଷରେ ଭର୍ତ୍ତି ହୋଇଛି ଯେ, ସେସବୁ ସ୍ଥାନକୁ ଯିବା ମଧ୍ୟ କଷ୍ଟକର । ପୁରୀ ସହର ଜଳବାୟୁ, ଉଷ୍ଣମୟ ବାୟୁ ହୋଇଥିବା ଯୋଗୁଁ ଏଣେ ତେଣେ ଫୋପଡା ଯାଇଥିବା ଜିନିଷ ରାସ୍ତାକଡ ଠାରୁ ବଗିଚା ମଧ୍ୟରେ ପଚି, ସଢ଼ି ସେ ଅଞ୍ଚଳର ବାୟୁମଣ୍ଡଳକୁ ଦୂଷିତ କରୁଛି । ମଲା ଜୀବଜନ୍ତୁଙ୍କୁ ସହର ଭିତରେ ପକାଇବା ଏକ ପ୍ରକାର ଅପରାଧ ହୋଇଥିଲେ ମଧ୍ୟ ଏସବୁ ବିଭିନ୍ନ ସ୍ଥାନରେ ପଡି ପଚିସଢ଼ି ଗନ୍ଧ ହୁଏ । ସହରର ପ୍ରତ୍ୟେକ କୋଣର ବାୟୁମଣ୍ଡଳ ଦୁର୍ଗନ୍ଧମୟ, ଶ୍ୱାସରୋଧିକ୍ । ଅମ୍ଳଜାନ ବାଷ୍ପର ଅଭାବ ଦେଖାଗଲା ବେଳେ କାରବୋନିକ୍ ଏସିଡ୍, ଆମୋନିଆ, ଅଙ୍ଗାରକାମ୍ଳ ବାଷ୍ପ ଏତେ ପରିମାଣରେ ବାୟୁମଣ୍ଡଳକୁ ଆଚ୍ଛାଦିତ କରିଛି ଯେ, ଶ୍ୱାସ ପ୍ରଶ୍ୱାସରେ ନେଉଥିବା ବାଷ୍ପ ମଧ୍ୟ କେତେକାଂଶରେ ବିଷାକ୍ତ । ପ୍ରକୃତରେ ସବୁ ସତକଥା ଲେଖିବାକୁ ମୁଁ ଶବ୍ଦ ଖୋଜି ପାଉନି ।

ଯୁଗ ଯୁଗ ଧରି ଏହି ସହରରେ ଲକ୍ଷ ଲକ୍ଷ ଗରିବ, ଅନାଥ, ରୋଗାଗ୍ରସ୍ତ ଜନତା ଧାର୍ମିକ ଦୃଷ୍ଟିକୋଣରୁ ବିଭିନ୍ନ ଅସୁବିଧା ମଧ୍ୟରେ ସମବେତ ହୋଇଥାନ୍ତି । ଏଇଠି ବିଭିନ୍ନ ସମୟରେ ହଜାର ହଜାର ଲୋକ ମୃତ୍ୟୁବରଣ କରିଛନ୍ତି । ଏଇଠି ହଇଜା, ଝାଡାବାନ୍ତି, ଦୁର୍ଭିକ୍ଷ, ବହୁ ସମୟରେ ତାଙ୍କର ଶକ୍ତି ପ୍ରଦର୍ଶନ କରିଛନ୍ତି । ଏଇଠି ଭବିଷ୍ୟତରେ ଲକ୍ଷ ଲକ୍ଷ ତୀର୍ଥଯାତ୍ରୀ ପୁଣି ବିଭିନ୍ନ ସମୟରେ ଏକତ୍ରିତ ହେବେ ଏବଂ ସାନିଟାରୀ ବ୍ୟବସ୍ଥାର ଅଭାବ ଯୋଗୁଁ ବିଭିନ୍ନ ରୋଗରେ ପଡି ମୃତ୍ୟୁବରଣ କରିବେ । ବର୍ଷକର ବିଭିନ୍ନ ଋତୁରେ ସହରର ବାସିନ୍ଦାମାନେ ନାନା ପ୍ରକାର ରୋଗରେ ଆକ୍ରାନ୍ତ ହେଉଛନ୍ତି । ଏସବୁ ରୋଗର ଦୂରୀକରଣ ବ୍ୟବସ୍ଥା ହୋଇପାରନ୍ତା, ଯଦି ପରିମଳ ବ୍ୟବସ୍ଥା ପାଇଁ ସରକାର କିଛି ଅର୍ଥ ବ୍ୟବସ୍ଥା କରି ସହରର ପରିମଳ ବ୍ୟବସ୍ଥାରେ ଉନ୍ନତି ଘଟାନ୍ତେ ।

ଏଇଠି ସବୁଦିନ ପାଇଁ ପ୍ରଭାବିତ କଲାଭଳି ବହୁ ପ୍ରକାର ନୈତିକ ଏବଂ ଶାରୀରିକ ସଂଦୂଷଣ ଏବଂ ଅଧୋଃପତନର ପ୍ରଚାର ହୁଏ, ଏଇଠି ମଣିଷର ଦୁଃଖ ଦୁର୍ଦ୍ଦଶା ଯେପରି ଚିରସ୍ଥାୟୀ ହୋଇ ରହିଯାଇଛି । ଏଇଠି ସଂକ୍ରାମକ ରୋଗ ଜନ୍ମ ନେଇ ସବୁ ପ୍ରକାର ସୁବିଧା ଭିତରେ ମହାମାରୀ ଆକାର ଧାରଣକରି ଚାରିଆଡକୁ ବ୍ୟାପିଯାଏ ଏବଂ ଲୋକମାନଙ୍କୁ ମରଣଯନ୍ତା ମଧ୍ୟକୁ ଟାଣିନିଏ, ଏଇଠି ସବୁ ପ୍ରକାର ଜୀବାଣୁ ଜନ୍ମ ନେବାର ଏବଂ ଜୀବନଧାରଣ କରିବାର ସୁବିଧା ପାଆନ୍ତି, ଏଇଠି ମୁଁ ଯେଉଁ ଉପରୋକ୍ତ କଦର୍ଯ୍ୟ ଘଟଣାମାନଙ୍କର ବର୍ଣ୍ଣନା କଲି ତାକୁ ଯଦି ହଟାଇ ଦିଆନଯାଏ, ତେବେ ସହରର ଜନସ୍ୱାସ୍ଥ୍ୟ ବ୍ୟବସ୍ଥା ଏବଂ ସ୍ୱାସ୍ଥ୍ୟ ସୁରକ୍ଷା ଧ୍ୱଂସ ପାଇଯିବ ।

ମ୍ୟୁନିଚର ପ୍ରଫେସର ମାକ୍ସ ପେଟେନ୍‌କୋଫରଙ୍କ ହିସାବ ଅନୁସାରେ ୧ ଲକ୍ଷ ସଂଖ୍ୟା ବିଶିଷ୍ଟ ଗୋଟିଏ ସହରର ଲୋକମାନେ ଯେତିକି ପରିମାଣର ମଳମୂତ୍ର ତ୍ୟାଗ

କରନ୍ତି ଏବଂ ଯେଉଁ ପରିମାଣରେ ତାହା ସହରର ମୃତ୍ତିକା ମଧ୍ୟକୁ ପ୍ରବେଶ କରି ଦୂଷିତ କରେ, ତାହା ୫୦,୦୦୦ ଲୋକଙ୍କୁ ସେତିକି ପରିମିତ ସ୍ଥାନରେ ପୋତିଲେ, ସେ ସ୍ଥାନର ମୃତ୍ତିକା ସେତିକି ପରିମାଣରେ ଦୂଷିତ ହୋଇଥାଏ । (୧୮୬୬ ମସିହା, ଇଣ୍ଟରନ୍ୟାସନାଲ ସାନିଟାରୀ ପ୍ରୋସିଡିଂ, ପେ ୨୯) । ଯଦି ତାଙ୍କ ହିସାବ ପାକ୍ଷିକ ସତ୍ୟ ହୋଇଥାଏ, ତେବେ ଜଗନ୍ନାଥଙ୍କ ମନ୍ଦିର ଚାରିପଟେ ଯେଉଁ ପ୍ରକାର ପ୍ରଦୂଷଣ ବର୍ତ୍ତମାନ ଦେଖାଯାଉଛି, ତାହା ମୁଁ ବର୍ଣ୍ଣନା କରିଥିବା ଅବସ୍ଥାଠାରୁ ଆହୁରି ଅଧିକ ଖରାପ ।

ପୁରୀ ଏବଂ ପୁରୀ ସହରକୁ ଆସୁଥିବା ତୀର୍ଥଯାତ୍ରୀମାନଙ୍କ ସଂପର୍କରେ ଅନୁଧ୍ୟାନ କରିବା ଗୋଟିଏ ବିରାଟ ବିଷୟବସ୍ତୁ । ଏହା କେବଳ ପୁରୀ ସହରକୁ ପ୍ରଭାବିତ କରୁନି କିମ୍ବା ଓଡ଼ିଶାକୁ ନୁହଁ, ସମଗ୍ର ଭାରତ ବର୍ଷର ପ୍ରତ୍ୟେକ ଅଞ୍ଚଳର ଅବସ୍ଥାକୁ ପରୋକ୍ଷରେ ବୁଝାଉଛି । ମୁଁ ଆଶାକରେ, ସରକାର ଏହି ବିଷୟବସ୍ତୁକୁ ସାଧାରଣ ଦିଗରୁ ବିଚାରକରି ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ କରିବେ । ଲର୍ଡ ପାମରଷ୍ଟୋନ କହିଥିଲେ (ଯେତେବେଳେ ଇଂଲଣ୍ଡରେ କଲେରା ଆରମ୍ଭ ହେବା ଦେଖି ଇଂଲଣ୍ଡର ଅଧିବାସୀମାନେ ତାଙ୍କ ପାଖକୁ ଶୀଘ୍ର ରୟାଲ ଅର୍ଡର ଆଣିବା ପାଇଁ ଏକ ପିଟିସନ ଦେଇଥିଲେ) ।

ବର୍ତ୍ତମାନ ପାଇଁ ଦେଶବାସୀଙ୍କ ପକ୍ଷେ ଏକମାତ୍ର ପନ୍ଥା ହେଲା ଆସନ୍ତା ବସନ୍ତ ଋତୁ ପର୍ଯ୍ୟନ୍ତ ସେମାନଙ୍କର ସହରର ଯେଉଁ ଅଞ୍ଚଳମାନଙ୍କରେ ଗରିବ ଓ ଦୁଃସ୍ଥ ପରିବାରମାନେ ବସବାସ କରୁଛନ୍ତି, ସେଇ ଅଞ୍ଚଳକୁ ପରିଷ୍କାର ପରିଚ୍ଛନ୍ନ ରଖି ରୋଗ କିପରି ନ ବ୍ୟାପିବ ସେଥିପ୍ରତି ସତର୍କ ଧ୍ୟାନ ଦେବା, ଯଦି ସେପରି କରାନଯାଏ, ତା'ହେଲେ ରୋଗ ଜୀବାଣୁର ମଞ୍ଜି ପୁଣି ମୃତ୍ୟୁକୁ ଫଳପ୍ରଦ କରିବା କେବଳ ସାର ହେବ । ପୁରୀ ସହରର ଅବସ୍ଥାକୁ ଦେଖି, ମୁଁ ସରକାରଙ୍କୁ ଏବଂ ପୁରୀବାସୀଙ୍କୁ ଏକମାତ୍ର ଉପଦେଶ ଦେଇପାରେ ଯେ, ସହରକୁ ନିର୍ମଳ ରଖିବା ଏକମାତ୍ର ଉପାୟ । ସହରର ବର୍ତ୍ତମାନ ଅବସ୍ଥାର ଉନ୍ନତି ପାଇଁ ସହର ସଂପୂର୍ଣ୍ଣ ଭାବେ ପରିଷ୍କାର ହୋଇ ସଫା ହେବା ଦରକାର । ମଇଳା ସଫା କରିବା ବ୍ୟବସ୍ଥା ପ୍ରଣାଳୀବଦ୍ଧ ହେବା ସଂଗେ ସ୍ଥାୟୀ ହେବା ଦରକାର । ଅହିତକର କାର୍ଯ୍ୟ ନିଷେଧ ହେବା ଦରକାର । ସାନିଟାରୀ ପୋଲିସ୍ ବ୍ୟବସ୍ଥାର ପ୍ରଚଳନ ଅତ୍ୟଧିକ ଜନସଂଖ୍ୟାର ପ୍ରତିରୋଧ ବୁହାହୋଇ ଆସୁଥିବା ପାଣିକୁ ଭଲ ଭାବେ ପରୀକ୍ଷା କରିବା ଏବଂ ତାର ସୁରକ୍ଷା ପାଇଁ କଡାକଡି ପ୍ରଶାସନିକ ନିୟମର ବ୍ୟବସ୍ଥା, ନାଳନର୍ଦ୍ଦମାର ମରାମତି ଓ ନିର୍ମାଣ ଏବଂ ଏହାକୁ କାର୍ଯ୍ୟକ୍ଷମ କରିବା, ସ୍ୱାସ୍ଥ୍ୟ, ଔଷଧ ଏବଂ କେମେଷ୍ଟ୍ରି ପାଇଁ ସାନିଟାରୀ ଇଂଜିନିୟରିଂର ସାହାଯ୍ୟ ନେବା ଅତ୍ୟନ୍ତ ଜରୁରୀ । ସାନିଟାରୀ ବ୍ୟବସ୍ଥାରେ କ୍ଷେତ୍ର ବିଶେଷରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ହେବା ଦରକାର । ଏହା ଯଦି କରାନଯାଏ, ସବୁଦିନ ପାଇଁ ପୁରୀ ସହର ଶହ ଶହ ତୀର୍ଥଯାତ୍ରୀମାନଙ୍କ ପାଇଁ ଏକ ଖୋଲା ଶ୍ମଶାନ

ହୋଇ ରହିଯିବ । ପୁରୀ ସହର ଏପରି ଅବସ୍ଥାକୁ ଆସିବା ଉଚିତ୍ ନୁହେଁ । ଜଣେ ବିଶିଷ୍ଟ ସ୍ୱାସ୍ଥ୍ୟବିତ୍ କେତେଦିନ ତଳେ ଲେଖିଥିଲେ 'ମହାମାରୀର ଚରିତ୍ର, ଯାହା ଏହାକୁ ଭୟଙ୍କର ଶକ୍ତିଶାଳୀ କରି ଅନ୍ଧାର ମଧ୍ୟରେ ମାଡି ଚାଲିବାରେ ସାହାଯ୍ୟ କରେ, ସେଇ ଗୁଣ ଆଉ ନାହିଁ । ଏହାର ମୁଖା ବର୍ତ୍ତମାନ ଖସିପଡି ଶକ୍ତିହୀନ ହୋଇଗଲାଣି । ଏହାର ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ଏକ ଶକ୍ତିଶାଳୀ ପରିଷ୍କାର ଆଲୋକ ତା' ଗତିପଥକୁ ସଦାସର୍ବଦା ସୂଚାଇ ଦେଇପାରିଛି । କେବଳ ସେତିକି ନୁହଁ, ପ୍ରତିଦ୍ୱନ୍ଦ୍ୱୀ ଏବଂ ବିଜୟୀ ଉଭୟକୁ ଯେ ଶକ୍ତିଶାଳୀ ଆଲୋକ ଦେଖାଇବାରେ ସକ୍ଷମ ହୋଇପାରିଛି, ସେ ହେଲା 'ପରିଚ୍ଛନ୍ନତା' । ସେଇ ଲେଖକ ତାଙ୍କର ଆଉ ଗୋଟିଏ ପରିଚ୍ଛେଦରେ ଉଲ୍ଲେଖ କରିଛନ୍ତି 'ଉଦାହରଣ ସ୍ୱରୂପ ସଂଖ୍ୟାଧିକ ଜନସମାଗମକୁ ଆମେ ପ୍ରତିରୋଧ କରିପାରିବା, ସହର ଭିତରେ ଏବଂ ସହର ଘରମାନଙ୍କର ପରିସର ମଧ୍ୟରେ ଅଳିଆ ଆବର୍ଜନା ଗଦେଇବାର ପ୍ରତିରୋଧ କରିପାରିବା, ପରିଷ୍କାର ଆଲୁଅ, ପାଣି, ପବନ ଯୋଗାଇ ଦେବା ସଂଗେ ଅନ୍ୟ ସମସ୍ତ ବ୍ୟବସ୍ଥା କରି ସେଇ ପରିଚ୍ଛନ୍ନତାକୁ ଆମେ ସୁରକ୍ଷିତ କରିପାରିବା । ଯେତେଦୂର ଆମେ 'ପରିଚ୍ଛନ୍ନତା'କୁ ସୁରକ୍ଷା ଦେଇପାରିବା, ସେତେଦୂର ଆମେ ସଂକ୍ରାମକ ରୋଗକୁ ଦୂରେଇ ଦେଇପାରିବା ।' ମୁଁ କହୁନି ଯେ, ସେ ଯାହା କହିଛନ୍ତି, ତା'ଠାରୁ ଅଧିକା ଆଉକିଛି ନାହିଁ, ଏକଥା ନୁହଁ, ମାତ୍ର ତାଙ୍କ କଥା ବହୁଳ ଭାବେ ସତ୍ୟତା ଉପରେ ପର୍ଯ୍ୟବେସିତ । ବର୍ତ୍ତମାନ ପୁରୀ ସହର ଅଧିବାସୀ ଏବଂ ତୀର୍ଥଯାତ୍ରୀଙ୍କ ଯାତ୍ରା ପଥରେ କେତେ ସୁବିଧା ବ୍ୟବସ୍ଥା ସଂପର୍କରେ ମୁଁ କହିବି ।

ପୁରୀ ସହରକୁ ଆସୁଥିବା ତୀର୍ଥଯାତ୍ରୀଙ୍କୁ ନେଇ ଡକ୍ଟର ମେଓ୍ୱାର୍ଟ ୩/୪ଟି ତଥ୍ୟପୂର୍ଣ୍ଣ ବିଷୟ ଲେଖି ଯାଇଛନ୍ତି । ସେ ନିଜେ ସହରକୁ ଭଲ ଭାବେ ଜାଣିଥିଲେ ଏବଂ ସ୍ୱାସ୍ଥ୍ୟ, ପରିମଳ ବ୍ୟବସ୍ଥା ସଂପର୍କରେ ଏବଂ ଆବଶ୍ୟକତା ବିଷୟରେ ତାଙ୍କର ଧ୍ୟାନ ଦେଇଥିଲେ ।

'କଲେରା ଆମଙ୍ଗ ପିଲିଗ୍ରମ୍ସ ଆଟ୍ ଜଗରନାଥ' ଶୀର୍ଷକ ଲେଖାଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଲେଖା । ୧୮୬୮ ମସିହାରେ ସେ ମେମୋରେଣ୍ଡମ ନମ୍ବର ୪୬୦ ଏକ ତଥ୍ୟପୂର୍ଣ୍ଣ ବହୁ ମୂଲ୍ୟ ଲେଖାଟିଏ ପ୍ରକାଶ ପାଇଥିଲା । ଏଇ ମେମୋରେଣ୍ଡମ୍‌ରେ ସେ ଯେଉଁ ପ୍ରକାର ମୂଲ୍ୟବାନ ପ୍ରସ୍ତାବ ତୀର୍ଥଯାତ୍ରୀଙ୍କ ସଂପର୍କରେ ଦେଇଛନ୍ତି, ତାହା ଅତ୍ୟନ୍ତ ବ୍ୟବହାରିକ ଏବଂ ବ୍ୟାପକ । ମୁଁ ଭାବୁଛି, ଡକ୍ଟର ମେଓ୍ୱାର୍ଟଙ୍କ ପ୍ରସ୍ତାବ ଉପରେ ଆଉ ଅଧିକ କିଛି କହିବାର ନାହିଁ । ସେ ଦେଇଥିବା ପ୍ରସ୍ତାବମାନଙ୍କୁ ମୁଁ ମଧ୍ୟ ସମର୍ଥନ କରୁଛି । ସରକାର ସେସବୁ ପ୍ରସ୍ତାବରୁ କାହାକୁ ଅଗ୍ରାଧିକାର ଦେଇ କେତେଶୀଘ୍ର କାର୍ଯ୍ୟକାରୀ କରିବେ ତାହା ଦେଖିବା କଥା । ଅବଶ୍ୟ କେତେକ ଛୋଟ ଛୋଟ ବିଷୟରେ ଡକ୍ଟର ମେଓ୍ୱାର୍ଟ ଓ ମୋ' ଭିତରେ ଅଲଗା ମତ ଦେଖାଦେଇଛି ମାତ୍ର ଗୁରୁତ୍ୱପୂର୍ଣ୍ଣ ପଏଣ୍ଟରେ ଆମେ ଦୁହେଁ ଏକମତ ।

## ପୁରୀର ସାନିଟାରୀ ଆବଶ୍ୟକତା ପାଇଁ ପ୍ରସ୍ତାବ

ଡକ୍ଟର ମେଓ୍ୱାର୍ଟ କେତେକ ସୁପାରିସ୍ ଆଗରୁ କରିଥିଲେ । ସେଗୁଡ଼ିକ ମଧ୍ୟରୁ (୧) 'ପୁରୀ ସହରର ସ୍ୱଚ୍ଛକର ଏବଂ ଅନ୍ୟାନ୍ୟ ବ୍ୟବସ୍ଥା ପାଇଁ ସ୍ୱତନ୍ତ୍ର ଭାବେ ଜଣେ ସରକାରୀ କର୍ମଚାରୀ ନିଯୁକ୍ତି ହେବା ଦରକାର । ପୁରୀର ମୁଖ୍ୟ ଚିକିତ୍ସକ ପୋଷ୍ଟରେ ପୁନର୍ବାର ୟୁରୋପିୟାନ୍ ଅଫିସରଙ୍କୁ ରଖାଯାଉ ଏବଂ ତାଙ୍କୁ ପ୍ରଥମ ଶ୍ରେଣୀ ଷ୍ଟେସନ ଅଫିସରଙ୍କ ସମସ୍ତ ସୁବିଧା ଯୋଗାଇ ଦିଆଯାଉ । ପୁରୀରେ ନିଯୁକ୍ତି ପାଉଥିବା ମେଡିକାଲ ଅଫିସରମାନଙ୍କର ଘରୋଇ ଚିକିତ୍ସା ସୁବିଧା ନାହିଁ କିମ୍ବା ଅନ୍ୟ ପ୍ରକାର ସୁବିଧା ପାଆନ୍ତି ନାହିଁ । ତାଙ୍କୁ ତୀର୍ଥଯାତ୍ରୀଙ୍କର ଏକ୍ସ ଅଫିସ୍ ଓ ସାନିଟାରୀ ଅଫିସର ଭାବେ ନାମିତ କରି ନିୟମ କାନୁନ କାର୍ଯ୍ୟକାରୀ କରିବା ପାଇଁ ସମସ୍ତ କ୍ଷମତା ପ୍ରଦାନ କରାଯିବା ଦରକାର । ହଇଜାର ମୂଳ କାରଣ ସଂପର୍କରେ ସେ ସମସ୍ତ ତଥ୍ୟ ସଂଗ୍ରହ କରି ତାର ପ୍ରତିକାର ପାଇଁ ବ୍ୟବସ୍ଥା କରିବା ପାଇଁ ଉପଯୁକ୍ତ ସମୟ ଦେବେ ।'

ମୋ' ମତରେ ପୁରୀ ପାଇଁ ଜଣେ ସ୍ୱତନ୍ତ୍ର ହେଲ୍‌ଥ ଅଫିସର ନିଯୁକ୍ତି ଅତ୍ୟନ୍ତ ଜରୁରୀ । ଏଥିପାଇଁ ସେପରି ଅଫିସରଙ୍କୁ ସ୍ୱତନ୍ତ୍ର ଭାବେ ବାଛି, ତାଙ୍କର ସୁବିଧା ପାଇଁ ସମସ୍ତ ବ୍ୟବସ୍ଥା କରିବା ଦରକାର । କାରଣ, ତାଙ୍କର କର୍ତ୍ତବ୍ୟ ଅତ୍ୟନ୍ତ କଷ୍ଟକର ଏବଂ ଦାୟିତ୍ୱପୂର୍ଣ୍ଣ ମଧ୍ୟ । ଅବଶ୍ୟ ମୋ'ମନରେ ଗୋଟିଏ ପ୍ରଶ୍ନ ଆସେ ଯେ, ତାଙ୍କୁ ସମସ୍ତ କ୍ଷମତାର ଅଧିକାରୀ କରିବାର ଦରକାର ଅଛି କି ? ମୁଁ ଭାବୁଛି, ସବୁ ପ୍ରକାର ଆଇନକୁ ପ୍ରବର୍ତ୍ତନ କରିବାର ଅଧିକାର ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ରହିବା ଉଚିତ୍ । ପୁରୀରେ ହେଲ୍‌ଥ ଅଫିସର ନିଯୁକ୍ତି ପାଇଁ ମିଃ ଷ୍ଟ୍ରେଚି (Strachey) ୨୯ ମେ ୧୮୬୭ ମସିହା ତାଙ୍କ ଚିଠି ନମ୍ବର ୩୧୨ରେ ସେକ୍ରେଟାରୀ ଟୁ ଗଭର୍ଣ୍ଣମେଣ୍ଟ ଇଣ୍ଡିଆ ମିଲିଟାରୀ ଡିପାର୍ଟମେଣ୍ଟକୁ ଲେଖିଥିଲେ ।

'ହେଲ୍‌ଥ ଅଫିସର ନିଯୁକ୍ତି ସଂଗେ ପୁରୀ ପାଇଁ ଗୋଟିଏ 'ସାନିଟାରୀ କମିଟି' ମାଜିଷ୍ଟ୍ରେଟ୍‌ଙ୍କ ଅଧକ୍ଷତାରେ ଗଠନ ହେବା ପାଇଁ ମୂଳ ପରିକଳ୍ପନାରେ ପ୍ରସ୍ତାବ ଦିଆଯାଇଥିଲା । ବର୍ତ୍ତମାନ ଏଠାରେ ଗୋଟିଏ ଭଲ ସାନିଟାରୀ କମିଟି ଗଠନ ପାଇଁ କିଛି ବ୍ୟବସ୍ଥା ନାହିଁ । ସାନିଟାରୀ ଅଫିସରଙ୍କ ସଂପର୍କରେ ମିଃ ରାବନ୍ ନିମ୍ନୋକ୍ତ ଭାବେ ଲେଖିଥିଲେ 'ମୁଁ ଭାବୁଛି ସାନିଟାରୀ ସଂପର୍କରେ ଜାଣିଥିବା ଅଭିଜ୍ଞ ଏବଂ ଲୋକମାନଙ୍କ ସଂଗେ କାମକଲା ଭଳି ଜଣେ ସ୍ୱାସ୍ଥ୍ୟ ବିଭାଗ ଅଫିସରଙ୍କୁ ହେଲ୍‌ଥ ଅଫିସର ଭାବେ ନିଯୁକ୍ତି ଦେଲେ, ଆମ କାର୍ଯ୍ୟ ବହୁଳ ଭାବେ ସରଳୀକରଣ ହୋଇପାରନ୍ତା । ଆମେ ଯେଉଁ ବିଷୟକୁ ନେଇ କାର୍ଯ୍ୟ କରୁଛୁ, ସେସବୁ ସାମାଜିକ ଏବଂ ସ୍ୱାସ୍ଥ୍ୟଗତ ପ୍ରଶ୍ନକୁ ନେଇ ଏପରି ଭାବେ ଜଡିତ ଯେ, ପ୍ରଥମେ ଆମେ ଯେତେଯାହା କଲେବି ତାହା ଏତେ

ଫଳପ୍ରଦ ହେବନାହିଁ । ମୁଁ ଯେଉଁ ପ୍ରକାର ଅଫିସରଙ୍କ କଥା କହୁଛି, ସେ ନିଜ ବୁଦ୍ଧିରୁ, ନିଜ ଅଭିଜ୍ଞତାରୁ ମୂଲ୍ୟବାନ ତଥ୍ୟ ସଂଗ୍ରହ କରିବା ସଂଗେ ଘଟଣା ପ୍ରବାହର ପରିସଂଖ୍ୟାନ ସଂଗ୍ରହ କରି ଆବଶ୍ୟକୀୟ ସଂସ୍କାର ପାଇଁ ପ୍ରସ୍ତାବ ଦେବା ଦରକାର । ମୋର ଡର ଯେ, ଯଦି ପ୍ରଥମରୁ ଆମେ ବହୁତ କିଛି କରିବା ପାଇଁ ଆରମ୍ଭ କରିବା କିମ୍ବା ସବୁକୁ ଭଲ ଭାବେ ନବୁଝି, ନଜାଣି କାମ ଆରମ୍ଭ କରିଦେବା, ତା'ହେଲେ ଅବସ୍ଥାର ପରିବର୍ତ୍ତନ ତ ହେବନି ବରଂ ଯନ୍ତ୍ରଣା ଅଧିକ ବଢ଼ିଯିବ ।'

ନିର୍ଦ୍ଦିଷ୍ଟ ଯୋଜନା ଅନୁସାରେ ସମସ୍ତ ପ୍ରକାର ପରିମଳ ବ୍ୟବସ୍ଥା କାର୍ଯ୍ୟକାରୀ କରିବା ପାଇଁ ଗୋଟିଏ କାର୍ଯ୍ୟକାରୀ ସଂସ୍ଥା ଅଧ୍ୟୟନ କରିବା ହେଲା ହେଲ୍‌ଥ ଅଫିସରଙ୍କ ମୁଖ୍ୟ ଦାୟିତ୍ୱ । ସେ ସବୁ ପ୍ରକାର ବ୍ୟବସ୍ଥା କରି ସେ ସମସ୍ତ ଯେପରି ଉପଯୁକ୍ତ ଭାବେ କାର୍ଯ୍ୟକାରୀ ହୋଇପାରିବ ତାକୁ ଦେଖିବା ଦରକାର । ସଫେଇ ସଂପର୍କରେ ସମସ୍ତ ପ୍ରକାର ସ୍ୱତନ୍ତ୍ର ବ୍ୟବସ୍ଥା ବିଷୟରେ ସେ ମାଜିଷ୍ଟ୍ରେଟ୍‌ଙ୍କୁ ପ୍ରସ୍ତାବ ଦେବେ । ମୃତ୍ୟୁ ସଂପର୍କରେ ସଠିକ୍ ବିବରଣୀ ପଞ୍ଜିକରଣ ହେବା ପାଇଁ ସେ ପରିକଳ୍ପନା କରିବେ ଏବଂ ସହରର ସମସ୍ତ ପ୍ରକାର ପରିସଂଖ୍ୟାନ (ଜେନେରାଲ ଷ୍ଟାଟିଷ୍ଟିକ୍ସ) ସଂପର୍କରେ ରେକର୍ଡ ପ୍ରସ୍ତୁତ କରିବେ । ଏହି ଶୀର୍ଷକରେ ଜଗନ୍ନାଥ ଧାମକୁ ଆସୁଥିବା ଏବଂ ଫେରୁଥିବା ସମସ୍ତ ଯାତ୍ରୀଙ୍କ ସଂଖ୍ୟା ମଧ୍ୟ ରେକର୍ଡ ହୋଇପାରିବ ।

ସହରର ପ୍ରତ୍ୟେକ ଗୃହ ଏବଂ ତାର ପାରିପାର୍ଶ୍ୱିକ ପରିଚ୍ଛନ୍ନତା ପାଇଁ ସେ ହେବେ ମେଡିକାଲ ଇନ୍ସପେକ୍ଟର, ହସ୍‌ପିଟାଲ, ଡିସ୍‌ପେନସାରୀକୁ ଯୋଗାଯାଉଥିବା ଖାଦ୍ୟ ଏବଂ ମେଡିକାଲ ରିଲିଫ ଦେବା ବ୍ୟବସ୍ଥାର ମଧ୍ୟ ଦାୟିତ୍ୱ ତାଙ୍କର । ହଇଜାର ମୂଳ କାରଣ ଏବଂ ଅନ୍ୟାନ୍ୟ ମାରାତ୍ମକ ରୋଗ ସଂପର୍କରେ ସେ ଅନୁଧ୍ୟାନ କରି ଠିକ୍ ସମୟରେ ତଥ୍ୟ ପ୍ରଦାନ କରିବେ ।

ସେ ସାବଧାନର ସହିତ ସହରର ତାପମାତ୍ରା, ବର୍ଷା, ବାରୋମିଟରିକ୍ ଚାପ, ବାୟୁମଣ୍ଡଳର ଆର୍ଦ୍ରତା, ମୃତ୍ତିକାର ଅବସ୍ଥା, ବିଭିନ୍ନ ସମୟରେ କୂପ ଏବଂ ବାମ୍ଫିମାନଙ୍କରେ ରହୁଥିବା ପାଣିର ଗଭୀରତା ସଂପର୍କରେ ତଥ୍ୟ ସଂଗ୍ରହ କରି ଲେଖି ରଖିବା ସଂଗେ ସହରରେ କେଉଁ ସମୟରେ (କେତେ ତାରିଖରେ) ହଇଜା ଆରମ୍ଭ ହୋଇ ଛାଡିଯିବା କଥା ମଧ୍ୟ ନଥିଭୁକ୍ତ କରିବେ । ସହରରେ ମଳ, ମୂତ୍ର କେଉଁ ପ୍ରକାରେ ସଫା କରାଯାଇ, କେଉଁ ସ୍ଥାନରେ ଗଦା କରାଯାଉଛି, ପିଇବା ପାଣି କେତେଦୂର ପିଇବା ଯୋଗ୍ୟ, ନୁଇସେନ୍ସ ବନ୍ଦ କରିବା ପାଇଁ ପ୍ରତିଷେଧକ ବ୍ୟବସ୍ଥା ଏବଂ ଜନସାଧାରଣଙ୍କ ସ୍ୱାସ୍ଥ୍ୟକୁ କେନ୍ଦ୍ରକରି ପରୋକ୍ଷ ଏବଂ ପ୍ରତ୍ୟକ୍ଷ ଭାବରେ ପ୍ରଭାବିତ କରୁଥିବା କାର୍ଯ୍ୟଗୁଡିକ ଉପରେ ନଜର ରଖିବେ । ଶେଷରେ ତାଙ୍କର ସବୁଠାରୁ ବଡ ଦାୟିତ୍ୱ ହେବ, ସେ ଲୋକମାନଙ୍କ ସାଙ୍ଗରେ

ମିଶି, ଲୋକପ୍ରିୟ ହୋଇ ଲୋକମାନଙ୍କୁ ବାଧ ନକରି ବରଂ ପ୍ରବର୍ତ୍ତାଇ କିପରି ଭାବେ ସ୍ୱାସ୍ଥ୍ୟରକ୍ଷା ହୋଇପାରିବ, ଘର ଏବଂ ଘରର ପାରିପାର୍ଶ୍ୱିକ ଅଞ୍ଚଳ କିପରି ଭାବେ ସଫା ରହିପାରିବ, ଜନସ୍ୱାସ୍ଥ୍ୟ ଆଇନ କିପରି ଜନତାଙ୍କ ହିତାର୍ଥେ କାର୍ଯ୍ୟକାରୀ ହୋଇପାରିବ ସେଥିପାଇଁ କାର୍ଯ୍ୟ କରିବେ ।

ଏହାପରେ ଡକ୍ଟର ମେଓ୍ୱାର୍ଟ ନିମ୍ନପ୍ରକାରେ ପ୍ରସ୍ତାବ ଦେଇଥିଲେ:

"ପୁରୀର ସବ୍ ଆସିଷ୍ଟାଣ୍ଟ ସର୍ଜନ ପଦବୀ ରହିବା ସଂଗେ ସେ ମଧ ଜଣେ ଉଚ୍ଚଜାତିର ଉତ୍ତମ ବ୍ୟକ୍ତି ହେବା ଆବଶ୍ୟକ । ସେ ମଧ ହିନ୍ଦୁ ଧର୍ମର ଏପରି ଜାତିର ହେବା ଦରକାର ଯେ, ପ୍ରତ୍ୟେକ ମନ୍ଦିର, ମଠ ଏବଂ ଅନ୍ୟାନ୍ୟ ପୂଜା ସ୍ଥାନମାନଙ୍କୁ ଯାଇପାରୁଥିବେ, ଯେଉଁଠିକୁ ସାଧାରଣରେ ଖ୍ରୀଷ୍ଟିୟାନମାନଙ୍କୁ ଯିବାକୁ ମନା, ସେ ମଧ ସମସ୍ତ ପ୍ରକାର କ୍ଷମତାର ଅଧିକାରୀ ହୋଇ ନିୟମକୁ କାର୍ଯ୍ୟକାରୀ କରିବା ପାଇଁ ସେବାୟତ ଓ ବ୍ୟକ୍ତି ବିଶେଷଙ୍କୁ ପ୍ରଭାବିତ କରିପାରୁଥିବେ ଯାହାକି ୟୁରୋପିୟାନ ମାନେ କରିବାକୁ ସକ୍ଷମ ନୁହଁନ୍ତି ।"

**ମୋ ଟିପ୍ପଣୀ:** ମୁଁ ସଂପୂର୍ଣ୍ଣ ଭାବେ ସହମତ ଯେ, ତୀର୍ଥଯାତ୍ରୀ ହସ୍ପିଟାଲର କାର୍ଯ୍ୟ ଏବଂ ଦାୟିତ୍ୱ ତୁଲାଇବା ପାଇଁ ଏବଂ ହେଲ୍‌ଥ ଅଫିସରଙ୍କୁ ସାହାଯ୍ୟ କରିବା ପାଇଁ ସବ୍ ଆସିଷ୍ଟାଣ୍ଟ ସର୍ଜନ ରହିବା ଦରକାର । ଡକ୍ଟର ମେଓ୍ୱାଟ କହିବା କଥା ଯେ, ସେ ଜଣେ ଉଚ୍ଚ ବର୍ଗର ବ୍ୟକ୍ତି ହେବା ଦରକାର, ଯାହାଙ୍କର ପ୍ରତ୍ୟେକ ଧର୍ମ ସ୍ଥାନକୁ ପ୍ରବେଶ କରିବାର ସୁବିଧା ଥିବ କିନ୍ତୁ ମୋ' ମତରେ ତାଙ୍କର କୌଣସି ପ୍ରକାର ମାଜିଷ୍ଟ୍ରେରିୟାଲ୍ କ୍ଷମତା ରହିବା ଉଚିତ୍ ନୁହଁ । ତାଙ୍କର ଯାହାସବୁ ବିବେକପୂର୍ଣ୍ଣ ପ୍ରସ୍ତାବ ଥିବ, ସେସବୁ ହେଲ୍‌ଥ ଅଫିସରଙ୍କ ଅନୁମୋଦନ କ୍ରମେ ସିଟି ମାଜିଷ୍ଟ୍ରେଟଙ୍କ ଦ୍ୱାରା କାର୍ଯ୍ୟକାରୀ ହେବା ଉଚିତ୍ ।

ଡକ୍ଟର ମେଓ୍ୱାଟଙ୍କ ପ୍ରସ୍ତାବ ହେଲା ଯେକୌଣସି ଲଜିଂ ହାଉସ୍‌ରେ ଯେତେବେଳେ ପ୍ରଥମେ ହଇଜା କେସ୍ ଦେଖାଦେବ, ସଂଗେ ସଂଗେ ରୋଗୀଙ୍କୁ ଏବଂ ଲଜିଂ ହାଉସ୍‌ରେ ଥିବା ଯାତ୍ରୀମାନଙ୍କୁ ସେଠାରୁ ଖାଲି କରାଯିବ । ରୋଗରେ ପ୍ରପୀଡିତ ରୋଗୀ ଏବଂ ଯାତ୍ରା ସମୟରେ ସ୍ଥାନ ପାଉନଥିବା ଦୂରାନ୍ତ ଯାତ୍ରୀମାନଙ୍କ ପ୍ରତି ଏପରି ଅମାନବୀୟତା ବ୍ୟବହାର ଠିକ୍ ହେବନି । ତା'ଛଡା କେବଳ ଲଜିଂ ହାଉସ୍‌କୁ ଖାଲି କରିଦେଲେ ହେବନି, ସେ ଘରକୁ ସଂପୂର୍ଣ୍ଣ ଭାବେ ପରିଷ୍କାର ଓ ଜୀବାଣୁ ନିରୋଧ କରି ପୁଣି ଯାତ୍ରୀମାନଙ୍କ ପାଇଁ ବାସଯୋଗ୍ୟ କରିବା ରଥଯାତ୍ରା ସମୟରେ ସଂପୂର୍ଣ୍ଣ ଅସମ୍ଭବ ।

**ଟିପ୍ପଣୀ:** ଏହା କିନ୍ତୁ ଆବଶ୍ୟକୀୟ ପଦକ୍ଷେପ । କେବଳ ହଇଜା ବ୍ୟାପିବା ପାଇଁ ନୁହେଁ, ପ୍ରତ୍ୟେକ ସଂକ୍ରମିତ ଗୃହ, ରୋଗ ଜାତ କରିବାର ମଞ୍ଜି ସ୍ଥାନ । ତେଣୁ ଯାତ୍ରୀମାନଙ୍କୁ ଏପରି ସଂକ୍ରମିତ ଲଜିଂ ହାଉସ୍‌ରୁ ବାହାର କରାଯିବ, ସେପରି ଯାତ୍ରୀମାନଙ୍କ ପାଇଁ ଅଲଗା ରହିବା ଗୃହର ବ୍ୟବସ୍ଥା ହେବା ଦରକାର, ଯଦି ସେମାନେ କୌଣସି ରହିବା ସ୍ଥାନର ସୁବିଧା ନପାଆନ୍ତି ।

ଏସବୁକୁ ପଢ଼ିଲା ପରେ ଡକ୍ଟର ମେଓ୍ୱାଟ୍ ଲେଖିଥିଲେ :-

## ତୀର୍ଥଯାତ୍ରୀମାନଙ୍କ ପାଇଁ ଶିବିର ବ୍ୟବସ୍ଥା

'ପୁରୀରେ ତୀର୍ଥଯାତ୍ରୀମାନଙ୍କ ରହିବାର ଅସୁବିଧାକୁ ଲକ୍ଷ୍ୟକରି ଡକ୍ଟର ମେଓ୍ୱାଟ୍ ଲେଖିଲେ – 'ମୋ ମତରେ ପୁରୀ ସହର ପାଇଁ ସାନିଟାରୀ ନିୟମ କାନୁନ ସଂଗେ ତୀର୍ଥଯାତ୍ରୀମାନଙ୍କ ପାଇଁ ଯାତ୍ରା ସମୟରେ, ସମୁଦ୍ରକୂଳ ବାଲି ଉପରେ ଶିବିର ବ୍ୟବସ୍ଥା ହେବା ଦରକାର । ଏହି ଶିବିର ପକାଇବା ପାଇଁ ଉପଯୁକ୍ତ ସ୍ଥାନ, ଜିଲ୍ଲା ପ୍ରଶାସନ ପ୍ରତ୍ୟେକ ବର୍ଷ ନିର୍ଣ୍ଣୟ କରିବେ । ଶିବିର ଅସ୍ଥାୟୀ ଭାବେ ନିର୍ମାଣ ହେବ, କାରଣ ଆପଣ ଯେତେ ଯାହା ନିୟମ କାନୁନ୍ କଲେ ମଧ୍ୟ ଦେଶିଆ ଲୋକମାନେ ଯେଉଁଠି ରହିବେ, ସେ ଅଞ୍ଚଳକୁ ଦୂଷିତ କରିବେ । ସେହି ଦୃଷ୍ଟିରୁ କ୍ୟାମ୍ପ ସାଇଟ୍, ମନ୍ଦିର ନିକଟରୁ ଦୂରରେ ହେବା ଦରକାର । ତା'ଛଡା ମନ୍ଦିର ନିକଟସ୍ଥ ଅଞ୍ଚଳକୁ ତୀର୍ଥଯାତ୍ରୀମାନେ 'ପବିତ୍ର ପୀଠ' ଭାବେ ଗ୍ରହଣ କରୁଥିବା ଯୋଗୁଁ କ୍ୟାମ୍ପ ସାଇଟ୍ ମନ୍ଦିର ନିକଟରେ ହେଲେ ଅସୁବିଧା । ଏହି ଶିବିର କାଠ କିମ୍ବା ଲୁହା ଫ୍ରେମ୍‌ରେ ନିର୍ମାଣ ହେଲେ ସ୍ୱଳ୍ପ ସମୟ ମଧ୍ୟରେ ଦରକାର ବେଳେ ଏହାର ନିର୍ମାଣ ଏବଂ ଭାଙ୍ଗିବା କାର୍ଯ୍ୟ ସମାପ୍ତ ହୋଇପାରିବ ।'

ମିଃ ମେଓ୍ୱାଟ ଯେଉଁ ବଡ ବଡ ଶିବିର ନିର୍ମାଣ କଥା ପ୍ରସ୍ତାବ ଦେଇଛନ୍ତି, ପୁରୀ ସହରଠାରୁ ଦୂରରେ ତୀର୍ଥଯାତ୍ରୀମାନଙ୍କ ପାଇଁ ଏପରି ଶିବିର ନିର୍ମାଣ ଖର୍ଚ୍ଚ ଅଧିକ ହେବା ସଂଗେ ତୀର୍ଥଯାତ୍ରୀ ମାନଙ୍କ ପାଇଁ ବହୁ ଅସୁବିଧା ସୃଷ୍ଟି କରିବ । ତା'ଛଡା ପୁରୀ ସହର ନିକଟରେ ଏପରି ଶିବିର ନିର୍ମାଣ ପାଇଁ ନିର୍ମାଣ ସରଞ୍ଜାମ ମିଳିବା କଷ୍ଟକର । କାଠ ଦରକାର ହେଲେ ବହୁ ଦୂରାନ୍ତରୁ ଆଣିବାକୁ ପଡିବ । ବଢ଼େଇ, ମିସ୍ତ୍ରୀ ଏଠାରେ ଯଥେଷ୍ଟ ନାହାଁନ୍ତି । ରଥ ନିର୍ମାଣ ବେଳେ ବଢ଼େଇ ମାନଙ୍କର ଅଭାବ ପରିଲକ୍ଷିତ ହେଉଛି । ଅବଶ୍ୟ ବଢ଼େଇ କିମ୍ବା ମିସ୍ତ୍ରୀମାନେ କଟକ ପ୍ରଭୃତି ସ୍ଥାନରୁ ଅଣାଯାଇ ପାରିବ ମାତ୍ର ନିର୍ମାଣ ଖର୍ଚ୍ଚ ଯଥେଷ୍ଟ ପରିମାଣରେ ବଢ଼ିଯିବ । ବହୁ ସଂଖ୍ୟାର ତୀର୍ଥଯାତ୍ରୀମାନଙ୍କ ପାଇଁ ଯେତେବେଳେ ଶିବିର ନିର୍ମାଣ ହେବ, ସେଥିପାଇଁ ଯଥେଷ୍ଟ ପରିମାଣର ଲୋକ ଦରକାର, ମଜୁରିଆ ଓ ସ୍ଥାନ ଦରକାର । ପୁରୀ ସମୁଦ୍ର କୂଳରେ ସେପରି ସ୍ଥାନ ମଧ୍ୟ ମିଳିବା କଷ୍ଟକର । କାରଣ

ସମୁଦ୍ର ଲୁଣିପାଣି, ବର୍ଷାପାଣି କୂଳର ବହୁ ଅଞ୍ଚଳକୁ ବର୍ଷାଦିନେ ମାଡିଯାଏ । ମନେକର ୧୦,୦୦୦ ଯାତ୍ରୀମାନଙ୍କ ପାଇଁ ଯଦି ଶିବିର ବ୍ୟବସ୍ଥା କରାଯାଏ, ତେବେ ସମୁଦ୍ର ବାଲିରେ ଏହି କ୍ୟାମ୍ପ ସାଇଟ୍ ପ୍ରାୟ ୧ ମାଇଲ୍ ଧରି ସ୍ଥାନ ଦଖଲ କରିବ । ତା'ଛଡା କ୍ୟାମ୍ପ ସାଇଟ୍ ପାଇଁ ସ୍ୱତନ୍ତ୍ର ପରିମଳ ବ୍ୟବସ୍ଥା, ପାଇଖାନା, ପାଣି, ଆଲୁଅ, ହସ୍ପିଟାଲ ଏବଂ ହସ୍ପିଟାଲ ପାଇଁ ସ୍ୱତନ୍ତ୍ର ଷ୍ଟାଫ୍, ସ୍ୱତନ୍ତ୍ର ପୋଲିସ୍ ବ୍ୟବସ୍ଥାର ଆବଶ୍ୟକତା ପଡିବ । ମୋ ମତରେ କରୋଗେଟେଡ୍ ଛାତ ସବୁଠାରୁ ଭଲ, କାରଣ କାଠ ଏବଂ କାନ୍‌ଭାସ ଦିଆ ଶିବିର ପାଇଁ ସମୁଦ୍ରକୂଳ ପବନ ଏବଂ ନିଆଁ ବିପଦ ସୃଷ୍ଟି କରିପାରେ । ୧୦,୦୦୦ ତୀର୍ଥଯାତ୍ରୀମାନଙ୍କ ପାଇଁ ଭଲ ଶିବିର ବ୍ୟବସ୍ଥା କରାଗଲେ ଅତିକମ୍‌ରେ ୩୦,୦୦୦ ଟଙ୍କା ଲାଗିବ । ବେଶୀ ବି ଲାଗିପାରେ । ଆମେ ଯେତେ ଟଙ୍କା ଖର୍ଚ୍ଚ କରିବା, ନିର୍ମାଣ ପାଇଁ ଯେତେ ଅସୁବିଧାର ସମ୍ମୁଖୀନ ହେବା, ତାହା ଶିବିର ନିର୍ମାଣ କରି ତୀର୍ଥଯାତ୍ରୀମାନଙ୍କୁ ସୁବିଧାରେ ରଖିବା ଠାରୁ ବଳିପଡିବ । ଶିବିର ନିର୍ମାଣ କରିବା ବିରୋଧରେ ମୁଁ ମତ ଦେଉଛି ବୋଲି ମୋତେ ଭୁଲ୍ ବୁଝିବା ଉଚିତ୍ ନୁହଁ । ନିଶ୍ଚିତ ଭାବେ ସମୁଦ୍ର କୂଳରେ ଶିବିର ନିର୍ମାଣ ହେଲେ ସହର ମଧ୍ୟରେ ତୀର୍ଥଯାତ୍ରୀମାନେ ଯାତ୍ରା ସମୟରେ ଯେଉଁ ଭିଡ କରୁଛନ୍ତି ତାହା ବହୁ ମାତ୍ରାରେ ହ୍ରାସ ପାଇବ, ଯାହାକି ସବୁଠାରୁ ବଡକଥା ମାତ୍ର ମୁଁ ଯେଉଁସବୁ ଅସୁବିଧା ଉତ୍‌ଥାପନ କରିଛି, ସେ ସଂପର୍କରେ ଚିନ୍ତା କରାଯିବା ଉଚିତ୍ । ଅବଶ୍ୟ ପଇସା ଖର୍ଚ୍ଚ କଲେ ଏହି ଅସୁବିଧା ଦୂର ହୋଇଯିବ । ଯନ୍ତ୍ରୀମାନଙ୍କ ସୁପରାମର୍ଶ, ଏ ସଂପର୍କରେ ନେଲେ ସୁବିଧା ହେବ । ମୋ' ମତରେ ସ୍ଥାୟୀ ଭାବରେ ଜଣେ ଯନ୍ତ୍ରୀ ପୁରୀଠାରେ ରହିବାର ଯଥେଷ୍ଟ ଆବଶ୍ୟକତା ଅଛି । ଏହି ପ୍ରସ୍ତାବ ଅନ୍ତତଃ ଦୁଇବର୍ଷ ପାଇଁ ପରୀକ୍ଷା ସ୍ୱରୂପ ଚେଷ୍ଟା କରାଯାଇ ଦେଖାଯାଇପାରେ । ସହରର ପଶ୍ଚିମପଟେ ଥିବା ସମହରା (SUMMING JHEEL) ହ୍ରଦରୁ ପାଣି ନିଷ୍କାସନର ବ୍ୟବସ୍ଥା ହେବା ଉଚିତ୍ । ଜଣେ ଇଞ୍ଜିନିୟରଙ୍କ ପାଇଁ ଜଳ ନିଷ୍କାସନ ବ୍ୟବସ୍ଥା ବହୁ ସମୟ ନେବ । ତା'ଛଡା ଜଣେ ଇଞ୍ଜିନିୟର ରହିଲେ ସେ ସହରର ରାସ୍ତାଘାଟ ଦେଖିବା ସଂଗେ ହେଲ୍‌ଥ ଅଫିସରଙ୍କୁ ସହର ସ୍ୱଚ୍ଛକର ବ୍ୟବସ୍ଥା ଉପରେ ବହୁ ସମୟରେ ଆବଶ୍ୟକୀୟ ଉପଦେଶ ଦେଇପାରିବେ ।

ପୁରୀ ସହରର ଉତ୍ତର-ପଶ୍ଚିମ ଦିଗରେ ବର୍ତ୍ତମାନ ପ୍ରଚୁର ପରିମାଣର ପାଣି ଓ ଅଗଭୀର ହ୍ରଦର ମାଟିଆଣି ନଈରେ ଭରପୂର କରି ରଖିଛି । ମାଟି ଲାଗି ନଦୀର ପାଣି କୁଆଡକୁ ଯାଇପାରୁନି, ନିଶ୍ଚଳ ଅବସ୍ଥାରେ ଅଛି । ମିଃ ରାବନ୍ ପୁରୀ ସଂପର୍କରେ ତାଙ୍କ ରିପୋର୍ଟରେ ଦର୍ଶାଇଛନ୍ତି ଯେ, ସହରର ପ୍ରାୟ ସବୁ ନାଳଗୁଡିକ ଉପଯୁକ୍ତ ଲେଭଲକୁ ଧରି ଖୋଳା ନହୋଇଥିବା ଯୋଗୁଁ ଯେଉଁ ସ୍ଥାନରେ ପାଣି ଜମିବା କଥା ନୁହଁ, ସେହି ସ୍ଥାନମାନଙ୍କରେ ପାଣି ଜମିକରି ରହୁଛି । ଏସବୁ ଦିଗକୁ ଦେଖିବା ପାଇଁ ଜଣେ ଇଂଜିନିୟର ଦରକାର । ରାବନ ଲେଖିଛନ୍ତି- 'ବହୁ କିଛି କରିହୁଅନ୍ତା ଯଦି କେତେକ ସ୍ଥାନରେ ପୋଖରୀ

ଖୋଲାଯାଇ ପାରନ୍ତା ଏବଂ ଉଚ୍ଚ ସ୍ଥାନମାନଙ୍କରୁ ମାଟି କାଢ଼ି ତାକୁ ସମତଳ କରାଯାଇ ପାରନ୍ତା ।' ତୀର୍ଥଯାତ୍ରୀମାନଙ୍କ ପାଇଁ ଶିବିର ନିର୍ମାଣ ସଂପର୍କରେ ମିଃ ରାବନ ଲେଖିଛନ୍ତି- ସହର ଭିତରେ ହଇଜା ଦେଖାଦେଲେ, ତୀର୍ଥଯାତ୍ରୀମାନଙ୍କୁ ସହର ଭିତରୁ ଶିବିର ମାନଙ୍କୁ ନେଇଯାଇ ସେଠାରେ ସେମାନଙ୍କର ଚିକିତ୍ସା ଓ ରହିବାର ବ୍ୟବସ୍ଥା କରିବା ପାଇଁ ଗୋଟିଏ ପ୍ରସ୍ତାବ ଦିଆଯାଇଛି । ଯୁଦ୍ଧ ସମୟରେ ସୈନ୍ୟମାନଙ୍କୁ ଗୋଟିଏ ଶିବିରରୁ ଅନ୍ୟ ଶିବିରକୁ ଯିବା ଭଳି ଏହି ପ୍ରସ୍ତାବ, କିନ୍ତୁ ପ୍ରଚଳିତ ଆଇନ୍‌ରେ ଏପରି ସ୍ଥାନ ପରିବର୍ତ୍ତନ ପାଇଁ ବ୍ୟବସ୍ଥା କରିବା ସମ୍ଭବ ନୁହଁ । ଯେଉଁମାନେ ତୀର୍ଥ ପାଇଁ ପୁରୀ ସହରକୁ ଆସିଛନ୍ତି, ସେମାନଙ୍କୁ ସହର ବାହାରେ ରଖିବା, ସେମାନେ ଏତେ କଷ୍ଟ ସ୍ୱୀକାର କରି ଶହ ଶହ ମାଇଲ୍ ଦୂରରୁ ଆସିଥିବା ଉଦ୍ଦେଶ୍ୟର ବିରୋଧାତ୍ମକ କାର୍ଯ୍ୟ । ତା'ଛଡା ସବୁଠାରୁ ବଡ ଅସୁବିଧା ହେବ, ଯେତେବେଳେ ମହିଳା ତୀର୍ଥଯାତ୍ରୀମାନଙ୍କୁ ପୁରୁଷମାନଙ୍କ ସଂଗେ ଶିବିର ମଧ୍ୟରେ ରଖିବାକୁ କହିବା, ମହିଳାମାନେ ପୁରୁଷମାନଙ୍କ ପାଖରୁ ଅଲଗା ରହିବା ଏଠାକାର ପରମ୍ପରା । ତା'ଛଡା ପ୍ରକୃତ କ୍ଷେତ୍ରରେ କାର୍ଯ୍ୟ କଲାବେଳେ ମଧ୍ୟ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡିବ । ପୁରୀରେ ଏପରି କିଛି ସଂସ୍ଥା ନାହିଁ କି ସରଞ୍ଜାମ ନାହିଁ, ଯାହା ଏତେବଡ ଶିବିର ନିର୍ମାଣ ଓ ପରିଚାଳନାରେ ସାହାଯ୍ୟ କରିପାରିବ । ଯଦି ଉପଯୁକ୍ତ ପରିଚାଳନା କରାନଯାଏ, ତେବେ ଏ ଦୁଃଖରୁ ସେ ଦୁଃଖ ବଢ଼ିଯିବ । ମୋ' ମତରେ ଶିବିର ସ୍ଥାପନ ପାଇଁ ମାତ୍ର ଦୁଇଟି ସ୍ଥାନ ଉପଯୁକ୍ତ । ସେ ଦୁଇଟି ହେଲା- ବାଲିକୁଣ୍ଡରୁ ଟିକରପଡା ମଧ୍ୟରେ ଏବଂ ଲୋକନାଥ ଘାଟରୁ ହରଚଣ୍ଡୀସାହି ମଧ୍ୟରେ ।

## ମହାପ୍ରସାଦ

'ମହାପ୍ରସାଦ' କିମ୍ବା ତଥାକଥିତ 'ପବିତ୍ର ଖାଦ୍ୟ' ସଂପର୍କରେ ଡକ୍ଟର ମେଓ୍ୱାଟ୍ ନିମ୍ନଲିଖିତ ଭାବେ ଲେଖିଛନ୍ତି- 'ମହାପ୍ରସାଦ' ଯେତେବେଳେ ଖାଦ୍ୟ ଅନୁପଯୋଗୀ ହୋଇଯାଏ, ସେତେବେଳେ ଏହାର ବିକ୍ରିକୁ ବନ୍ଦ କରିବା ପାଇଁ ଭାରତୀୟ ପିଙ୍ଗଲ କୋର୍ଡରେ ଥିବା ଆଇନ ଯଥେଷ୍ଟ ନୁହେଁ । ଏଥିପାଇଁ ଆଇନରେ ସଂଶୋଧନ ଆଣି ଉପଯୁକ୍ତ ଆଇନ ପ୍ରଣୟନ କରାଯିବା ଉଚିତ୍ । ପୁରୀକୁ ଆସୁଥିବା ତୀର୍ଥଯାତ୍ରୀମାନଙ୍କୁ ହଇଜା ଆକ୍ରମଣରୁ ରକ୍ଷା କରିବାକୁ ହେଲେ 'ମହାପ୍ରସାଦ' ରନ୍ଧା ହେବାର ୧୨ଘଣ୍ଟା ପରେ ଏହାର ବିକ୍ରି ନିଷେଧ କରାଯିବା ଦରକାର । ୧୨ଘଣ୍ଟା ପରେ ମହାପ୍ରସାଦ ଯେଉଁ ଅବସ୍ଥାରେ ଥିଲେ ମଧ୍ୟ ଏହାର ବିକ୍ରି, ବଦାନ୍ୟତା ଦେଖାଇ ବଣ୍ଟନ, ସବୁ ଉପରେ କଟକଣା ଜାରୀ ହେବା ଦରକାର ।

ଡକ୍ଟର ମେଓ୍ୱାଟ୍ ଆଗରୁ ତାଙ୍କର ଆଉ ଏକ ଚିଠିରେ ଦର୍ଶାଇଥିଲେ 'ଯାତ୍ରା ସମୟରେ ପ୍ରବଳ ଜନସମାଗମ ସାଙ୍ଗକୁ ଖରାପ ଖାଦ୍ୟ, ଖରାପ ଖାଦ୍ୟଜନିତ ବିଭିନ୍ନ ରୋଗ ପୁଣି

'ମହାପ୍ରସାଦ' ଯାହାକୁ କି ପ୍ରତ୍ୟେକ ତୀର୍ଥଯାତ୍ରୀ ଖାଇଥାନ୍ତି' ଏସବୁ ଅବସ୍ଥାକୁ ଆହୁରି ଗୁରୁତର ପରିସ୍ଥିତିକୁ ଟାଣି ନେଇଥାଏ । ଜିଲ୍ଲା ଏସ୍‌ପି ମୋ'ପାଇଁ ମହାପ୍ରସାଦ ଠାରୁ ଆରମ୍ଭ କରି ସବୁ ପ୍ରକାର ପବିତ୍ର ଖାଦ୍ୟର ନମୁନା ଆଣି ଦେଇଥିଲେ । ସେ ସମସ୍ତ ପ୍ରସାଦ ଅନ୍ନ, ଡାଲି, ବିଭିନ୍ନ ପରିବା ପଡି ପ୍ରସ୍ତୁତ ହୋଇଥିବା ତରକାରୀ, ଘିଅ ଗୁଡରେ ପ୍ରସ୍ତୁତ ଖାଦ୍ୟ । ଏ ସମସ୍ତ ଖାଦ୍ୟ ଯେତେବେଳ ପର୍ଯ୍ୟନ୍ତ ସଜ ଥାଏ, ତାହା ଦେଶୀୟ ଲୋକଙ୍କ ଖାଦ୍ୟ ପାଇଁ ଆଦୌ ଅନୁପଯୁକ୍ତ ନୁହଁ ଯଦିଓ ତରଳ ଝାଡା, ଡିସେଣ୍ଟ୍ରି ରୋଗରେ ଆକ୍ରାନ୍ତ ହୋଇଥିବା ରୋଗୀମାନଙ୍କ ପାଇଁ ଏହା ଗ୍ରହଣୀୟ ନୁହେଁ । ଏହି ସମସ୍ତ ଖାଦ୍ୟ ପ୍ରସ୍ତୁତ ହେବାର ୨୪ଘଣ୍ଟା ପରେ ପରୀକ୍ଷା କରିବାରେ ଦେଖାଗଲା ଯେ, ଏପରିକି ଜାନୁଆରୀ ମାସରେ ମଧ୍ୟ 'ଅନ୍ନ' ପ୍ରଭୃତି ଖାଦ୍ୟ ପଚିକରି ଆମ୍ଳିଳା ହେବା ଆରମ୍ଭ ହୋଇଯାଏ । ୪୮ଘଣ୍ଟା ପରେ ଏ ସମସ୍ତ ଖାଦ୍ୟ କେବଳ 'ମିଠା ଜିନିଷ'କୁ ଛାଡିଦେଲେ ଅଖାଦ୍ୟରେ ପରିଣତ ହୁଏ । 'ମିଠା ଜିନିଷ' ଘିଅରେ ପ୍ରସ୍ତୁତ ହୋଇଥିବା ଯୋଗୁଁ ଏହା ନଷ୍ଟ ହୁଏନି, ଯାହାକୁ କି ଦେଶୀୟ ଲୋକମାନେ ଆଗ୍ରହର ସହ ଖାଇଥାନ୍ତି ।

ଯାତ୍ରୀମାନଙ୍କ ପାଇଁ 'ମହାପ୍ରସାଦ' ହେଲା ମୁଖ୍ୟ ଖାଦ୍ୟ । ଏପରିକି ଯାତ୍ରା ସମୟରେ ସହରକୁ ଆସୁଥିବା ହଜାର ହଜାର ସଂଖ୍ୟାର ଭିକାରୀମାନଙ୍କ ମଧ୍ୟରେ ଏ ସମସ୍ତ ଖାଦ୍ୟ ହେଲା ମୁଖ୍ୟ ଖାଦ୍ୟ ପଦାର୍ଥ । ମୁଁ ଶୁଣିଲି - 'ମହାପ୍ରସାଦ' ପବିତ୍ରତା ଯୋଗୁଁ ଏହାକୁ କେହି ଫୋପାଡନ୍ତିନି । ମହାପ୍ରସାଦ ଯେକୌଣସି ଅବସ୍ଥାରେ ଥାଉ, ପଚିଯାଇଥାଉ କିମ୍ବା ଖାଦ୍ୟପୋଯୋଗୀ ହୋଇନଥାଉ, ଶେଷ ପର୍ଯ୍ୟନ୍ତ ଏହାକୁ ସମସ୍ତେ ଖାଦ୍ୟ ଭାବେ ବ୍ୟବହାର କରନ୍ତି । ମହାପ୍ରସାଦ ବିକ୍ରିରୁ ମନ୍ଦିର ବେଶ୍ କିଛି ରାଜସ୍ୱ ପାଇଥାଏ, ଯାହା ବିକ୍ରି ହୋଇପାରେନି ସେହି ପ୍ରସାଦକୁ ମନ୍ଦିର ପରିସର ମଧ୍ୟରେ ଶୁଖେଇ, ମନ୍ଦିର ମଧ୍ୟରେ ରଖାଯାଇ, ପରବର୍ତ୍ତୀ ଯାତ୍ରା ସମୟରେ ଶୁଖିଲା ମହାପ୍ରସାଦକୁ ବିକ୍ରି କରାଯାଏ । ମୁଁ ମଧ୍ୟ ଖବର ପାଇଛି, ମନ୍ଦିରରେ ପ୍ରସ୍ତୁତ ହେଉଥିବା ମିଠା ଜିନିଷମାନଙ୍କରେ ପ୍ରବଳ ପରିମାଣରେ ମାଛି ବସନ୍ତି, ଏପରିକି ଏଇ ମିଠା ଜିନିଷ ନିମ୍ନମାନର ଗୁଡ, ଘିଅରେ ପ୍ରସ୍ତୁତ କରାଯାଏ । ଏପରି ନିମ୍ନମାନର ଜିନିଷରେ ପ୍ରସ୍ତୁତ ମିଠା ଜିନିଷ ମଧ୍ୟ ଯାତ୍ରୀମାନଙ୍କର ସ୍ୱାସ୍ଥ୍ୟହାନୀର କାରଣ ହୁଏ ।

ମୋ ମତରେ- 'ମୁଁ ଭାବୁଛି' 'ମହାପ୍ରସାଦ' ସମ୍ବନ୍ଧରେ ଡକ୍ଟର ମେଓ୍ୱାଟ୍ ଏବଂ ଅନ୍ୟମାନେ ଅଧିକ ଗୁରୁତ୍ୱ ଦେଇ ବର୍ଣ୍ଣନା କରିଛନ୍ତି । ମୁଁ କହୁନି ଯେ ସେଇ ଖାଦ୍ୟ ସମାଲୋଚନାର ବାହାରେ- ଏହା କେବେ ନୁହେଁ ।' ୟୁରୋପିଆନ ମାନଙ୍କ ପାଇଁ ଏହା ସୁସ୍ୱାଦଯୁକ୍ତ ନୁହଁ, ବରଂ ଅତ୍ୟନ୍ତ କଦର୍ଯ୍ୟ, ଅପରିଷ୍କାର, ବସ୍ତୁତଃ ଏହାର ଚେହେରା ଦେଖିଲେ ଖାଇବାକୁ ଇଚ୍ଛା ହେବନି । ମୁଁ ମନ୍ଦିର ଭିତରୁ, ବହୁ ପ୍ରକାର ନମୁନା ଆଣିଛି,

ଏପରିକି ସବୁଠାରୁ ଖରାପ ଅବସ୍ଥାରେ ଥିବା ମହାପ୍ରସାଦର ନମୁନା ସଂଗ୍ରହ କରିଛି । ମୁଁ ସେ ସବୁକୁ ନିଜେ ଚାଖିଛି, ପରୀକ୍ଷା କରିଛି । ମୋ ପାଇଁ ସେ ସବୁ ଟେଷ୍ଟଫୁଲ ନଥିଲା କିମ୍ବା ଖାଇକରି ବହୁତ ଖୁସି ନଥିଲି । ମୁଁ ଭାବୁଛି, ମୋଟ ଉପରେ (ଆମ ଦେଶର) ଇଂରେଜ ଯାତ୍ରା ସମୟରେ ମିଳୁଥିବା ବାସିମିଠା, ସେକା ରୁଟି ଏବଂ ଓଦାଳିଆ ଜିଞ୍ଜର ବ୍ରେଡ୍ ସଂଗେ ଏସବୁ ପ୍ରାୟ ସମାନ । ଆଠ, ଦଶ ପ୍ରକାର ଜିନିଷରେ ମିଠା ଜିନିଷ ପ୍ରସ୍ତୁତ ହୋଇଥାଏ । ଏହି ମିଠା ଜିନିଷକୁ ତୀର୍ଥଯାତ୍ରୀମାନେ ପୁରୀରୁ ଫେରିଲା ବେଳେ ସାଙ୍ଗରେ ତାଙ୍କ ଘରକୁ ନେଇଥାନ୍ତି । ସେମାନେ ଗଲାବେଳେ ଅନ୍ନ ମହାପ୍ରସାଦକୁ ସାଙ୍ଗରେ ମଧ୍ୟ ନେଇଥାନ୍ତି । ଓଡ଼ିଆମାନଙ୍କର ଅଭ୍ୟାସ ହେଲା, ରାତିରେ ଭାତ ରାନ୍ଧି ପାଣି ପୁରାଇ ପରଦିନ ସକାଳେ ପଖାଳ ଖାଇବା- ଏ ରାଜ୍ୟର ଏସବୁ ହେଲା ଲୋକାଚାର ।

ପ୍ରାୟ ସବୁ ସମୟରେ ରନ୍ଧା ଯାଉଥିବା ଖାଦ୍ୟକୁ ଉଚ୍ଚ ଜାତିର ହିନ୍ଦୁ ପୋଲିସ୍ ଅଫିସରମାନେ ନିରୀକ୍ଷଣ କରିଥାନ୍ତି । ଏହା ମଧ୍ୟ କୁହାଯାଇପାରେ ଯେ, ଏବେ ନିୟମିତ ଭାବେ ଏସବୁର ତଦାରଖ କରାଯାଉଛି । ସର ଘରେ ମନ୍ଦିରର ସେବାୟତମାନେ ରଖୁଥିବା ଖାଦ୍ୟ ପ୍ରସ୍ତୁତକାରୀ ସରଞ୍ଜାମ ମାନଙ୍କର ରୀତିମତ ନିରୀକ୍ଷଣ ପୋଲିସ୍ କରିଥାଏ । ମନ୍ଦିରର ପରିଚାଳକ ମିଃ ରାବନ୍‌ଙ୍କୁ କଥାଦେଇ କହିଛନ୍ତି ଯେ, ସେ ନିଜେ ମନ୍ଦିରରେ ବିକ୍ରି ହେଉଥିବା ଖାଦ୍ୟପଦାର୍ଥ ଉପରେ ନଜର ରଖିଛନ୍ତି । ଅବଶ୍ୟ ସେ କେତେଦୂର ଦାୟିତ୍ୱ ନେଇ ଏହି କାର୍ଯ୍ୟ କରୁଛନ୍ତି ତାହା ଏକ ପ୍ରଶ୍ନବାଚୀ ହୋଇପାରେ । କିନ୍ତୁ ସେ ମନ୍ଦିର ପରିସର ମଧ୍ୟରେ ନିୟମିତ ଭାବେ ଏସବୁକୁ ଦେଖିବା ହେଲା ତାଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ । ବେଳେବେଳେ ମନ୍ଦିର ସୁପକାର (ସୁଆର)ମାନଙ୍କ ଉପରେ ଜୋରିମାନା ବସେ । ମିଃ ରାବନ୍ ବିଶ୍ୱାସ କରନ୍ତି ମନ୍ଦିରରେ ପ୍ରସ୍ତୁତ ଖାଦ୍ୟର ରନ୍ଧା ଏବଂ ଖାଦ୍ୟର ଗୁଣାତ୍ମକ ମାନର ବୃଦ୍ଧି ଯଥେଷ୍ଟ ପରିମାଣରେ ବଢ଼ିଛି । ଯଦିଓ ଆହୁରି ଅନେକ କିଛି ବଢ଼ିବାର ବାଟ ଅଛି, ତାଙ୍କ ମତରେ ବର୍ତ୍ତମାନର ଭାରତୀୟ ପିଙ୍ଗଳ କୋଡ୍‌ର ୨୭୩ ଦଫା, ମନୁଷ୍ୟ ଅନୁପଯୋଗୀ ଖାଦ୍ୟ ବିକ୍ରି ନିୟନ୍ତ୍ରଣ କରିବା ପାଇଁ ଯଥେଷ୍ଟ । ମୁଁ ମଧ୍ୟ ଭାବୁଛି, ଏଥିପାଇଁ ଆଉ କିଛି ନୂଆ ଆଇନ ପ୍ରଣୟନ କରିବାର ଆବଶ୍ୟକତା ନାହିଁ । ମିଃ ରାବନ ତାଙ୍କର ଫେବୃୟାରୀ ୧୯ ତାରିଖ ୧୮୬୮ ମସିହା ଚିଠି ନମ୍ବର ୯୩ଟିରେ ନିମ୍ନୋକ୍ତ ଭାବରେ ଉଲ୍ଲେଖ କରିଥିଲେ - 'ଯଦି ହେଲ୍‌ଥ ଅଫିସର ନିଯୁକ୍ତି ପାଆନ୍ତି, ତେବେ ତାଙ୍କର କର୍ତ୍ତବ୍ୟ ଦୃଷ୍ଟିରୁ, ଅଖାଦ୍ୟ ଯେପରି ବିକ୍ରି ନହୁଏ, ସେ କଥା ଦେଖିବେ । ଲଜିଂ ଘରର ମାଲିକମାନଙ୍କ ଉପରେ ତାଙ୍କର ଯେଉଁ ପ୍ରଭାବ ରହିବ, ସେଥିଯୋଗୁଁ ସେ ମଧ୍ୟ ଏପରି ବିକ୍ରି ସଂପର୍କରେ ସେମାନଙ୍କୁ ସତର୍କ କରାଇ ପାରିବା ସଂଗେ ତୀର୍ଥଯାତ୍ରୀମାନଙ୍କର ରହଣି ଏବଂ ଭୋଜନ ବ୍ୟବସ୍ଥାରେ ଉନ୍ନତି ଆଣିପାରିବେ ।' ଏହା ନିଃସନ୍ଦେହରେ କୁହାଯାଇପାରେ ଯେ, ଏପରି ବ୍ୟବସ୍ଥା ହେଲେ ତାହା ନିଶ୍ଚିତ ଭାବେ ଭଲ ଫଳ ପ୍ରଦାନ କରିବ ।

ମନ୍ଦିରର ରୋଷ ଘରେ 'ମହାପ୍ରସାଦ' ମନ୍ଦିର ସୁପକାର, ସୁଆରମାନଙ୍କ ଦ୍ୱାରା ପ୍ରସ୍ତୁତି ହୋଇଥାଏ । ସୁଆରମାନଙ୍କ ଛଡା ରୋଷଶାଳାକୁ ଅନ୍ୟମାନଙ୍କ ପ୍ରବେଶ ନଥାଏ । ଯେଉଁ ପ୍ରସାଦ ଏଠାରେ ପ୍ରସ୍ତୁତ କରାହୁଏ, ତାହା ୫୪ ପ୍ରକାରର ଭୋଗ ବୋଲି କୁହାଗଲା ବେଳେ ମୁଖ୍ୟତଃ ଏହି ଭୋଗକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । (କ) କୋଠ ଭୋଗ (ଖ) ଅନ୍ୟାନ୍ୟ ଭୋଗ । କୋଠ ଭୋଗ ମୁଖ୍ୟତଃ ମିଠା ଜିନିଷ । ଏହା ମନ୍ଦିର କର୍ମଚାରୀଙ୍କ ପାଇଁ ଅଫିସିଆଲି ପ୍ରସ୍ତୁତ କରାଯାଇଥାଏ । ଏଇ ଭୋଗ ଉଚ୍ଚମାନର । ଏହାର ପ୍ରସ୍ତୁତି ପାଇଁ ମନ୍ଦିର ପରିଚାଳକ ବା ପୁରୀ ରାଜା ସମସ୍ତ ସାମଗ୍ରୀ ମନ୍ଦିର କୋଠ ଘରୁ ଯୋଗାଇ ଦେଇଥାନ୍ତି । କୋଠ ଭୋଗ ପ୍ରସ୍ତୁତ ହୋଇସାରିଲା ପରେ ଏହା ଶ୍ରୀଜୀଉଙ୍କ ପାଖରେ ଭୋଗ ଲାଗିଥାଏ । ଭୋଗ ପରେ ଏହି ପ୍ରସାଦ ମନ୍ଦିର ସେବା କରୁଥିବା ସେବାୟତ ଏବଂ କର୍ମଚାରୀଙ୍କ ମଧ୍ୟରେ ବାଣ୍ଟି ଦିଆଯାଇଥାଏ । ଅଧିକା ଭୋଗ ଥିଲେ ତାହା ରାଜାଙ୍କ ନଅରକୁ ପଠାଯାଏ, ନହେଲେ ବିକ୍ରି କରିଦିଆଯାଏ । କୋଠ ଭୋଗର ବହୁ କମ୍ ପରିମାଣ ଆନନ୍ଦ ବଜାରରେ ବିକ୍ରି ହେବା ପାଇଁ ଆସିଥାଏ ।

ଅନ୍ୟାନ୍ୟ ଭୋଗ ସାଧାରଣରେ ପୁରୀକୁ ଆସୁଥିବା ଯାତ୍ରୀ ଏବଂ ସାଧାରଣ ଲୋକଙ୍କ ପାଇଁ ପ୍ରସ୍ତୁତ ହୁଏ । ମିସିଲିନିୟସ ଭୋଗ ବହୁ ପରିମାଣରେ ରନ୍ଧା ଯାଇଥାଏ । ଭୋଗ ରନ୍ଧା ପାଇଁ ଡାଲି, ଚାଉ, ଘିଅ, ଗୁଡ ଏ ସମସ୍ତ ପଦାର୍ଥ ମନ୍ଦିର ଭଣ୍ଡାର ଘରୁ ଯୋଗାଇ ଦିଆଗଲା ବେଳେ କଞ୍ଚା ପରିବା, ଫଳ, ମୂଳ, ଦୁଧ, ଦହି ଯେଉଁସବୁ ଜିନିଷ ଭୋଗ ପ୍ରସ୍ତୁତ ପାଇଁ ମିଶିଥାଏ, ତାହା ସବୁ ବଜାରରୁ ଆବଶ୍ୟକତା ଅନୁଯାୟୀ କିଣାଯାଇ ରୋଷ ପାଇଁ ଯୋଗାଇ ଦିଆଯାଏ । ଏହି ପ୍ରସାଦ ରନ୍ଧା ହୋଇସାରିଲା ପରେ ଦେବତାଙ୍କ ପାଖରେ ଭୋଗ ହୁଏ । ଭୋଗ ପରେ ପ୍ରସାଦକୁ ପଣ୍ଡା କିମ୍ବା ତାଙ୍କର କର୍ମଚାରୀମାନେ ମନ୍ଦିର ବାହାରକୁ ନେଇ ବିକ୍ରି କରିଥାନ୍ତି । ଏହି ପ୍ରସାଦର ବହୁଳ ଅଂଶ ବେଳେ ବେଳେ ବହୁ ସମୟ ଧରି ବିକ୍ରି ନହୋଇ ରହିଯିବା ଯୋଗୁଁ ଖାଦ୍ୟପଯୋଗୀ ହୁଏ ନାହିଁ । ତଥାପି ଯାତ୍ରୀମାନଙ୍କ ପାଇଁ ଏହି ପ୍ରସାଦ ଏତେ ପବିତ୍ର ଯେ, ଏହାର କାଣିଚାଏ ମଧ୍ୟ ସେମାନେ ନଷ୍ଟ କରିବାକୁ ଦିଅନ୍ତି ନାହିଁ । ବେଳେ ବେଳେ ମଠାଧିକାରୀ ଏବଂ ପଣ୍ଡାମାନେ ତାଙ୍କ ପାଇଁ ପ୍ରସାଦ ରାନ୍ଧିବା ଲାଗି ସରଞ୍ଜାମମାନ ମନ୍ଦିର ରୋଷଶାଳାକୁ ପଠାଇଥାନ୍ତି ଏବଂ ସୁପକାରମାନେ ସେମାନଙ୍କ ପାଇଁ ପ୍ରସାଦ ପ୍ରସ୍ତୁତ କରିଥାନ୍ତି । ମାତ୍ର ପ୍ରସାଦ ରନ୍ଧନ ପାଇଁ ପ୍ରାୟ ଜିନିଷ ସବୁବେଳେ ମନ୍ଦିର ସରଘରୁ ଅଣାଯାଇଥାଏ କିମ୍ବା ମନ୍ଦିର କର୍ମଚାରୀଙ୍କ ଦ୍ୱାରା କିଣାଯାଇ ଯୋଗାଇ ଦିଆଯାଇଥାଏ । ଭକ୍ତ କିମ୍ବା ଯାତ୍ରୀମାନଙ୍କର ଆର୍ଥିକ ଅବସ୍ଥା ଉପରେ ପ୍ରସାଦର ମାନ ନିର୍ଭର କରେ । ଗରିବ, ଭିକାରୀମାନେ ବାସି, ପଚାସଢ଼ା ପ୍ରସାଦ ପାଇ ସନ୍ତୁଷ୍ଟ ହେଲାବେଳେ ଆର୍ଥିକ ସ୍ୱଚ୍ଛଳ ଭକ୍ତମାନେ ସଜ, ଉନ୍ନତମାନର ପ୍ରସାଦ

କିଣିଥାନ୍ତି । ଅବଶ୍ୟ ଭଲ ପ୍ରସାଦର କେତେକାଂଶ ଗରିବ, ଭିକାରୀମାନଙ୍କ ଉଦ୍ଦେଶ୍ୟରେ ମଧ ବଣ୍ଟନ କରାଯାଇଥାଏ । ତେବେ ଏଇ ବଣ୍ଟନ ମୁଖ୍ୟତଃ ବୈଷ୍ଣବ ସଂପ୍ରଦାୟଙ୍କ ଉଦ୍ଦେଶ୍ୟରେ ହୋଇଥିବା ବେଳେ ଅନ୍ୟମାନେ ବିଶେଷ ଭାବେ ପାଇନଥାନ୍ତି । ବଳି ପଡୁଥିବା ପ୍ରସାଦ, କେବେହେଲେ ଦ୍ୱିତୀୟଥର ପାଇଁ ରନ୍ଧାଯାଏ ନାହିଁ । 'ମୁଁ ଶୁଣିବାକୁ ପାଇଲି, ଦୁଇ ପ୍ରକାର ମିଠା ଭୋଗ ବାସିହୋଇ ବିକ୍ରି ହୋଇପାରି ନଥିଲେ ମଧ ତାହା ଦେହରେ ପୁଣି ଗୁଡ଼ଦେଇ ଆନନ୍ଦ ବଜାରରେ ବିକ୍ରି ପାଇଁ ଯାଇଥାଏ । ସେଇ ମିଠା ପ୍ରସାଦ ହେଲା ଖଇରିଚୁଳ ( Koirchool) ଏବଂ କଟକକୋଟି (Kotkotee) । ପ୍ରସାଦ ପ୍ରସ୍ତୁତର ଦାୟିତ୍ୱ କେବଳ ସୁଆରମାନଙ୍କର । ପୁରୀକୁ ଆସିଥିବା ଯାତ୍ରୀମାନେ ମୁଖ୍ୟତଃ ମନ୍ଦିରରେ ରନ୍ଧା ହେଉଥିବା ପ୍ରସାଦ ହିଁ ଖାଇଥାନ୍ତି । କିନ୍ତୁ ସବୁବେଳେ ଯାତ୍ରୀମାନେ ମନ୍ଦିରରେ ପ୍ରସ୍ତୁତ ପ୍ରସାଦ ଉପରେ ନିର୍ଭର ନକରି ସେମାନେ ମଧ ରୋଷେଇବାସ କରିଥାଆନ୍ତି । ଯେତେବେଳେ ମହାପ୍ରସାଦର ଦାମ୍ ଅଧିକା ହୁଏ, ସେତେବେଳେ ବାହାରେ ରୋଷେଇ ହେବା ଅଧିକ ପରିମାଣରେ ଦେଖାଯାଇଥାଏ ।

## ପୁରୀ ଲଜିଂ ହାଉସ୍‌ର ନିୟମାବଳୀ

ପୁରୀରେ ତୀର୍ଥଯାତ୍ରୀମାନଙ୍କର ରହିବା ପାଇଁ ବସାଘର ନିୟମାବଳୀ ମୁଖ୍ୟତଃ ବସାଘରର ଦୈର୍ଘ୍ୟ, ପ୍ରସ୍ତ, ଜଳଯୋଗାଣ, ନାଳ ଓ ପରିମଳ ବ୍ୟବସ୍ଥା ସଂପର୍କରେ ଡକ୍ଟର ମେଓ୍ୱାଟ୍ ଲେଖିଥିଲେ 'ରଥଯାତ୍ରା ସମୟରେ ପୁରୀ ସହରକୁ ଏକ ବିସ୍ତୃତ 'ସରାଇ' ଭାବେ ଗ୍ରହଣ କରି ୧୮୬୭ ମସିହା (Act XXII) ଆଇନକୁ ଲାଗୁ କରାଯିବା ଦରକାର ।'

**ମତାମତ:** ନିର୍ଦ୍ଦିଷ୍ଟ ଆଇନ ମାଧମରେ ପୁରୀ ସହରର ସମସ୍ତ ଯାତ୍ରୀ ବସାଘର ନିୟନ୍ତ୍ରିତ ହେବା ଦରକାର । ଏଥିରେ ସନ୍ଦେହର ଅବକାଶ ନାହିଁ । ଛୋଟ ଛୋଟ ବସାଘରମାନଙ୍କରେ ଅଧିକ ସଂଖ୍ୟାରେ ଯାତ୍ରୀ ରହିବା - ହଇଜା ରୋଗ ସଂକ୍ରମିତ ହେବାର ଏକ ମୁଖ୍ୟ କାରଣ । ଭାରତରେ ୩ବର୍ଷ ମଧରେ ଯେଉଁସବୁ ସ୍ଥାନରେ ହଇଜା ସଂକ୍ରମିତ ହେବାର ମୁଁ ଦେଖିଛି, ସେସବୁ ସ୍ଥାନରେ ଜନଗହଳି ହିଁ ମୁଖ୍ୟ କାରଣ ଭାବେ ଦେଖାଯାଇଛି ।

ଡକ୍ଟର ମେଓ୍ୱାଟ୍, ପୁରୀ ସହରରେ ସରାଇ ଆଇନ ଲାଗୁ କରିବା ପାଇଁ ପ୍ରସ୍ତାବ ଦେଇଛନ୍ତି । ଏହି ନିୟମର ବହୁ ପ୍ରୋଭିଜନସ୍ ପୁରୀ ବସାଘର ପାଇଁ ଏକାନ୍ତ ପ୍ରୟୋଜନ । ମୁଁ ଭାବୁଛି, ଏହି ନିୟମ ପ୍ରଚଳନ ହେଲେ, ସହରରେ ଯାତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ ବସାଘର ଗୁଡ଼ିକ ସଠିକ୍ ଭାବେ ନିୟନ୍ତ୍ରିତ କରାଯାଇ ପାରିବ । ସରାଇ ଆକ୍ଟରେ ସ୍ୱାସ୍ଥ୍ୟ ଅଧିକାରୀଙ୍କ ନିଯୁକ୍ତି ପାଇଁ କିଛି ପ୍ରସ୍ତାବ ନାହିଁ । ପୁରୀ ସହରର ବର୍ତ୍ତମାନ ଅବସ୍ଥାକୁ ଲକ୍ଷ୍ୟକଲେ ଏପରି ନିଯୁକ୍ତି ବ୍ୟବସ୍ଥା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବସାଘର ରେଜିଷ୍ଟ୍ରିକରଣ ପାଇଁ

କୌଣସି ମୂଲ୍ୟ ଧାର୍ଯ୍ୟ ହୋଇନାହିଁ । ଏହି ଆକ୍ଟର ୬ ଧାରା ଅନୁସାରେ ପ୍ରତ୍ୟେକ ବସାଘରର ମାଲିକମାନେ ବସାଘର ରେଜିଷ୍ଟ୍ରିକରଣ ସାର୍ଟିଫିକେଟ୍ ପାଖରେ ରଖିବେ, ଯେଉଁଥିରେ ବସାଘର ସଂପର୍କରେ ଉଲ୍ଲେଖ ଥିବ । ସରାଇ ଆଇନର ୭ମ ଧାରାର ଷଷ୍ଠ ଓ ସପ୍ତମ ପାରାଗ୍ରାଫ ପୁରୀ ପାଇଁ ପ୍ରଯୁଜ୍ୟ ନୁହଁ ।

ପୁରୀ (ବସାଘର) ଲଜିଂ ହାଉସ୍ ବିଲ୍ ସଂପର୍କରେ ଏହି ରିପୋର୍ଟରେ ସ୍ୱତନ୍ତ୍ର ଭାବେ ଆଲୋଚନା କରାଯାଇଛି । ସେଇ କଥାକୁ ଏଠାରେ ଆଉଥରେ ଉଲ୍ଲେଖ କରିବାର ଆବଶ୍ୟକ ନାହିଁ ।

ପୁରୀ ସହରର ଲଜିଂ ହାଉସ୍ ନିୟନ୍ତ୍ରଣ ନିୟମାବଳୀ ଏବଂ ପୁରୀ ସହର ବାହାରେ ଶିବିର ମଧ୍ୟରେ ଯାତ୍ରୀମାନଙ୍କୁ ରଖିବା ବ୍ୟବସ୍ଥାରେ ଦେଖାଦେଇଥିବା ସାମାଜିକ ସୁବିଧା ସଂପର୍କରେ ଡକ୍ଟର ମେଓ୍ୱାଟ୍ ନିମ୍ନଲିଖିତ ପ୍ରସ୍ତାବ ଦେଇଥିଲେ -

ଲଜିଂ ହାଉସ୍ ନିୟମ ଅନୁସାରେ ଲଜିଂ ହାଉସ୍‌ମାନଙ୍କରେ କେତେ ସଂଖ୍ୟକ ଯାତ୍ରୀ ରହିବା ଉପରେ କଟକଣା - ପଢ଼ିଆରୀ ଏବଂ ଧୂଳିଆପଣ୍ଡା ଯେଉଁମାନେ ଭାରତର ବିଭିନ୍ନ ପ୍ରାନ୍ତରରୁ ଯାତ୍ରୀମାନଙ୍କୁ ପୁରୀକୁ ଆଣିଥାନ୍ତି, ସେମାନଙ୍କ ଭେଷ୍ଟେଡ୍ ରାଇଟ୍ ଉପରେ ହସ୍ତକ୍ଷେପ କରିବା । ଯଦି ଶିବିରରେ ରହିବା ବ୍ୟବସ୍ଥା କରାଯାଏ, ତେବେ ପ୍ରତ୍ୟେକ ପଢ଼ିଆରୀମାନଙ୍କୁ ସେମାନେ ଯେଉଁ ଯାତ୍ରୀମାନଙ୍କୁ ଆଣିଥିବେ, ସେମାନଙ୍କୁ ଏକାଠି ରଖିବା ପାଇଁ ସଫିସିଏଣ୍ଟ ସ୍ଥାନ କ୍ୟାମ୍ପରେ ଦେବାକୁ ପଡିବ । ବର୍ତ୍ତମାନ ସେଇ ପ୍ରକାର ପରମ୍ପରା ଚାଲି ଆସୁଛି । ହଠାତ୍ ନାନା ପ୍ରକାର ନିୟମ କାନୁନ ପ୍ରଚଳନ କଲେ ତାକୁ ଯାତ୍ରୀମାନଙ୍କ ଠାରୁ ପଢ଼ିଆରୀ ପର୍ଯ୍ୟନ୍ତ ସମସ୍ତେ ପସନ୍ଦ କରିବେନି ଏବଂ ଏହାର ପ୍ରତିବାଦ ମଧ୍ୟ କରିବେ ।

**ମତାମତ:** ନବାଗତ ତୀର୍ଥଯାତ୍ରୀମାନେ ପୁରୀ ସହରରେ ପହଞ୍ଚିବା ପରେ ସେମାନେ ନିଜ ନିଜର ଜଣାଶୁଣା ଗାଇଡ୍‌ମାନଙ୍କ ତତ୍ତ୍ୱାବଧାନରେ ରହିବା ନିଶ୍ଚିତ ଭାବେ ଉପଦେଶଯୋଗ୍ୟ ଓ ଉଚିତ୍ ମଧ୍ୟ । ପଢ଼ିଆରୀମାନଙ୍କ ଭେଷ୍ଟେଡ୍ ରାଇଟ୍ ସଂପର୍କରେ ମୋର କିଛି କହିବାର ନାହିଁ, କାରଣ ଏପରି ଅଧିକାରର ମୂଲ୍ୟ ସେପରି କିଛି ନାହିଁ । ପଢ଼ିଆରୀମାନେ ଏହି ଅଧିକାର ବଳରେ ଯାତ୍ରୀମାନଙ୍କର ପ୍ରଭୁ ହୋଇ ଯାଉନାହାଁନ୍ତି ମାତ୍ର ଏତିକି କରିବେ, ଯେତେବେଳ ପର୍ଯ୍ୟନ୍ତ ଯାତ୍ରୀମାନେ ପୁରୀରେ ଥିବେ ସେତେବେଳ ପର୍ଯ୍ୟନ୍ତ ସେମାନେ ତାଙ୍କୁ ଘେରିକରି ରହିଥିବେ ।

ପୁରୀର ମଠମାନେ ମନ୍ଦିର ପାଇଁ ଏବଂ ସେମାନଙ୍କର ମଠର ପରିଚାଳନା ପାଇଁ ଯେଉଁ ସବୁ ଅର୍ଥ ବିନିଯୋଗ କରୁଛନ୍ତି, ସରକାର ତା'ଉପରେ କିଛି ନିୟନ୍ତ୍ରଣ ରଖିବା ଉଚିତ୍ ନୁହେଁ । ଯାତ୍ରୀମାନଙ୍କର ରହିବା ପାଇଁ ପୁରୀ ରାଜାଙ୍କୁ ମଧ୍ୟ ମନ୍ଦିର ପାଣ୍ଠିରୁ କିଛି ଖର୍ଚ୍ଚ

କରିବାକୁ କହିବା ଠିକ୍ ହେବନି । ମନ୍ଦିର ଭିତରେ ବିକ୍ରି ହେଉଥିବା ବାସି ଭୋଗ ପାଇଁ ମଧ୍ୟ ତାଙ୍କୁ ଦାୟୀ କରିହେବନି କିମ୍ବା ତାଙ୍କ ଉପରେ ଏଥିପାଇଁ ଜୋରିମାନା ବସାଯିବା ଠିକ୍ ହେବନି ।

୧୮୪୦ ମସିହା ଆକ୍ଟ (X) ଅନୁସାରେ ମନ୍ଦିରର ସେବାୟତ, ପଣ୍ଡା ଏବଂ କର୍ମଚାରୀମାନଙ୍କୁ ନିୟନ୍ତ୍ରଣ କରିବାର ଅଧିକାର ପୁରୀ ରାଜାଙ୍କୁ ଦିଆଯାଇଛି । ମନ୍ଦିରରେ ଚଳି ଆସୁଥିବା ପ୍ରଥା ଏବଂ ନିୟମ ଅନୁସାରେ ଆକ୍ଟର ଏହି ପ୍ରୋଭିଜନରେ ତାହା ରାଜାଙ୍କ ହସ୍ତରେ ନ୍ୟସ୍ତ କରାଯାଇଛି । ତେଣୁ ପୁରୀ ମନ୍ଦିରର ପରିଚାଳନା ଦାୟିତ୍ୱ, ନିୟମାବଳୀକୁ କାର୍ଯ୍ୟକାରୀ କରିବାର ଅଧିକାର ସଂପୂର୍ଣ୍ଣ ଭାବେ ରାଜାଙ୍କ ହସ୍ତରେ ନ୍ୟସ୍ତ । ଯଦି ମନ୍ଦିରର ଆଭ୍ୟନ୍ତରୀଣୀୟ ଆର୍ଥିକ ବ୍ୟବସ୍ଥା ଯାହା ହେବା କଥା ତାହା ନହୁଏ, ଦୋଷ ତାଙ୍କ ମୁଣ୍ଡ ଉପରକୁ ଯିବ । ମନ୍ଦିର ଭିତରେ ଯେଉଁସବୁ କୁକାର୍ଯ୍ୟ ଅଛି, ସେସବୁକୁ ଦମନ କରିବା, ସରକାର ତାଙ୍କ ପାଖରୁ ଆଶା କରନ୍ତି । ବର୍ତ୍ତମାନର ରାଜା ଜଣେ ବାଳୁତ ତେଣୁ ତାଙ୍କ ପାଖରୁ ମନ୍ଦିର ପରିଚାଳନା ବିଷୟରେ ଆଶା କରିବା ଠିକ୍ ହେବନି । କିନ୍ତୁ ଜଗନ୍ନାଥଙ୍କ ମନ୍ଦିର ପରି ମନ୍ଦିରର ପରିଚାଳନା ଦାୟିତ୍ୱ ସବୁବେଳେ ରାଜାଙ୍କ ପାଖରେ ହିଁ ରହିବା ଉଚିତ୍ । ରାଜାଙ୍କ ଅନୁପସ୍ଥିତିରେ ତାଙ୍କର ପ୍ରତିନିଧି ତାର ଦାୟିତ୍ୱ ନେବେ ମାତ୍ର ବ୍ରିଟିଶ ସରକାରଙ୍କ ପାଖରେ ମନ୍ଦିର ପରିଚାଳନା ଦାୟିତ୍ୱ ରହିବା ଉଚିତ ନୁହେଁ ।

## ନୂଆ ହସ୍ପିଟାଲ ପ୍ରତିଷ୍ଠା ହେବାର ଆବଶ୍ୟକତା

ଡକ୍ଟର ମେୱାଟ୍ ଜଳେଶ୍ୱର, ଭଦ୍ରକ ଓ ପିପିଲି ଠାରେ ଡାକ୍ତରଖାନା ମାନ ପ୍ରତିଷ୍ଠା ହେବାର ଆବଶ୍ୟକତା ସଂପର୍କରେ ସୂଚନା ଦେଇଛନ୍ତି ।

**ମତାମତ:** ମୋ ମତରେ ଓଡ଼ିଶା ଭିତର ଦେଇ ଯାଇଥିବା ରାଜରାସ୍ତା କଡରେ ହସ୍ପିଟାଲ ଡିସ୍ପେନସାରୀ ରହିବାର ଆବଶ୍ୟକତା ଯଥେଷ୍ଟ ଅଛି । ମୋର ପ୍ରଥମ ପ୍ରସ୍ତାବ ହେଲା, ପୁରୀଠାରୁ ୮ ମାଇଲ୍ ଦୂର କଟକ-ପୁରୀ ରାସ୍ତା ପାଖ ଦାମୋଦରପୁର ନିକଟରେ ଗୋଟିଏ ଡିସ୍ପେନସାରୀ ପ୍ରତିଷ୍ଠା ହେବା ଦରକାର । ୨ୟ ପ୍ରସ୍ତାବ ହେଲା - ପୁରୀଠାରୁ ୨୬ ମାଇଲ୍ ଦୂର କଟକ-ପୁରୀ ମୁଖ୍ୟ ରାସ୍ତା କଡରେ ଥିବା ପିପିଲି ନିକଟରେ ଏକ ବଡଧରଣର ତୀର୍ଥଯାତ୍ରୀ ଡାକ୍ତରଖାନା ପ୍ରତିଷ୍ଠା ହେବା ଦରକାର । ପିପିଲି ନିକଟରେ ବହୁ ସଂଖ୍ୟାରେ ପୁରୀକୁ ଆସୁଥିବା ତୀର୍ଥଯାତ୍ରୀମାନେ ବିଶ୍ରାମ ନେଇଥାନ୍ତି । ପିପିଲି ମଧ୍ୟ ଭୁବନେଶ୍ୱରଠାରୁ ମାତ୍ର ୯ ମାଇଲ୍ ଦୂରରେ ଅବସ୍ଥିତ । ପ୍ରତ୍ୟେକ ବର୍ଷ ଭୁବନେଶ୍ୱରକୁ ହଜାର ହଜାର ଯାତ୍ରୀ ଆସିଥାନ୍ତି । ତା'ଛଡା ପିପିଲି ଗୋଟିଏ ମିସନାରୀ ଷ୍ଟେସନ । ବର୍ତ୍ତମାନ ଯେତେ ପ୍ରକାର ଲୋକହିତକର କାର୍ଯ୍ୟ କରାଯାଉଛି, ତାହା ମିଶନାରୀମାନେ

କରୁଛନ୍ତି । ମିଶନାରୀମାନେ ମୋତେ କହିଛନ୍ତି ଯେ, ସେମାନେ ବହୁ ସମୟରେ ଅତୀବ ଦୁଃଖଦ ଘଟଣାମାନଙ୍କର ସମ୍ମୁଖୀନ ହୋଇଥାନ୍ତି, ଯାହାର ପ୍ରତିକାର ସେମାନେ ସନ୍ତୋଷ ଭାବରେ କରିପାରନ୍ତିନି - ସେମାନେ ଚାହାଁନ୍ତି ପିପିଲି ଠାରେ ଗୋଟିଏ ଯାତ୍ରୀ ଡାକ୍ତରଖାନା ପ୍ରତିଷ୍ଠା କରାଯାଉ । ମୋ' ମତରେ ଏହା ଅତ୍ୟନ୍ତ ଜରୁରୀ । ୩ୟ ପ୍ରସ୍ତାବ ହେଲା - କଟକ ଓ ପିପିଲି ମଧ୍ୟସ୍ଥଳୀରେ ଥିବା ବାଲିଅନ୍ତା ନିକଟରେ ଗୋଟିଏ ଭଲ ଡିସ୍‌ପେନସାରୀ ହେବା ଦରକାର । ବାଲେଶ୍ୱର ଜିଲ୍ଲାରେ ବାଲେଶ୍ୱର, ଭଦ୍ରକ, ବସ୍ତା ଏବଂ ରାଜଘାଟ ଠାରେ ଧର୍ମଶାଳା ମାନ ଅଛି । ଭଦ୍ରକ ଓ ବାଲେଶ୍ୱରର ଧର୍ମଶାଳା ମୁଁ ଯାହା ଦେଖିଲି ମରାମତି ଦରକାର କଲାଣି । ବାକି ଯାହା ଶୁଣିଲି, ସେସବୁ ଧର୍ମଶାଳାର ଅବସ୍ଥା ମଧ୍ୟ ସେହିପରି । ଭଦ୍ରକ ଏବଂ ବାଲେଶ୍ୱରରେ ଥିବା ଧର୍ମଶାଳାର ଛାତ ଭୁଶୁଡି ପଡିବା ଅବସ୍ଥାରେ ଅଛି । ସେଠାରେ ରହିବା ମଧ୍ୟ ନିରାପଦ ନୁହେଁ । ଯାତ୍ରୀମାନଙ୍କୁ ତା'ଭିତରେ ରଖିବା ଆଦୌ ନିରାପଦ ନୁହଁ । ସେ ସମସ୍ତ ଧର୍ମଶାଳାର ଭିତର, ବାହାର ସଫା ହେବା ସଂଗେ ଚୂନ ଦିଆଯାଇ ରଙ୍ଗ ହେବା ଦରକାର । ଧର୍ମଶାଳାମାନଙ୍କର ରକ୍ଷଣାବେକ୍ଷଣ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହିସବୁ ଧର୍ମଶାଳାମାନ ଯେତେବେଳେ ନିର୍ମାଣ ହୋଇଥିଲା, ସେତେବେଳେ ଏହି ବିଲ୍‌ଡିଂ ଗୁଡିକ ବେଶ୍ ସୁରକ୍ଷିତ, ପ୍ରଶସ୍ତ ଏବଂ ବାସପଯୋଗୀ ଥିବ ଏବଂ ଯେଉଁ ଉଦ୍ଦେଶ୍ୟରେ ଏସବୁ ନିର୍ମାଣ କରାଯାଇଥିଲା, ସେ ଉଦ୍ଦେଶ୍ୟ ପୂରଣ ହୋଇଥିବ । ବର୍ତ୍ତମାନ ବସ୍ତୁତଃ, ପ୍ରାୟ ସବୁ ଧର୍ମଶାଳା ଭାଙ୍ଗିରୁଜି ଗଲାଣି । ତଥାପି ମଧ୍ୟ ତୀର୍ଥଯାତ୍ରୀମାନେ ଏସବୁକୁ ବ୍ୟବହାର କରିବାକୁ ଛାଡିନଥାନ୍ତି । ଅତ୍ୟନ୍ତ ଦୁଃଖର ସହ କହିବାକୁ ଯାଉଛି ଯେ, ଅର୍ଥାଭାବରୁ ଆଜି ଏସବୁ ବିଲ୍ଡିଂ ଅବସ୍ଥା ଏହିପରି ସ୍ଥିତିରେ ପହଞ୍ଚିଛି । ମୋ' ମତରେ ତୀର୍ଥଯାତ୍ରୀମାନଙ୍କ ସୁବିଧା ପାଇଁ ମୁଖ୍ୟ ରାସ୍ତାର କଡରେ ଏବଂ ସମାନ୍ତର ଦୂରତ୍ୱରେ ସରକାର ସେମାନଙ୍କ ପାଇଁ ବିଶ୍ରାମ ଗୃହର ବ୍ୟବସ୍ଥା କରିବା ଉଚିତ୍ । ଧର୍ମଶାଳା ଗୁଡିକୁ ରକ୍ଷଣାବେକ୍ଷଣ କଲେ ସରକାର ଆଉ ଅଧିକା ବିଶ୍ରାମ ଗୃହ ନିର୍ମାଣ କରିବାର ଆବଶ୍ୟକତା ଅନୁଭବ କରିବେନି । ଯେଉଁଠି ଧର୍ମଶାଳା ଅଛି, ସେହି ଧର୍ମଶାଳାର ଗୋଟିଏ କୋଠରୀକୁ ପରିଷ୍କାର ରଖି ସେଠାରେ ମଧ୍ୟ ଯାତ୍ରୀମାନଙ୍କ ପାଇଁ ଡିସ୍‌ପେନସାରୀର ଗୋଟିଏ ଗୋଟିଏ ଛୋଟ ଶାଖା ଡିସ୍‌ପେନସାରୀ ଖୋଲାଯାଇ ପାରିବ । ଏସବୁ ସ୍ଥାନର ପରିମଳ ବ୍ୟବସ୍ଥା ଉପରେ ମଧ୍ୟ ତୀକ୍ଷ୍ଣ ନଜର ରହିବା ଦରକାର । ବାଲେଶ୍ୱରଠାରେ ହସ୍‌ପିଟାଲ ନିର୍ମାଣ ପାଇଁ ଡକ୍ଟର ମୌଆଟ୍ ଗୋଟିଏ ସ୍ଥାନ ନିରୂପଣ କରି ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ । ଗଲା ବାଟରେ, ମୁଁ ସେହି ସ୍ଥାନକୁ ଯାଇ ଦେଖିଥିଲି । ଜାଗା ଉପରେ ଶୁଣିଲି, ନିର୍ବାଚିତ ସ୍ଥାନରେ ନୂଆ କଚେରୀ ଗୃହ ନିର୍ମାଣ ହେବାର ବ୍ୟବସ୍ଥା କରାଯାଉଛି ।

ଡକ୍ଟର ମୌଆଟ୍ ଲେଖିଥିଲେ ଯେ- 'ତୀର୍ଥଯାତ୍ରୀମାନଙ୍କ ରାସ୍ତାରେ ହଇଜା ନିରାକରଣ କରିବା ବ୍ୟବସ୍ଥା ସେପରି କିଛି କଷ୍ଟକର ନୁହଁ । ପଞ୍ଜାବ ଏବଂ ଉତ୍ତର-ପଶ୍ଚିମ

ପ୍ରଦେଶରେ ଏପରି ବ୍ୟବସ୍ଥା ଗ୍ରହଣ କରାଯାଇ ସାରିଛି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା- ରାସ୍ତାକଡ ସହର ଏବଂ ଗ୍ରାମମାନଙ୍କୁ ପରିଷ୍କାର କରି ରଖିବା ଏବଂ ଏହାର ସାନିଟାରୀ ବ୍ୟବସ୍ଥାରେ ଉନ୍ନତି କରିବା । ହଇଜା, ମଶିଷମାନଙ୍କ ଦ୍ୱାରା କିମ୍ବା ଜଳବାୟୁ ଜନିତ ଯେଉଁ କାରଣରୁ ସଂକ୍ରମିତ ହେଲେ ମଧ୍ୟ ପରିମଳ ବ୍ୟବସ୍ଥା ଉନ୍ନତ ମାନର ଥିଲେ, ତାହା ନିବାରଣ କରାଯାଇ ପାରିବ । ନୂତନ ଭାବେ ଯେଉଁ ସାନିଟାରୀ ଅଫିସରମାନେ ନିଯୁକ୍ତି ପାଇବେ, ସେମାନଙ୍କର ପ୍ରଥମ କର୍ତ୍ତବ୍ୟ ହେବ ଏସବୁକୁ ଉପଯୁକ୍ତ ଭାବେ ତଦାରଖ କରିବା ।'

ମୁଁ ତାଙ୍କର ଏହି ମତାମତକୁ ସଂପୂର୍ଣ୍ଣ ଭାବେ ସମର୍ଥନ କରୁଛି । ସରକାରଙ୍କର ସାନିଟାରୀ ଉପଦେଷ୍ଟା ଭାବେ ଏଠି ମୋର ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ଅଛି । ଏହି ପରିସ୍ଥିତିରେ ପହଞ୍ଚିଲା ପରେ ମୁଁ ବିଚାରୁଛି- ଓଡ଼ିଶାର ସହର ଏବଂ ଗ୍ରାମମାନଙ୍କୁ ପରିଷ୍କାର ପରିଚ୍ଛନ୍ନ କରି ଶୁଦ୍ଧ କରିବା ପାଇଁ କି ପ୍ରକାର ବ୍ୟବସ୍ଥା କରାଯାଇ ପାରିବ ? ଏହି ଶୀର୍ଷକରେ ମୁଁ ବର୍ତ୍ତମାନ ପାଇଁ ମୋର ମତାମତ କେବଳ ପୁରୀ ସହର ଉପରେ ଦେବି । ସେହି ନିୟମ ଅନ୍ୟେ ବହୁତେ ସବୁ ସ୍ଥାନରେ ଲାଗୁ କରାଯାଇ ପାରିବ ।

## ପୁରୀ ସହରର ପରିମଳ ବ୍ୟବସ୍ଥା ପାଇଁ ପ୍ରସ୍ତାବ

ପୁରୀ ସହର ପାଇଁ ଅଧିକ ସଂଖ୍ୟକ ସଫେଇ ଷ୍ଟାଫ୍ ସ୍ଥାୟୀ ଭାବେ ନିଯୁକ୍ତି ପାଇବା ଦରକାର । ଯେଉଁ ପରିମାଣରେ ଯାତ୍ରୀ ପୁରୀ ସହରକୁ ଆସୁଛନ୍ତି ସହର ଛୋଟ ହେଲେ ମଧ୍ୟ ଅଧିକ ପରିମାଣରେ ସଫେଇ ବାଲା ରହିବାର ଆବଶ୍ୟକତା ଅନୁଭବ କରାଯାଉଛି । ସହର ଭିତର ରାସ୍ତା କଡରେ ସବୁ ପ୍ରକାର ଆବର୍ଜନା ଓଳିଆ ହୋଇ ଗଦା ହେଉଥିବା ଆବର୍ଜନାକୁ ପ୍ରତ୍ୟେକ ଦିନ ଦୁଇଥର ସହର ବାହାରକୁ ନେଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଜମା କରିବା ପାଇଁ ଉପଯୁକ୍ତ ନିର୍ଦ୍ଦେଶନାମା ଜାରୀ କରାଯାଉ । ଘର ଭିତରେ ଏବଂ ପରିସର ମଧ୍ୟରେ ଜମି ରହୁଥିବା ପଚାପାଣିକୁ ନିଷିଦ୍ଧ କରାଯାଉ । ସହର ଭିତରେ ଥିବା ଛୋଟ ଛୋଟ ଚୁଆ, ଟୁବ ମଳକୁଣ୍ଡକୁ ନିଷେଧ କରିବା ସଂଗେ ସଂଗେ ସହରର ଜଳ ନିଷ୍କାସନ ବ୍ୟବସ୍ଥାରେ ଉନ୍ନତି କରାଯିବା ଉଚିତ୍ । ସର୍ବୋପରି ମଲା ଜନ୍ତୁମାନଙ୍କର ମଇଳା ଯେପରି ମାଟି ତଳକୁ ଯାଇ କୂପ, ପୁଷ୍କରିଣୀ ପାଣିକୁ ଦୂଷିତ ନକରେ, ସେଥିପାଇଁ ତୀକ୍ଷ୍ଣ ନଜର ଦିଆଯାଉ । ସେହିପରି କୂପ ଏବଂ ପୁଷ୍କରିଣୀ (ସହର ଭିତରେ ଥିବା) ପାଣି ଯେପରି ଦୂଷିତ ନହୁଏ, ସେଥିପ୍ରତି ସଜାଗ ରହିବା ଉଚିତ୍ । ଯେଉଁ ସ୍ଥାନର ବାୟୁମଣ୍ଡଳ କିମ୍ବା ଜଳ ଜୈବିକ ପଦାର୍ଥର ପଚାସଢ଼ା ଯୋଗୁଁ ଦୂଷିତ ହେବ, ସେ ସ୍ଥାନକୁ ସାନିଟାରୀ ଷ୍ଟାଫ୍‌ମାନେ ଅତିଶୀଘ୍ର ଯାଇ ସେଇ ସ୍ଥାନର ବାୟୁମଣ୍ଡଳ କିମ୍ବା ଜଳ ସଂପୂର୍ଣ୍ଣ ଭାବେ ବିଶୁଦ୍ଧ ହେବା ପର୍ଯ୍ୟନ୍ତ କାର୍ଯ୍ୟ କରିବେ ।

କେବଳ ଯେ, ସହରର ବଡଦାଣ୍ଡ କିମ୍ବା ମୁଖ୍ୟ ରାସ୍ତା ସଫା ସୁତୁରା ରହିବ ଏକଥା ନୁହଁ । ଛୋଟ ଛୋଟ ଗଳିକନ୍ଦିର ରାସ୍ତା ମଧ୍ୟ ପ୍ରତ୍ୟେକ ଦିନ ସଫା ହୋଇ ପରିଷ୍କାର ହେବା ଦରକାର । ଏସବୁ କାର୍ଯ୍ୟ ପ୍ରଣାଳୀବଦ୍ଧ ଭାବେ କାର୍ଯ୍ୟକାରୀ ହେବା ଉଚିତ୍ । ଦୁର୍ଗମ ଓ ରାସ୍ତାତୀତ ସ୍ଥାନ ଅସ୍ୱାସ୍ଥ୍ୟକର ପରିସ୍ଥିତି ପାଇଁ ଦାୟୀ ବୋଲି କହିବା, ଏକ ଉପର ଠାଉରିଆ କଥା । ସାନିଟାରୀ ଷ୍ଟାଫ୍‌ମାନଙ୍କର ଏସବୁ ସ୍ଥାନକୁ ଯାଇ ଏହି ଅଞ୍ଚଳର ପରିମଳ ବ୍ୟବସ୍ଥାକୁ ତଦାରଖ କରିବା ସେମାନଙ୍କର ସ୍ୱତନ୍ତ୍ର ଦାୟିତ୍ୱ ହେବା ଉଚିତ୍ । କାରଣ ଏସବୁ ଅଞ୍ଚଳ ରୋଗ ପାଇଁ ଚିରନ୍ତନ ଜୀବାଣୁ ବାହକ । ସାଧାରଣ ଲୋକଙ୍କ ବ୍ୟବହାର ପାଇଁ ଉଦ୍ଦିଷ୍ଟ ହୋଇଥିବା ପାଇଖାନାମାନ ପ୍ରତ୍ୟେକ ଦିନ ସଫା ହେବା ସଂଗେ ସଂଗେ ଯେପରି କଳୁଷିତ ନହୁଏ ତାର ଦେଖାଶୁଣା କରିବା ଦାୟିତ୍ୱ ସାନିଟାରୀ ଷ୍ଟାଫ୍‌ମାନଙ୍କର । ଯେଉଁମାନେ ଏସବୁ ସ୍ଥାନକୁ ଅପରିଷ୍କାର କରିବେ, ସେମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ହେବା ଉଚିତ୍ । ଯେତେବେଳ ପର୍ଯ୍ୟନ୍ତ ଲୋକମାନେ ଝାଡା ଫେରିବାକୁ ଖୋଲା ଜାଗାକୁ ବ୍ୟବହାର କରୁଥିବେ, ତାକୁ ଯଦି ବନ୍ଦ କରାନଯାଏ, ସେତେବେଳ ପର୍ଯ୍ୟନ୍ତ ପରିମଳ ବ୍ୟବସ୍ଥା ଉନ୍ନତି ହେବା ସମ୍ଭବ ହେବନି । ତେଣୁ ପ୍ରତ୍ୟେକ ଖାଲିସ୍ଥାନ, ପଡିଆ, ଖୋଲାସ୍ଥାନ ପରିଷ୍କାର ରହିବା ଉଚିତ୍ । ସ୍ଥାନୀୟ ପୋଲିସ୍ ମଧ୍ୟ ଏସବୁକୁ ଦେଖି ଆଇନ ଅନୁସାରେ କାର୍ଯ୍ୟ କରିବା ଦରକାର । ସାଧାରଣ ଯାତ୍ରୀମାନଙ୍କ ପାଇଁ ପାଇଖାନା ବ୍ୟବସ୍ଥା ଏବଂ ପାଇଖାନାର ନିର୍ମାଣ ମଧ୍ୟ ଭଲ ହେବା ଉଚିତ୍ । ପ୍ରତ୍ୟେକ ପାଇଖାନାର ଛାତ ରହିବା ବେଳେ ପବନ ଯିବା ଆସିବା ପାଇଁ ମଧ୍ୟ ବ୍ୟବସ୍ଥା ଥିବା ଦରକାର । ପ୍ରତ୍ୟେକ ଦିନ ୨ଥର ସହରର ପାଇଖାନାମାନଙ୍କର ମଇଳା ସଫା ହୋଇ ଉପଯୁକ୍ତ ଭାବେ ନିର୍ଦ୍ଦିଷ୍ଟ ହୋଇଥିବା ସ୍ଥାନକୁ ସ୍ଥାନାନ୍ତରିତ ହେବା ଉଚିତ୍ । ମଇଳାକୁ ନିର୍ଦ୍ଦିଷ୍ଟ ସ୍ଥାନକୁ ନେଲା ପରେ ସେଠାରେ ଅଗଭୀର ଟ୍ରେଞ୍ଚ ଖୋଳାଯାଇ ତାରି ମଧ୍ୟରେ ପକା ଯିବାର ବ୍ୟବସ୍ଥାକୁ ଉପଯୁକ୍ତ ଟ୍ରେନିଂପ୍ରାପ୍ତ ଅଧିକାରୀଙ୍କ ତଦାରଖରେ କରିବାକୁ ପଡିବ । ଏସବୁ ମଇଳାକୁ ପରବର୍ତ୍ତୀ କାଳରେ ଖତ ରୂପେ ବ୍ୟବହାର କରାଯିବା ଦରକାର । ଏପରି ବ୍ୟବସ୍ଥା ପ୍ରଚଳନ କରିବାରେ କିଛି ଅସୁବିଧା ନାହିଁ । ଭାରତର ପ୍ରାୟ ପ୍ରତ୍ୟେକ ଜେଲ୍‌ମାନଙ୍କରେ ଏହି ବ୍ୟବସ୍ଥା ଛୋଟ ଆକାରରେ ପ୍ରଚଳନ କରାଯାଇଛି । ଲାଟ୍ରିନ୍‌ମାନଙ୍କରେ କିଛି ପରିମାଣର ମ୍ୟାଗ୍‌ଡୋଗାଲ ପାଉଡର ମଧ୍ୟ ବ୍ୟବହାର କରାଯାଇପାରେ । ଯାହା କହିଲେ ବି ଅବିରତ ପର୍ଯ୍ୟବେକ୍ଷଣ, ଦୁର୍ଗନ୍ଧଯୁକ୍ତ ଅପରିଷ୍କାର ଜିନିଷର ପ୍ରଣାଳୀ ନିବଦ୍ଧ ଅପସାରଣ କରିବାର ବ୍ୟବସ୍ଥା, ଭଲଭାବେ ମାଟିଦେଇ ଘୋଡାଇବା ହେଲା କେତେକ ଆବଶ୍ୟକୀୟ ଦରକାରୀ କାର୍ଯ୍ୟ । ତା'ଛଡା ପର୍ଯ୍ୟାପ୍ତ ପରିମାଣରେ ମଇଳା ସଫେଇ ଗାଡିର ବ୍ୟବସ୍ଥା କରାଯିବାର ଆବଶ୍ୟକତା ଅଛି ।

କ'ଣ କରାଯିବା ଉଚିତ୍, ତାହାହିଁ କୁହାଯାଇଛି । ସ୍ୱାସ୍ଥ୍ୟ ଅଧିକାରୀଙ୍କ ପରିଚାଳନା ଦାୟିତ୍ୱରେ ଆବଶ୍ୟକୀୟ ଅର୍ଥର ବ୍ୟବସ୍ଥା ହେଲେ ଉପରୋକ୍ତ ସ୍କିମ୍‌କୁ କାର୍ଯ୍ୟକାରୀ କରିବାରେ କିଛି ଅସୁବିଧା ଦେଖାଦେବନି । ମୁଁ ପୁରୀରେ ଜନସାଧାରଣଙ୍କ ବ୍ୟବହାର ପାଇଁ କେଉଁ କେଉଁ ସ୍ଥାନରେ ଲାଟ୍ରିନ୍ ହେଲେ ସୁବିଧା ହେବ, ତାହା ତଦନ୍ତ କରି ନିମ୍ନୋକ୍ତ ସ୍ଥାନମାନ, ମୋ ମତରେ ଉପଯୁକ୍ତ ବୋଲି ବିଚାର କରୁଛି ।

୧. ମାର୍କଣ୍ଡେୟ ପୋଖରୀର ଉତ୍ତର-ପଶ୍ଚିମାଞ୍ଚଳ (ପୁଷ୍କରିଣୀଠାରୁ ଦୂରରେ)
୨. ହରଚଣ୍ଡୀ ସାହି-ଲୋକନାଥ ଘାଟ ରାସ୍ତାର ମଝିର ପଶ୍ଚିମପଟକୁ
୩. ଜଗନ୍ନାଥ ବଲ୍ଲଭ ବଗିଚାର - ଚନ୍ଦନ ତଲାଓ କୋଣରେ
୪. କାଳିକାଦେବୀ ସାହିର ଦକ୍ଷିଣପଟକୁ

## ତୀର୍ଥଯାତ୍ରୀମାନଙ୍କ ରାସ୍ତାରେ ପରିବର୍ତ୍ତନ

ଡକ୍ଟର ମେଓ୍ୱାଟ୍ ତାଙ୍କର ଆଉ ୩ଗୋଟି ପ୍ରସ୍ତାବରେ କହିଛନ୍ତି- "ମୁଁ ଭାବୁଛି ଯାତ୍ରୀମାନେ ଯେଉଁପରି ଭାବେ ବିପୁଳ ସଂଖ୍ୟାରେ ସହର ମଧ୍ୟକୁ ଆସି ସହର ଭିତରେ ଗହଳି କରିଥାନ୍ତି ଏବଂ ସେହି ଜନଗହଳି ଯୋଗୁଁ ଯେଉଁପରି ଭାବେ ସହର ଅପରିଷ୍କାର ହୁଏ, ସାନିଟାରୀ ବ୍ୟବସ୍ଥା ବାଧାପ୍ରାପ୍ତ ହୋଇ ଯେଉଁ ପ୍ରକାରେ ରୋଗର ଜୀବାଣୁ ସଂକ୍ରମିତ ହୋଇଥାନ୍ତି ଏବଂ ପାଣି, ପବନ ଯେଉଁପରି ଭାବେ ଦୂଷିତ ହୋଇଥାଏ ସେଥିଲାଗି ଏହି ବିରାଟ ଜନସଂଖ୍ୟାକୁ ନିୟନ୍ତ୍ରଣ କରିବାର ଆବଶ୍ୟକତା ଅଛି । ତେଣୁ ଯାତ୍ରୀମାନଙ୍କୁ ଛୋଟ ଛୋଟ ଦଳରେ ଭାଗ ଭାଗ କରି ସହର ବାହାରେ ଉପଯୁକ୍ତ ସ୍ଥାନରେ ରଖିବାର ବ୍ୟବସ୍ଥା କରିବା ଦରକାର । ଯାତ୍ରୀମାନଙ୍କର ଯେପରି ବିଶେଷ ଅସୁବିଧା ନହୁଏ, ସେଥିପ୍ରତି ଦୃଷ୍ଟି ରହିବା ଆବଶ୍ୟକ । ସହର ବାହାରେ ରହିବା ପାଇଁ ଉପଯୁକ୍ତ ଶିବିର, ଖାଦ୍ୟ ଯୋଗାଣ, ବଜାର, ସବୁବେଳ ପାଇଁ ଜଳ ଯୋଗାଣର ବ୍ୟବସ୍ଥା କରାଯିବା ଉଚିତ୍ । ଅବଶ୍ୟ ଏସବୁକୁ କାର୍ଯ୍ୟକାରୀ କରିବା ମୂଲ୍ୟ ବହୁଳ ହୋଇପାରେ ମାତ୍ର ହଇଜା କେଉଁ କାରଣରୁ ବ୍ୟାପୁଥିଲେ ମଧ୍ୟ ସହର ଏବଂ ସହର ନିକଟସ୍ଥ ବଜାରମାନଙ୍କରେ ସାନିଟାରୀ ବ୍ୟବସ୍ଥା ଉପଯୁକ୍ତ ଭାବେ ନିୟନ୍ତ୍ରିତ ହେବା ଦରକାର ।

**ମତାମତ:** ମୁଁ ଡକ୍ଟର ମେଓ୍ୱାଟ୍‌ଙ୍କ ମତ ସହ ଏକମତ । ଯାତ୍ରୀମାନେ କଣ ପାଇଁ ବଡ ବଡ ସହରମାନଙ୍କର ବଜାର ଭିତରେ ରହିବେ - ଏହାର କିଛି ମାନେ ନାହିଁ । ସେମାନେ ଏପରି କରିବାକୁ ବାରଣ କରିବାରେ ବିଶେଷ କିଛି ଅସୁବିଧା ନାହିଁ । ବ୍ରିଟିଶ-ରେଜିମେଣ୍ଟ ଅପ୍ କଣ୍ଟ୍ରି ଆଡେ ମାର୍ଚ୍ଚ କରି ଗଲାବେଳେ ସହର ପାଖାପାଖି ଅଞ୍ଚଳରେ ଶିବିର ପକାଇଥାନ୍ତି । ତୀର୍ଥଯାତ୍ରୀମାନେ ପୁରୀକୁ ଆସିବା ବାଟରେ ସେହିପରି ବ୍ୟବସ୍ଥା

କରାଯାଇ ପାରନ୍ତା । ସେମାନଙ୍କୁ ଛୋଟ ଛୋଟ ଦଳରେ ପରିଣତ କରି ମୁଖ୍ୟ ରାସ୍ତା ନିକଟରୁ ଦୂରେଇ ରଖିଲେ, ସେମାନେ ସେପରି କିଛି ଅସୁବିଧାର ସମ୍ମୁଖୀନ ହେବେ ନାହିଁ । ଏପରି ବ୍ୟବସ୍ଥା କଟକ ପ୍ରଭୃତି ସ୍ଥାନରେ କାର୍ଯ୍ୟକାରୀ ହେଉଛି । ଅନ୍ୟ ସ୍ଥାନର ସ୍ଥାନୀୟ ପ୍ରଶାସନ ଏପରି ବ୍ୟବସ୍ଥା କରିପାରନ୍ତି । ଏକଥା ମନେ ରଖିବା ଉଚିତ୍ ଯେ, ଯାତ୍ରୀମାନେ ଯେପରି ଅଯଥାରେ ଏପଟ ସେପଟ ହୋଇ ସେମାନଙ୍କ ଗନ୍ତବ୍ୟ ପଥଠାରୁ ଦୂରରେ ନରୁହନ୍ତି । ମୋ ମତରେ ଯେଉଁ ଯାତ୍ରୀମାନେ ତାଙ୍କ ଘରକୁ ଫେରିବା ପାଇଁ ବିଶେଷ ଭାବେ ଉଦ୍‌ବିଗ୍ନ, ସେମାନଙ୍କୁ ବାଧବାଧକତା କରି ଅଟକାଇ ରଖିବା ଉଚିତ୍ ବିଚାର ନୁହଁ କିମ୍ବା ଠିକ୍ ନୁହଁ । ଡକ୍ଟର ମେଓ୍ୱାଟ୍ ଏ ସଂପର୍କରେ ଲେଖିଛନ୍ତି – ଘରକୁ ଫେରୁଥିବା ଯାତ୍ରୀମାନଙ୍କ ପାଇଁ କୌଣସି ପ୍ରତିବନ୍ଧକ କିମ୍ବା ଅନାବଶ୍ୟକୀୟ ଅସୁବିଧା ସୃଷ୍ଟି କରିବା ଠିକ୍ ହେବନି । ଏପରି ପଦକ୍ଷେପ କେବଳ ନିଷ୍ଠୁର ଅମାନବୀୟ ନୁହେଁ, ଏହାଦ୍ୱାରା ଯାତ୍ରୀମାନେ ସବୁପ୍ରକାର ନିୟମକାନୁନ ଭାଙ୍ଗି ବିଭିନ୍ନ ରାସ୍ତା ଦେଇ ଯିବାକୁ ବସିବେ । ଯାହାଦ୍ୱାରା ସେମାନେ ଦେଶର କୋଣ ବିକୋଣକୁ ଭିନ୍ନ ଭିନ୍ନ ରୋଗର ଜୀବାଣୁବାହକ ହେବେ କାରଣ ସେମାନଙ୍କ ଯାତ୍ରା ଉପରେ କୌଣସି ପ୍ରକାର ଦୃଷ୍ଟି ରଖାଯାଇ ପାରିବ ନାହିଁ ।

ମିଃ. ଏଫ୍.ଡବ୍ଲ୍ୟୁ ମୋଲି, ଫାମିନ୍ କମିଶନର, କଟକ ବେଙ୍ଗାଲ ସରକାରଙ୍କ ଜୁନିୟର ସେକ୍ରେଟାରୀଙ୍କ ପାଖକୁ ତାଙ୍କ ଚିଠି ନମ୍ବର ୮୪, ତାରିଖ ୧୪ ମାର୍ଚ୍ଚ ୧୮୬୮ରେ ଲେଖିଥିଲେ – ମହାମାରୀ ସମୟରେ ଯାତ୍ରୀମାନଙ୍କୁ ଅଟକାଇ ରଖିବା ପ୍ରସ୍ତାବ ସମ୍ଭବ ନୁହଁ କାରଣ ଏହାଦ୍ୱାରା ଯାତ୍ରୀମାନଙ୍କୁ ଅଯଥାରେ ହଇରାଣ ମଧ୍ୟକୁ ଠେଲି ଦେବାହିଁ ସାର ହେବ ଏବଂ ବର୍ତ୍ତମାନଠାରୁ ସେମାନେ ଅଧିକ ବିପଦ ସଂପନ୍ନ ହେବେ । ବରଂ ସେମାନଙ୍କୁ ଯେତେଶୀଘ୍ର ବିଦାୟ କରାଯିବା ହିଁ ଶ୍ରେୟସ୍କର ହେବ । ଯାତ୍ରୀମାନେ ଫେରିବା ବାଟରେ ଯେପରି ରୋଗର ବାହକ ନହେବେ ସେଥିପ୍ରତି ପ୍ରାକ୍ ସାବଧାନତା ଗ୍ରହଣ କରିବା ସଂଗେ ଯେଉଁ ବ୍ୟକ୍ତି ପ୍ରକୃତରେ ରୋଗରେ ପଡିଥିବ ସେପରି ବ୍ୟକ୍ତିଙ୍କୁ ଅଟକାଇ ରଖିବା ଉଚିତ୍ ହେବ ।

ଅସ୍ୱାସ୍ଥ୍ୟକର ଋତୁରେ ଯେତେବେଳେ ହଇଜା ଲାଗିଥିବ, ସେତେବେଳେ ଯାତ୍ରୀମାନେ ତୀର୍ଥଯାତ୍ରା ଆରମ୍ଭ କରିବା ପୂର୍ବରୁ ସେମାନଙ୍କୁ ସ୍ଥାନୀୟ ଅଧିକାରୀମାନେ ପୁରୀ ଏବଂ ଅନ୍ୟ ସ୍ଥାନରେ ହଇଜା ଲାଗିଥିବା କଥା କହିଦେବା ଦରକାର । ଦରକାର ହେଲେ ସ୍ଥାନୀୟ ଅଫିସରମାନେ ଯାତ୍ରୀମାନଙ୍କୁ ନଯିବା ପାଇଁ ପ୍ରବର୍ତ୍ତାଇବା ଉଚିତ୍ । ଆହୁରି ମଧ୍ୟ ଯେଉଁ ଯାତ୍ରୀମାନେ ଯିବାକୁ ବଦ୍ଧପରିକର, ସେମାନଙ୍କୁ ସତର୍କ କରାଇ ଦେବା ଉଚିତ୍ ଯେ, ଭାରତର ଅନ୍ୟ କେତେକ ସ୍ଥାନରେ ଯେପରି ସାନିଟାରୀ ନିୟମ

ଲାଗୁ ହେଉଛି, ସେମାନେ ମଧ୍ୟ ସେପରି ନିୟମ କାନୁନ୍‌ର ସମ୍ମୁଖୀନ ହୋଇପାରନ୍ତି । କିନ୍ତୁ ପ୍ରକୃତ ଯାତ୍ରା ଆରମ୍ଭ ହୋଇଗଲା ପରେ ମୋ ମତରେ ବାଟରେ ଅଟକାଇ ରଖିବା ଠିକ୍ ହେବନି । ଯେ ହଇଜାରେ ପୀଡ଼ିତ ହେବେ, ସେପରି ବ୍ୟକ୍ତିଙ୍କୁ ଅଲଗା କରି ରଖିବା ନିଶ୍ଚିତ ଭାବେ ଉପଯୁକ୍ତ ପଦକ୍ଷେପ ହେବ ।

ସାର୍ ରିଚାର୍ଡ ଟେମ୍ପଲ-ଚିଫ୍ କମିଶନର ସେଣ୍ଟ୍ରାଲ ପ୍ରୋଭିନ୍ସ ତାଙ୍କ ଚିଠି ନମ୍ବର ୫୬୮୫/୪୨୪, ତାରିଖ ୯.୧୨.୧୮୬୭ - ନାଗପୁରରେ ନିଜର ମତବ୍ୟକ୍ତ କରି ସେକ୍ରେଟାରୀ ଟୁ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆଙ୍କୁ ଲେଖିଥିଲେ ଯେ, "ଅସ୍ୱାସ୍ଥ୍ୟକର ଋତୁରେ ଯାତ୍ରୀମାନଙ୍କୁ ଯାତ୍ରୀ ନିବାସମାନଙ୍କରେ ରହିବା ପାଇଁ ଯେକୌଣସି କଟକଣା ବ୍ୟବସ୍ଥା, ସେମାନଙ୍କ ଧାର୍ମିକ ମନୋଭାବରେ ଯେତେ କମ୍ ହସ୍ତକ୍ଷେପ କଲେ ମଧ୍ୟ ଅମିଶ୍ରିତ ଭଲ ଫଳରେ ପରିଣତ ହେବ । ଏହା ଅତ୍ୟନ୍ତ ସତ୍ୟ । ଅସ୍ୱାସ୍ଥ୍ୟକର ବର୍ଷମାନଙ୍କରେ କେବଳ ଯେ, ମୃତ୍ୟୁ ହାର ବଢ଼େ ଏକଥା ନୁହଁ, ବର୍ଷର ସେଇ ଋତୁରେ ଯେତେବେଳେ ହଇଜାର ପ୍ରାଦୁର୍ଭାବ ଜାରିଥାଏ, ତୀର୍ଥଯାତ୍ରୀମାନେ ବହୁ ସଂଖ୍ୟାରେ ଯାତ୍ରା ଆରମ୍ଭ କରିଥାନ୍ତି । ତେଣୁ ବହୁ ଜୀବନ ଏହି ସମୟରେ ନଷ୍ଟ ହେବା ବେଳେ, ସେହି ଯାତ୍ରା ଯଦି ବର୍ଷର ଅନ୍ୟ ସମୟରେ ହୋଇଥାନ୍ତା, ତେବେ ଏତେ ସଂଖ୍ୟକ ଜୀବନ ବିପନ୍ନ ହୁଅନ୍ତା ନାହିଁ । ଯାତ୍ରୀମାନଙ୍କୁ ସେମାନଙ୍କ ଯାତ୍ରା ସମୟକୁ ବଦଳାଇବା ପାଇଁ ପ୍ରବର୍ତ୍ତାଇବା କଣ ସମ୍ଭବ ? ଯଦି ତାହା ହୋଇପାରନ୍ତା ତେବେ ମୃତ୍ୟୁହାର ନିଶ୍ଚିତ ଭାବେ କମିଯାଇ ପାରନ୍ତା । ଓଡ଼ିଶାରେ ଏପରି ଘଟିବା ଆଦୌ ସମ୍ଭବ ନୁହେଁ । ଚନ୍ଦ୍ରଙ୍କ ସ୍ଥିତି ଓ ଗତିକୁ ନେଇ ଏବଂ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଯାନିଯାତ୍ରାମାନଙ୍କର ଦିନ ନିର୍ଣ୍ଣୟ କରାଯାଇଥାଏ - ଯାହା ଉପରେ ଦେଶୀୟ ଲୋକମାନଙ୍କର ଅଗାଧ ବିଶ୍ୱାସ ଅଛି । ତା'ଛଡ଼ା ୧୮ ଅକ୍ଟୋବର ୧୮୬୭ ମସିହା ଚିଠି ନମ୍ବର ୫୦୫/୩୬୭ - ନାଗପୁରରେ ଚିଫ୍ କମିଶନର ସେଣ୍ଟ୍ରାଲ ପ୍ରୋଭିନ୍ସ ସେକ୍ରେଟାରୀ ଟୁ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆଙ୍କୁ ପ୍ରସ୍ତାବ ଦେଇ କହିଛନ୍ତି - "ଓଡ଼ିଶା ସରକାରଙ୍କ ପ୍ରଶାସନ, ତୀର୍ଥଯାତ୍ରୀମାନଙ୍କୁ ଉପଯୁକ୍ତ ସମୟ ନଆସିବା ପର୍ଯ୍ୟନ୍ତ ପୁରୀଠାରେ ଅଟକାଇ ରଖିବା, ମୁଁ ଭାବୁଛି ଆଦୌ ସମ୍ଭବ ନୁହେଁ ତା'ଛଡ଼ା ଏପରି ଅଟକ ରଖିବା ମଧ୍ୟ ସାନିଟାରୀ ଦୃଷ୍ଟିରୁ ବିପଦଜନକ ।"

ଯେତେବେଳେ ଯାତ୍ରୀମାନଙ୍କୁ ଛୋଟ ଛୋଟ ଦଳରେ ବିରକ୍ତ କରି ବିଭିନ୍ନ ସ୍ଥାନମାନଙ୍କରେ ରଖିବା, ଭିନ୍ନ ବାଟଦେଇ ଯିବାର ବ୍ୟବସ୍ଥା କରାଯିବ, ସେତେବେଳେ ସେଇ ସମସ୍ତ ବଜାର ରାସ୍ତା ନିକଟରେ ସେମାନଙ୍କ ଚଳିବା ପାଇଁ ସମସ୍ତ ପ୍ରକାର ବନ୍ଦୋବସ୍ତ ମଧ୍ୟ କରାଯିବା ଦରକାର । କେବଳ ଅତ୍ୟାବଶ୍ୟକୀୟ ଜିନିଷ ନୁହଁ, ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ପାଇଁ ମଧ୍ୟ ବ୍ୟବସ୍ଥା ରହିବା ଦରକାର ।

## ନଦୀଘାଟମାନଙ୍କରେ ବ୍ୟବସ୍ଥା

ବିଭିନ୍ନ ନଦୀଘାଟମାନଙ୍କରେ ଉପଯୁକ୍ତ ବ୍ୟବସ୍ଥା ସଂପର୍କରେ ଡକ୍ଟର ମେଓ୍ୱାଟ୍ ନିମ୍ନୋକ୍ତ ଭାବେ ଉଲ୍ଲେଖ କରିଛନ୍ତି । 'ମୁଖ୍ୟ ରାସ୍ତାର ସବୁବଡ ବଡ ଛକମାନଙ୍କରେ ଏବଂ ବର୍ଷାଦିନେ ବନ୍ୟା ଯୋଗୁଁ ବଡ ବଡ ନଦୀମାନଙ୍କର ଘାଟ ପାଖରେ ରୋଗୀମାନଙ୍କୁ ଚିକିତ୍ସା ଯୋଗାଇ ଦେବାର ବ୍ୟବସ୍ଥା କରାଗଲେ ଯାତ୍ରୀମାନଙ୍କର ଯିବା ଆସିବାରେ ଅନେକ ଅସୁବିଧା ଦୂର କରାଯାଇ ପାରିବ । ୧୮୫୫-୫୬ ମସିହାରେ ପୁରୀ ଗଲାବେଳେ ମୁଁ ନଦୀଘାଟମାନଙ୍କ ପାଖରେ ମୁଖ୍ୟତଃ ରୋଗରେ ପଡିଥିବା ଯାତ୍ରୀମାନଙ୍କୁ ଦେଖିବାକୁ ପାଇଥିଲି ।

**ମତାମତ:** ଏ ବର୍ଷ ଦାମୋଦରପୁର ନିକଟସ୍ଥ ଭାର୍ଗବୀ ନଦୀଘାଟ ପାଖକୁ ଯେଉଁଠି ଯାତ୍ରୀମାନଙ୍କର ପ୍ରବଳ ଭିଡ ଦେଖାଯାଇଥାଏ, ଜଣେ ଦେଶୀୟ ଡାକ୍ତରଙ୍କୁ ପଠାଯାଇଥିଲା । ଅନ୍ୟ ଘାଟମାନଙ୍କୁ ଅଧିକ ସଂଖ୍ୟକ ଡାକ୍ତର ପଠାଯାଇ ପାରିଥାନ୍ତା, ମାତ୍ର ଡାକ୍ତରଙ୍କ ଅଭାବ ଯୋଗୁଁ ତାହା ସମ୍ଭବ ହୋଇପାରିଲା ନାହିଁ । ଓଡ଼ିଶାରେ ଦେଶୀୟ ଡାକ୍ତରଙ୍କ ସଂଖ୍ୟା ଅତ୍ୟନ୍ତ ନଗଣ୍ୟ । ଯେଉଁ ସ୍ଥାନମାନଙ୍କରେ ଡାକ୍ତରଖାନା କିମ୍ବା ଡିସ୍‌ପେନସାରୀ ହେବାର ପ୍ରସ୍ତାବ ଦିଆଯାଇଛି, ସେଠି ମୁଁ ଏ୍ ସଂପର୍କରେ ସୂଚାଇ ଦେଇଛି । ଡକ୍ଟର ମେଓ୍ୱାଟ୍ ଲକ୍ଷ୍ୟ କରିଥିଲେ - ନଦୀଘାଟମାନଙ୍କରେ ଯାତ୍ରୀମାନେ ପ୍ରାୟ ସମୟରେ ଅପେକ୍ଷା କରିବାକୁ ବାଧ ହେଉଥିଲେ । ଓଡ଼ିଶାର ବହୁ ସ୍ଥାନରେ ଯାତ୍ରୀମାନଙ୍କୁ ନଦୀ ପାର ହେବାକୁ ପଡେ ! ଯଦି ନଦୀଘାଟ ମାନଙ୍କରେ ଅଧିକ ସଂଖ୍ୟକ ଡଙ୍ଗା ଏବଂ ନାଉରୀମାନେ ଥାନ୍ତେ, ତେବେ ଯାତ୍ରୀମାନେ ଫେରନ୍ତା ବାଟରେ ନଦୀପାର ହେବାକୁ ଅସୁବିଧାର ସମ୍ମୁଖୀନ ହୁଅନ୍ତେ ନାହିଁ । ଡକ୍ଟର ମେଓ୍ୱାଟ୍‌ଙ୍କ ସମସ୍ତ ପ୍ରସ୍ତାବ, କେବଳ ସାନିଟାରୀ ଟାକ୍ସ ଏବଂ ସଂଗରୋଧ ପ୍ରସ୍ତାବକୁ ଛାଡିଦେଲେ ମୁଁ ଭାବୁଛି ଅନ୍ୟ ପ୍ରସ୍ତାବକୁ ଗ୍ରହଣ କରିନେବାରେ କିଛି ଅସୁବିଧା ନାହିଁ । ସାନିଟାରୀ ଟାକ୍ସ ଏବଂ ସଂଗରୋଧ ସଂପର୍କରେ ମୁଁ ଅନ୍ୟ ଅଧ୍ୟାୟରେ ଆଲୋଚନା କରିବି ।

ପୁରୀ ସହର ଏବଂ ପୁରୀକୁ ଆସିଥିବା ମୁଖ୍ୟ ରାସ୍ତା ସଂପର୍କରେ ଆଉ କେତେକ ଅତିରିକ୍ତ ପ୍ରସ୍ତାବ ସରକାରଙ୍କ ନିକଟରେ ଉପସ୍ଥାପିତ କରିବାକୁ ଅଛି । ମୁଁ ଭାବୁଛି ପୁରୀରେ ଆଉ ଗୋଟିଏ କଲେରା ହସ୍‌ପିଟାଲ ସ୍ୱତନ୍ତ୍ର ଭାବେ ହେବା ଉଚିତ୍, ଯେଉଁଠି କଲେରା ରୋଗୀମାନଙ୍କୁ ଅଲଗା ରଖି, ସ୍ୱତନ୍ତ୍ର ଭାବେ ଚିକିତ୍ସା କରାଯାଇପାରିବ । ସେପରି ସ୍ଥାନ ନିରୂପଣ କରି ଲୋକମାନଙ୍କୁ ଜଣାଇ ଦିଆଯିବା ଉଚିତ୍ । ସହର ଭିତରେ ଅସ୍ଥାୟୀ ଭାବେ ଗୋଟେ ଦୁଇଟି କଲେରା ସେଡ୍ ନିର୍ମାଣ କରାଯାଇ ଯେଉଁ ରୋଗୀମାନଙ୍କୁ ହଠାତ୍ ଦୂରକୁ ନେଇ ଚିକିତ୍ସା କରିବା ସମ୍ଭବ ନୁହଁ, ସେମାନଙ୍କୁ ସେଇଠି ଗ୍ରହଣ କରି ଚିକିତ୍ସା କରାଯାଇପାରିବ । ଚୁଡଙ୍ଗ ସାହି ଏବଂ ମାର୍କଣ୍ଡେଶ୍ୱର ସାହିର ମଝିରେ ଏପରି ସେଡ୍ ପାଇଁ

ଏକ ଉପଯୁକ୍ତ ସ୍ଥାନ ନିରୂପଣ କରାଯାଇପାରେ । କଲେରା ହସ୍‌ପିଟାଲ ପାଇଁ ମୁଁ ଏକ ସ୍ଥାନ ନିରୂପଣ କରିବା ପାଇଁ ଇନ୍‌କ୍ୱାରୀ କରିଛି । ସହରର ଉତ୍ତର-ପଶ୍ଚିମ ଦିଗରେ ଥିବା ବାଲିକୁଦ ମୋ' ମତରେ ଉପଯୁକ୍ତ ସ୍ଥାନ ହୋଇପାରେ । ଏହି ଡାକ୍ତରଖାନାରେ ଉପଯୁକ୍ତ ଟ୍ରେନିଂପ୍ରାପ୍ତ ଷ୍ଟାଫ୍ ନିଯୁକ୍ତ ହେବା ସଂଗେ ସେମାନେ ପ୍ରତ୍ୟେକ ଦିନ ସେମାନଙ୍କର କର୍ତ୍ତବ୍ୟ ଶୃଙ୍ଖଳାର ସହିତ ସମାପନ କରିବା ଉଚିତ୍ । ହଇଜାରେ ଆକ୍ରାନ୍ତ ହେଉଥିବା ଲୋକମାନଙ୍କୁ କଲେରା ହସ୍‌ପିଟାଲକୁ ଆଣିବା ପାଇଁ ଯଥେଷ୍ଟ ପରିମାଣରେ ଡୋଲିର ବ୍ୟବସ୍ଥା ରହିବା ଉଚିତ୍ । ଏହି ଡାକ୍ତରଖାନାରେ ପରିମଳ ବ୍ୟବସ୍ଥା ଉଚ୍ଚମାନର ହେବା ଦରକାର । ଏଠାକାର ରୋଗୀମାନେ ଯେପରି ଯଥେଷ୍ଟ ପରିମାଣରେ ବିଶୁଦ୍ଧ ପବନ ପାଇପାରିବେ, ସେକଥା ଦେଖିବା ଉଚିତ୍ । ଯେତେପ୍ରକାର ବ୍ୟବହାରିକ ସରଞ୍ଜାମ ଉପଯୁକ୍ତ ଭାବେ ରୋଗାଣୁମୁକ୍ତ ହେବାରେ ତୀକ୍ଷ୍ଣ ନଜର ରହିବ । ଡାକ୍ତରଖାନାରେ ଯେଉଁ ରୋଗୀମାନେ ମୃତ୍ୟୁବରଣ କରିବେ ସେମାନଙ୍କର ପିନ୍ଧା ଲୁଗାପଟା, ବ୍ୟବହାର କରିଥିବା ଅଖା, ଲୁଗା, ଗାମୁଛା ସବୁକୁ ନିଆଁ ଲଗାଇ ସଂପୂର୍ଣ୍ଣ ଭାବେ ପୋଡି ଦିଆଯିବା ଉଚିତ୍ । ରୋଗୀମାନଙ୍କର ଶଯ୍ୟା, ମୋ ମତରେ ନଡାରେ ପ୍ରସ୍ତୁତ ହୋଇ ସେ ସମସ୍ତଙ୍କୁ ମଧ୍ୟ ପୋଡି ଦେବା ଦରକାର । ଯଦି ଖଟର ବ୍ୟବସ୍ଥା କରାଯାଏ, ତେବେ କେବଳ ହଇଜା ରୋଗୀମାନଙ୍କ ପ୍ରାଇଁ ସେ ବ୍ୟବସ୍ଥା ହେବା ଦରକାର ।

ବଡଦାଣ୍ଡରେ ଯେଉଁଠି ବର୍ତ୍ତମାନ ଧର୍ମଶାଳା ଅଛି, ସେଇଠି ଗୋଟିଏ ଶାଖା ଡିସ୍‌ପେନସାରୀ ଖୋଲାଯାଇ ପାରନ୍ତା । ଯାତ୍ରୀମାନଙ୍କ ପାଇଁ ଅଧିକ ଧର୍ମଶାଳାର ଆବଶ୍ୟକ ଅଛି । ଏଥିରେ ଦୁଇଟି ସୁବିଧା ହେବ । ପ୍ରଥମେ ଧର୍ମଶାଳାରେ ରହୁଥିବା ସବୁଠାରୁ ଅପରିଷ୍କାର, ଦୁର୍ବଳ, ଗରିବ ଯାତ୍ରୀଙ୍କୁ ଠାବକରି ସେମାନଙ୍କୁ ଏକାଠି କରାଯାଇପାରିବ ଏବଂ ସେମାନଙ୍କୁ ପରିଷ୍କାର ରହିବା ପାଇଁ ସୁବିଧା ଯୋଗାଇବା ସଂଗେ ଧର୍ମଶାଳାର ପରିଷ୍କାର ପରିଚ୍ଛନ୍ନତା ରକ୍ଷା କରାଯାଇପାରିବ, ତା' ନହେଲେ ଧର୍ମଶାଳା ହିଁ ରୋଗର ମୁଖ୍ୟ କେନ୍ଦ୍ର ହେବ । ପ୍ରତ୍ୟେକ ଧର୍ମଶାଳାରେ ସ୍ୱତନ୍ତ୍ର ସଫେଇ ବ୍ୟବସ୍ଥା ରହିବା ଦରକାର । ଯେଉଁ ଘରେ ହଇଜା ଦେଖାଦେବ, ସେଇ ଘରମାନଙ୍କରେ ଉପଯୁକ୍ତ ସ୍ୱାସ୍ଥ୍ୟ ବ୍ୟବସ୍ଥା ପାଇଁ ନିରୀକ୍ଷଣ ବ୍ୟବସ୍ଥା ପ୍ରସ୍ତାବିତ ଲଜିଂ ହାଉସ୍ ବିଲ୍‌ରେ ଯେପରି କୁହାଯାଇଛି ସେପରି ହେବା ଦରକାର । ରହିବା ଘର କିମ୍ବା ଆପାର୍ଟମେଣ୍ଟ ଯେଉଁଠି ହଇଜା ଦେଖାଦେବ, ସେଇ ଘର ସବୁ ଉପଯୁକ୍ତ ଭାବେ ପରିଷ୍କାର ହେବା ସଂଗେ ରୋଗ ଜୀବାଣୁ ମୁକ୍ତ ହେବା ଉଚିତ୍ ।

ମୋ' ମତରେ ଦୁଇରୁ ତିନିଜଣ ଦେଶୀୟ ଡାକ୍ତର ସ୍ୱତନ୍ତ୍ର ଭାବେ ନିଯୁକ୍ତ ହୋଇ ସହରର ପ୍ରତ୍ୟେକ ସ୍ଥାନ ବୁଲି ଯେଉଁଠି ହଇଜା କିମ୍ବା ଝାଡାବାନ୍ତି ହେବାର ଦେଖିବେ, ସେଠାରେ ସଂଗେ ସଂଗେ ଚିକିତ୍ସା କରିବାର ବନ୍ଦୋବସ୍ତ କରିବେ । ମେଡିକାଲ ପାଟ୍ରୋଲ

ଦ୍ୱାରା ଜନସାଧାରଣଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇ ଦେଲେ ମୋ' ମତରେ ବହୁ ସ୍ୱାସ୍ଥ୍ୟଗତ ସମସ୍ୟାର ସମାଧାନ ହୋଇପାରନ୍ତା । ସ୍ୱତନ୍ତ୍ର ଯୋଜନାବଦ୍ଧ ପଦ୍ଧତିରେ ହଇଜା ଏବଂ ସାଧାରଣ ରୋଗ ସଂପର୍କରେ ପରିସଂଖ୍ୟାନ ସଂଗ୍ରହ କରାଯାଇପାରିବ । ହଇଜା ସଂପର୍କରେ ଶୀଘ୍ର ଖବର ମିଳିଲେ ନିରାକରଣ ଏବଂ ଚିକିତ୍ସା ବ୍ୟବସ୍ଥା ସେଇ ଅନୁରୂପରେ ଗ୍ରହଣ କରାଯାଇ ପାରନ୍ତା । ପ୍ରତ୍ୟେକ ହସ୍‌ପିଟାଲରେ ଗୋଟିଏ ରେଜିଷ୍ଟ୍ରାର ରହିବ - ଯେଉଁଥିରେ ରୋଗୀର ନାମ, ବୟସ, ଲିଙ୍ଗ, ଜାତି ଏବଂ କେଉଁ ସମୟରେ ଡାକ୍ତରଖାନାରେ ଆଡମିଟ୍ ହେଲା, ତାର ଘର ଠିକଣା, ପୁରୀ ସହରରେ କେତେଦିନ ଆଗରୁ ଥିଲେ, କେଉଁ ଘରେ ରହୁଥିଲେ, କେଉଁ ସମୟରେ ରୋଗାକ୍ରାନ୍ତ ହେଲେ, ହସ୍‌ପିଟାଲରେ ଆଡମିଶନ ବେଳେ ତାଙ୍କର ସ୍ୱାସ୍ଥ୍ୟ ଅବସ୍ଥା, ତାଙ୍କୁ ହସ୍‌ପିଟାଲରେ ଚିକିତ୍ସା ଦିଆଯିବା ସଂପର୍କରେ କ୍ଷୁଦ୍ର ଟିପ୍ପଣୀ ଏବଂ ତାର ଫଳାଫଳ ସଂପର୍କରେ ଉଲ୍ଲେଖ ରହିବ । ପ୍ରତ୍ୟେକ ଦିନ ହଇଜା ସଂପର୍କୀୟ ଦୈନନ୍ଦିନ ରିପୋର୍ଟ ମାଜିଷ୍ଟ୍ରେଟ୍‌ଙ୍କ ଅଫିସ୍‌କୁ ପଠାଯିବ ।

ଜନସାଧାରଣଙ୍କୁ କେଉଁ ସ୍ଥାନରେ ମାଗଣାରେ ଔଷଧ ମିଳୁଛି, କେଉଁ ଜାଗାରେ ହସ୍‌ପିଟାଲ, ଡିସ୍‌ପେନସାରୀ ଏବଂ ବିଶ୍ରାମ ଗୃହ ମାନ ଅଛି, ସେ ସଂପର୍କରେ ଡେଙ୍ଗୁରା ଦେଇ କିମ୍ବା ହ୍ୟାଣ୍ଡବିଲ୍, ପ୍ଲାକାର୍ଡ ମାଧ୍ୟମରେ ଜଣାଇ ଦେବା ଉଚିତ୍ । ସାଧାରଣ ଲୋକମାନେ ବୁଝି ପାରୁଥିବା ଭାଷାରେ ହ୍ୟାଣ୍ଡବିଲ୍ ଛପାଇ ଔଷଧ ବ୍ୟବହାର କରିବାର ଉପକାରିତା, ଝାଡାବାନ୍ତିର ଲକ୍ଷଣ, ବିଶୁଦ୍ଧ ଜଳ ବ୍ୟବହାର କରିବାର ଆବଶ୍ୟକତା, ଖାଦ୍ୟ ଖାଇବା ବେଳେ ପରିଚ୍ଛନ୍ନତା ସଂପର୍କରେ ବଣ୍ଟାଯାଇ ପାରନ୍ତା । ଯଦିଓ ବହୁ ଲୋକ ଏସବୁକୁ ପ୍ରଥମେ ବୁଝିବେନି ମାତ୍ର ଯାତ୍ରୀମାନେ ଏହାକୁ ଗ୍ରହଣ କରିବେ ।

ମୃତ ବ୍ୟକ୍ତିମାନଙ୍କର ଦାହ ସଂପୂର୍ଣ୍ଣ ଭାବେ ହେବା ଦରକାର । କୌଣସି ମୃତବ୍ୟକ୍ତିଙ୍କୁ ଅଧାପୋଡା ଅବସ୍ଥାରେ ଛାଡିଦେବା ଉଚିତ୍ ନୁହେଁ । ହଇଜାରେ ମୃତ୍ୟୁବରଣ କରୁଥିବା ରୋଗୀଙ୍କୁ ଯେତେଶୀଘ୍ର ପାରାଯାଏ ସ୍ଥାନାନ୍ତରିତ କରି ସେହି ସ୍ଥାନକୁ ଚୂନ ପାଣିରେ ଧୋଇବା ଦରକାର । ହଇଜାରେ ମୃତ୍ୟୁବରଣ କରୁଥିବା ରୋଗୀମାନଙ୍କୁ ଦାହ କଲାବେଳେ ମଶାଣୀ ଘାଟରେ ମଧ୍ୟ ତାର ଏକ ରେକର୍ଡ ରହିବା ଦରକାର । ଏହାଦ୍ୱାରା ସହରରେ କେତେ ଯାତ୍ରୀ ସ୍ଥାନୀୟ ବାସିନ୍ଦା ହଇଜାରେ ମଲେ ତାର ଏକ ସ୍ୱତନ୍ତ୍ର ପରିସଂଖ୍ୟାନ ରହିପାରିବ ।

ରୋଗାଣୁନାଶକ ଦ୍ରବ୍ୟ ବହୁଳ ଭାବେ କଲେରା ହସ୍‌ପିଟାଲରେ ବ୍ୟବହାର ହେବା ଉଚିତ୍ । ଏପରିକି ଯଦି ଜଣେ ବ୍ୟକ୍ତି କୌଣସି ସ୍ଥାନରେ ହଇଜାରେ ଆକ୍ରାନ୍ତ ହୁଅନ୍ତି, ସେହି ସ୍ଥାନର ପାଇଖାନା, ଗୃହ, ନଳା ପ୍ରଭୃତିକୁ ରୋଗାଣୁନାଶକ ଦ୍ରବ୍ୟରେ ଶୁଦ୍ଧ କରିବା ଦରକାର । ଭାରତ ବର୍ଷରେ ରୋଗାଣୁନାଶକ ଦ୍ରବ୍ୟ ମଧ୍ୟରେ ସବୁଠାରୁ ଦରକାରୀ ହେଲା କାର୍ବୋଲିକ୍ ଏସିଡ୍, ମ୍ୟାକ୍ ଡୋଗାଲ୍‌ସ ପାଉଡର, ଲାଇମ୍ କ୍ଲୋରାଇଡ୍, ଜିଙ୍କ୍ କ୍ଲୋରାଇଡ, ସଲଫରସ

ଏସିଡ୍ ଇତ୍ୟାଦି । ତେବେ ଏ ସମସ୍ତ ଠାରୁ ଅତ୍ୟନ୍ତ ଦରକାରୀ ଜିନିଷ ହେଲା ଶୁଖିଲା ମାଟି ଏବଂ ବିଶୁଦ୍ଧ ପବନ ।

ଯଦି ଏହା ସମ୍ଭବ, ତେବେ ଚନ୍ଦନ ପୋଖରୀରେ ଲୋକମାନେ ନ ଗାଧୋଇଲେ ଭଲ ହୁଅନ୍ତା । ଯାତ୍ରୀମାନେ ଏହି ପୁଷ୍କରିଣୀର ଜଳକୁ ପବିତ୍ର ଜଳ ଭାବେ ବ୍ୟବହାର କରିଥାନ୍ତି । ମୁଁ ଭାବୁଛି ଇନ୍ଦ୍ରଦ୍ୟୁମ୍ନ ଓ ମାର୍କଣ୍ଡେଶ୍ୱର ଦୁଇଟି ପୋଖରୀକୁ ଲୋକମାନଙ୍କର ଗାଧୋଇବା ପାଇଁ ଛାଡିଦେଇ ଚନ୍ଦନ ପୋଖରୀର ପାଣିକୁ କେବଳ ପିଇବା ପାଇଁ ବ୍ୟବହାର କଲେ ଭଲ ହୁଅନ୍ତା କିମ୍ବା ଯେକୌଣସି ଗୋଟିଏ ପୋଖରୀକୁ ସ୍ୱତନ୍ତ ଭାବେ ପିଇବା ଉଦ୍ଦେଶ୍ୟରେ ରଖାଯାଇ ପାରନ୍ତା । ସହରର ୪ଟି ଅତି ପବିତ୍ର ପୁଷ୍କରିଣୀ ହେଲା ଶ୍ୱେତଗଙ୍ଗା, ମାର୍କଣ୍ଡ, ଇନ୍ଦ୍ରଦ୍ୟୁମ୍ନ ଏବଂ ଚକ୍ରତୀର୍ଥ । ଏପରିକି ଅଠରନଳା ପୋଲ ନିକଟରେ ଥିବା ରାଣୀ ପୋଖରୀର ପାଣି ମଧ୍ୟ ପିଇବା ପାଇଁ ସଂରକ୍ଷଣ କରାଯାଇ ପାରନ୍ତା । ଯଦି ଉପରୋକ୍ତ ପୋଖରୀମାନଙ୍କ ମଧ୍ୟରୁ କାହାକୁ ବାଦ୍ ଦିଆଯାଇ ପାରିବନି, ତେବେ ପିଇବା ପାଇଁ ସଂରକ୍ଷଣ କରିବା ପାଇଁ ଆଉ ଦୁଇଟି ପୋଖରୀ ଖୋଳାଯିବା ଦରକାର । ଗୋଟିଏ ଭଲ ଧରଣର ପୋଖରୀ ଖୋଳିବାକୁ ଟ.୫୦୦୦ଙ୍କା ଲାଗିବ । ସହରର ପ୍ରତ୍ୟେକ ପୋଖରୀ, କୂଅଗୁଡିକୁ ସଫା କରିବା ପାଇଁ ସରକାର ଆବଶ୍ୟକୀୟ ଅର୍ଥର ବ୍ୟବସ୍ଥା କରିବା ଉଚିତ୍ । ଶୀତ ଦିନରେ ପୋଖରୀ, କୂଅ ସଫା କରାଯାଇ ପିଇବା ପାଣି ଲୋକମାନଙ୍କୁ ଯେପରି ସୁବିଧାରେ ମିଳିବ, ତାର ବ୍ୟବସ୍ଥା ହେବା ଉଚିତ୍ । ୧୮୬୫ ମସିହାରେ ମହାମାନ୍ୟ ସରକାର (ବ୍ରିଟିଶ) ଛତିଶଗଡ ଗାଁମାନଙ୍କରେ ପିଇବା ପାଣି ଯୋଗାଇ ଦେବା ପାଇଁ ଯେଉଁମାନେ କୂଅ ଖୋଳୁଥିଲେ, ସେମାନଙ୍କୁ କିଛି ସୁବିଧା ଦେବାକୁ ନିର୍ଦ୍ଦେଶ ଦେଇଥିଲେ । ମୋ' ମତରେ ଏପରି ଚିନ୍ତାଧାରା ସ୍ୱାଗତଯୋଗ୍ୟ । ଏ ସୁବିଧା ଯଦି ଠିକ୍ ଭାବେ ଲୋକମାନଙ୍କୁ ଯୋଗାଇ ଦିଆଯାଇପାରନ୍ତା, ତେବେ ଲୋକମାନେ ବହୁଳ ଭାବେ ଉପକୃତ ହୁଅନ୍ତେ ।

ଏଠାରେ ଆଉ ଗୋଟିଏ କଥା ମଧ୍ୟ ଚିନ୍ତା କରାଯାଇପାରେ । ପୁରୀ ସହର ଭିତରେ ଏବଂ ଯାତ୍ରୀମାନେ ଆସୁଥିବା ରାସ୍ତାକଡରେ ପିଇବା ପାଣିର ଝରଣା ନିର୍ମାଣ କରାଯାଇ ପାରନ୍ତା । କେହି କେହି କହିପାରନ୍ତି, ଜାତି ଯିବା ଭୟରେ କେହି ଏପରି ରାସ୍ତାକଡ ଝରଣାରୁ ପାଣି ପିଇବେ ନାହିଁ । ମୁଁ କିନ୍ତୁ ଭାବୁଛି ଏମିତି ହେବନି । ହଜାର ହଜାର ତୃଷାର୍ତ୍ତ ଲୋକ ଯିବା ଆସିବା ରାସ୍ତାରେ ନିଶ୍ଚିତ ଭାବେ ଝରଣାରୁ ପାଣି ପିଇବେ । ନର୍ଟନସ ନଳକୂଅ ମଧ୍ୟ ଏସବୁ ସ୍ଥାନରେ କାର୍ଯ୍ୟକାରୀ ହୋଇପାରେ ।

ଜାତିଭେଦ ସଂପର୍କରେ ମୁଁ ଏତିକି ମନେପକାଇ ଦେବାକୁ ଚାହେଁ ଯେ, ଇଂଲଣ୍ଡରେ ଆମ ପୂର୍ବପୁରୁଷମାନେ କୋଇଲାକୁ ଜାଳେଣି ଭାବେ ବ୍ୟବହାର କରିବାକୁ ଘୃଣା

କରୁଥିଲେ । ଏପରିକି କୋଇଲାକୁ ଜାଳେଣି ଭାବେ ବ୍ୟବହାର ନକରିବାକୁ ଏକ ଆଇନ ପ୍ରଣୟନ କରାଯାଇଥିଲା । ଯେଉଁମାନେ ଏଇ ଆଇନ ବିରୋଧରେ କାର୍ଯ୍ୟ କରୁଥିଲେ, ସେମାନଙ୍କୁ ପ୍ରାଣଦଣ୍ଡ ଦିଆଯିବା ପାଇଁ ଆଇନ୍‌ରେ ବ୍ୟବସ୍ଥା ଥିଲା । ପ୍ରଥମ ଏଡ଼୍‌ୱାର୍ଡଙ୍କ ରାଜତ୍ୱ କାଳରେ ଜଣେ ବ୍ୟକ୍ତିଙ୍କୁ ଏଇ ଅପରାଧରେ ଦଣ୍ଡିତ କରି ତାଙ୍କୁ ମୃତ୍ୟୁଦଣ୍ଡ ଦିଆଯିବାର ରେକର୍ଡ ଟାୱାରରେ ଅଛି । ପ୍ରକୃତରେ ଏହି ଘଟଣା ଚାର୍ଲସ ପ୍ରଥମଙ୍କ ରାଜତ୍ୱ କାଳରେ ଘଟିଥିଲା । ଆମେ ସବୁ ଇଂରେଜ ଜାତି ଯେପରି କୋଇଲା ବ୍ୟବହାରକୁ ଗ୍ରହଣ କଲୁ, ସେହିପରି ସମୟର ପରିବର୍ତ୍ତନରେ ଯାତ୍ରୀମାନେ ରାସ୍ତାକଡ ଡ୍ରିଙ୍କିଙ୍ଗ୍ ଫାଉଣ୍ଡେସନରୁ ପାଣି ପିଇବାକୁ ପଛାଇବେ ନାହିଁ । ଏହାମଧ୍ୟ ସତ୍ୟ ଯେ, ବର୍ତ୍ତମାନ ଫୋର୍ଟ୍ ଉଇଲିୟମ ଭିତରେ ଥିବା ପିଇବା ପାଣି ଝରଣାରୁ ସବୁ ଜାତିର ଲୋକ ପାଣି ନେଇ ପିଉଛନ୍ତି ।

ଯଦି ଦେଶୀୟ ରାଜା, ଜମିଦାର, ଧନୀ ଭଦ୍ର ଲୋକମାନେ ଯାତ୍ରୀମାନଙ୍କ ଉଦ୍ଦେଶ୍ୟରେ ପାନୀୟ ଜଳ ଯୋଗାଣ ପାଇଁ ଆଗେଇ ଆସନ୍ତେ, ତେବେ ଯାତ୍ରୀମାନଙ୍କ ପାଇଁ ଏହା ନିଶ୍ଚିତ ଭାବେ ଏକ ଆଶୀର୍ବାଦ ସୂଚକ କାର୍ଯ୍ୟ ହୁଅନ୍ତା । ୧୮୧୦ ମସିହାରେ ରାଜା ସୁକମୟ ରାଏ, ପୁରୀ ଯିବାକୁ ରାସ୍ତା ନିର୍ମାଣ ପାଇଁ ୧,୫୦,୦୦୦ ଟଙ୍କା ଦାନ କରିଥିଲେ । ରାଜରାସ୍ତା ପାଖରେ ଜଳଦାନ କରିବାକୁ କୂପ ଖନନ କରିବା ପାଇଁ ଏବେ କଣ ସେପରି ବଦାନ୍ୟ ରାଜା କେହି ଅର୍ଥଦାନ କରିବାକୁ ନାହାଁନ୍ତି ? ଯଦି କେବେ ଏହି ଚିନ୍ତାଧାରା କାର୍ଯ୍ୟକାରୀ ହୁଏ, ସେତେବେଳେ ରାସ୍ତାକଡରେ ବିଶୁଦ୍ଧ ପିଇବା ପାଣିର ଅଭାବ ଦେଖାଦେବନି ।

ଉପରେ ସାନିଟାରୀ ଅବସ୍ଥାର ଉନ୍ନତିକଳ୍ପେ ଯେଉଁସବୁ ପ୍ରସ୍ତାବ ଦିଆଗଲା, ସେସବୁ ପ୍ରସ୍ତାବ ଭୁବନେଶ୍ୱର, ଯାଜପୁର ସହର ପାଇଁ ମଧ୍ୟ ପ୍ରଯୁଜ୍ୟ । ପୁରୀ ପରି ଏସବୁ ସ୍ଥାନମାନଙ୍କରେ ସେପରି ଆବଶ୍ୟକତା ଅଛି, ମାତ୍ର ଜଗନ୍ନାଥ ପୁରୀରେ ଏହାର ମାତ୍ରା ଅଧିକ । ମୁଁ ଭାବୁଛି, ପୁରୀ ସହରକୁ ଯୋଗାଯୋଗ କରୁଥିବା ମୁଖ୍ୟ ରାସ୍ତାରେ ଛୋଟ ଘୋଡାସବାର ପୋଲିସ୍ ପେଟ୍ରୋଲ ରହିଲେ ଯାତ୍ରୀମାନେ ଆସିବା ବେଳେ କିଏ କେଉଁ ସ୍ଥାନରେ ରୋଗାକ୍ରାନ୍ତ ହେଲା, ମୃତ୍ୟୁବରଣ କଲା, ସେ ସଂପର୍କରେ ଖବର ଶୀଘ୍ର ପହଞ୍ଚିପାରନ୍ତା ଏବଂ ସେଥିପାଇଁ ନିରାକରଣ ବ୍ୟବସ୍ଥା ମଧ୍ୟ କରାଯାଇପାରନ୍ତା ।

ମୁଁ ଏଠାରେ ଗୋଟିଏ ପ୍ରସ୍ତାବ ଦେବାକୁ ଚାହେଁ ଯେ, ଓଡ଼ିଶାର ଦୀର୍ଘକାଳୀନ ସ୍ୱାସ୍ଥ୍ୟସେବାର ଆବଶ୍ୟକତାକୁ ଉପଲବ୍ଧି କରି ଓଡ଼ିଶାରେ ଗୋଟିଏ ମେଡିକାଲ ସ୍କୁଲ ସ୍ଥାପିତ ହେବା ଉଚିତ୍ ବୋଲି ମୋର ମତ ଯେଉଁଠି ସ୍ଥାନୀୟ ଲୋକମାନେ ଡାକ୍ତରୀ ଏବଂ କମ୍ପାଉଣ୍ଡରୀ ପଢ଼ିବା ପାଇଁ ସୁଯୋଗ ପାଇପାରିବେ ଏବଂ ଦରକାର ବେଳେ ସେମାନଙ୍କୁ

ଯାତ୍ରୀମାନଙ୍କ ଯିବା ଆସିବା ରାସ୍ତାରେ ମୁତୟନ କରାଯାଇ ଯାତ୍ରୀମାନଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇ ଦିଆଯାଇପାରନ୍ତା । ମେଡିକାଲ ସ୍କୁଲ ପାଇଁ କଟକ ହେଉଛି ଉପଯୁକ୍ତ ସ୍ଥାନ ।

ଶେଷକୁ ତୀର୍ଥଯାତ୍ରୀମାନଙ୍କର ଯାତ୍ରାକୁ ଉପଯୁକ୍ତ ଭାବେ ନିୟନ୍ତ୍ରଣ କରିବା ପାଇଁ ଯାହାସବୁ ଆବଶ୍ୟକତା ଅଛି, ସେସବୁ ବିଷୟରେ ଭଲ ଭାବେ ଜାଣିବା ପାଇଁ ସରକାର ଯଦି ଆସନ୍ତାବର୍ଷ (୧୮୬୯) ମୋତେ ହରଦ୍ୱାର, କାଞ୍ଚିଭରମ୍ ପ୍ରଭୃତି ତୀର୍ଥ ସ୍ଥାନକୁ ଡ୍ୟୁଟିରେ ପଠାନ୍ତେ, ତେବେ ମୁଁ ସେସବୁ ସ୍ଥାନରୁ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ସଂଗେ ସମସ୍ତ ଦରକାରୀ ଖବର ମଧ୍ୟ ସଂଗ୍ରହ କରିପାରନ୍ତି ।

## ପଣ୍ଡା-ପୂଜାରୀଙ୍କ ତୀର୍ଥଯାତ୍ରୀମାନଙ୍କ ପ୍ରତି ବ୍ୟବହାର ସଂପର୍କୀୟ ମନ୍ତବ୍ୟ

ବହୁ ସମୟରେ ଜୋର ଦେଇ କୁହାଯାଉଛି ଯେ, ମନ୍ଦିରର ପଣ୍ଡା-ପଢ଼ିଆରୀମାନେ ତୀର୍ଥଯାତ୍ରୀମାନଙ୍କୁ ନିର୍ଯାତନା ଏବଂ ଧୋକା ଦେଇଥାନ୍ତି । କୁହାଯାଏ, ଧୂଳିଆପଣ୍ଡା ମାନେ (Pilgrim-hunters) ଯାତ୍ରୀମାନଙ୍କୁ ସେମାନଙ୍କ ଘରୁ ପୁରୀ ଆସିବାକୁ ପ୍ରବର୍ତ୍ତାଇ ସେମାନଙ୍କର ସରଳ ବିଶ୍ୱାସ ଏବଂ ଅଜ୍ଞତାର ସୁଯୋଗ ନେଇ ବାଟରେ ସେମାନଙ୍କୁ ଧୋକା ଦେବା ସଂଗେ ହୃଦୟହୀନ ଓ ନିଷ୍ଠୁର ବ୍ୟବହାର ଦେଖାଇଥାନ୍ତି । ଏହି ଭଡାଟିଆ ପରାନ୍ନଭୋଗୀମାନେ ଯେଉଁ କାର୍ଯ୍ୟକୁ ଆରମ୍ଭ କରିଥାନ୍ତି, ପୁରୀର ପଣ୍ଡା ଏବଂ ପୂଜାରୀମାନେ ତାକୁ ସଂପୂର୍ଣ୍ଣ କରିଥାନ୍ତି । ଧୋକା, ଧପାବାଜି, ତଣ୍ଟିକଟା, ମିଥ୍ୟା, ନିଷ୍ଠୁର ବ୍ୟବହାର ଏବଂ ଯୌନ ଦୁରାଚାର, ଏମାନଙ୍କ ଚରିତ୍ରଗତ ଦୋଷ ବୋଲି କେତେକ କୁହନ୍ତି । ନିଜର ସ୍ୱାର୍ଥ ପାଇଁ ଫାଇଦା ଉଠାଇବାକୁ ଯାତ୍ରୀମାନଙ୍କ କଷ୍ଟଲବ୍ଧ ଅର୍ଥକୁ କିପରି ବିଭିନ୍ନ ଉପାୟରେ କରଗତ କରାଯାଇପାରିବ, ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ବୋଲି କୁହାଯାଏ । ସ୍ଥାନର ପବିତ୍ରତା ଏବଂ ମନ୍ଦିରର ଗୋପନୀୟତାର ଦ୍ୱାହିଦେଇ ଏମାନେ ନିରୀହ ଯାତ୍ରୀମାନଙ୍କୁ ବିଭିନ୍ନ ବାହାନା ଦେଖାଇ ଲୁଟିଥାନ୍ତି ବୋଲି ମଧ୍ୟ କୁହାଯାଏ । ଆମେ ଯାହା ଶୁଣୁଛୁ ତାର ଯଦି ଅଧେ କଥାକୁ ବିଶ୍ୱାସ କରୁ, ତେବେ ଯାତ୍ରୀମାନେ ଏହି ଭଣ୍ଡ, ଲମ୍ପଟ, ହୃଦୟହୀନମାନଙ୍କ ପାଇଁ ମୁର୍‌ଗା ବନିଛନ୍ତି ।

ମୁଁ ଯେତିକି ବୁଝିଛି, ଲୋକମାନଙ୍କର ଧର୍ମ ଉପରେ ଦୋଷ ଲଦିଦେବା କିମ୍ବା ସେମାନଙ୍କ ସରଳ, ଅକପଟ, ଧର୍ମବିଶ୍ୱାସ ବିରୋଧରେ କହିବା ମୋର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଯେଉଁମାନଙ୍କ ଚାତୁରୀ, ବିଶ୍ୱାସଘାତକତା,ଅପରାଧ ଏବଂ ନିଷ୍ଠୁରତା ଯୋଗୁଁ ପୁରୀ ସହରରେ ଏବଂ ପୁରୀ ଛାଡିବା ପରେ ଯେଉଁ ନିରୀହ ଯାତ୍ରୀମାନେ ଅକଥନୀୟ ଅସୁବିଧା, ଯନ୍ତ୍ରଣା ଭୋଗ କରିଥାନ୍ତି ସେମାନଙ୍କ ପ୍ରତି କୋହଳ ମନୋଭାବ ପ୍ରଦର୍ଶନ କରିବା ଅନାବଶ୍ୟକ । ଯେଉଁମାନେ ଗରିବମାନଙ୍କୁ ଲୁଟିବା ପାଇଁ କୁଣ୍ଠବୋଧ କରନ୍ତିନି,

ନିରୀହମାନଙ୍କୁ ନିର୍ଯାତନା ଦେଇଥାନ୍ତି, ପବିତ୍ର ସ୍ଥାନକୁ ଅପବିତ୍ର କରନ୍ତି, ସେମାନଙ୍କ ପାଇଁ ଦରଦ ଦେଖାଇବାର କୌଣସି କାରଣ ନାହିଁ । ସେଦିନ ନିଃସନ୍ଦେହରେ ଆସିବ, ଯେଉଁଦିନ ହିନ୍ଦୁ ଧର୍ମର ତଥାକଥିତ ଅଭିଭାବକମାନଙ୍କ ଅପବିତ୍ର କାର୍ଯ୍ୟ ସଂପୂର୍ଣ୍ଣ ଭାବେ ଆଲୋକକୁ ଆସିବ । ମୁଁ ବିଶ୍ୱାସ କରେ, ସରକାର ଏକଥା କରିବା କେବେହେଲେ ଉଚିତ୍ ହେବନି ମାତ୍ର ପ୍ରଭାବଶାଳୀ ବିବେକବାନ ଏବଂ ସହୃଦୟ ହିନ୍ଦୁ ଧର୍ମର ନେତୃସ୍ଥାନୀୟ ବ୍ୟକ୍ତିମାନେ ଏ ଦିଗରେ କାର୍ଯ୍ୟ କରିବେ । ସେମାନେ ନିରୀହ ଯାତ୍ରୀମାନଙ୍କୁ ସୁରକ୍ଷା ଦେବା ବେଳେ ନିର୍ଯାତନା ଦେଉଥିବା ସେବାୟତମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ କରିବେ । ଯେଉଁମାନେ ନିରୀହ ଯାତ୍ରୀମାନଙ୍କ ଧନ, ଜୀବନ ଓ ସୁଖକୁ ନେଇ ଖେଳ ଖେଳୁଛନ୍ତି, ସେମାନଙ୍କୁ ଏତାଦୃଶ କାର୍ଯ୍ୟରୁ ନିବୃତ୍ତ କରିବା ପାଇଁ ବିଭିନ୍ନ ଉପାୟ ବାହାର କରିବେ ।

ମୁଁ ଯାହା ଏଠାରେ ଉଲ୍ଲେଖ କରିଛି, ତାହା ଯଦି ସୁବିଚାରକୁ ନିଆଯାଇ କୁହାଯାଏ ଯେ, ସେସବୁକୁ ଅବଦନ୍ୟତା, ଅବାଞ୍ଛିତ, ଅଧାର୍ମିକ କିମ୍ବା ଉପଯୁକ୍ତ ସତ୍ୟ ଉପରେ ପ୍ରତିଷ୍ଠିତ ନୁହେଁ, ତେବେ ମୁଁ ଏଇ ମୁହୂର୍ତ୍ତରେ ମୋ ଉକ୍ତିକୁ ଅସ୍ୱୀକାର କରୁଛି । କିନ୍ତୁ ଜଗନ୍ନାଥଙ୍କ ନିକଟରେ ଏବଂ ଅନ୍ୟ ସ୍ଥାନରେ ଧର୍ମକୁ ନେଇ ଯେଉଁ ପ୍ରକାର ଅପରାଧ ପ୍ରଚଳିତ ହୋଇଆସୁଛି ବୋଲି କୁହାଯାଉଛି, ତାହା କେବେହେଲେ ଏତେଦୂର ଅତିରଞ୍ଜିତ ହୋଇ କୁହାଯିବ, ତାହା ମୁଁ ବିଶ୍ୱାସ କରୁନି । ପ୍ରତ୍ୟେକ ହୃଦୟବାନ ବ୍ୟକ୍ତି ଦୁଃଖ ଓ କ୍ଷୋଭରେ ସହିତ ଅନୁଭବ କରୁଥିବେ ଯେ କିପରି ଅନୁକମ୍ପାବିହୀନ ହୋଇ ପ୍ରତ୍ୟେକ ବର୍ଷ ଓଡ଼ିଶା ଓ ବଙ୍ଗଳାର ସରଳ, ନିରୀହ ଲୋକମାନେ ସର୍ବନାଶ ହେଉଛନ୍ତି । ଏହାର ଦୂରୀକରଣ ଲାଗି ମୋର ସାମାନ୍ୟ ଏହି ଲେଖା ନୁହଁ, ଏହାଠାରୁ ବହୁ ଗୁଣରେ ଶକ୍ତିଶାଳୀ କଲମର ଆବଶ୍ୟକତା ଅଛି । ସତ୍ୟ, ଧର୍ମ, ନ୍ୟାୟ ଏବଂ ହିତ ପାଇଁ ମୁଁ ଏତିକି ଆନ୍ତରିକତାର ସହ ଦର୍ଶାଇ ଦେବାକୁ ଚାହେଁ ଯେ, ଜଗନ୍ନାଥଙ୍କ ପୂଜାର୍ଚ୍ଚନାକୁ ନେଇ ଯେଉଁ ପ୍ରକାର ନୃଶଂସ ଅସାମାଜିକ କାର୍ଯ୍ୟ ଦିନକୁ ଦିନ ବଢ଼ି ଚାଲିଛି ବୋଲି କୁହାଯାଉଛି ଏବଂ ସେସବୁକୁ ଯେପରି ଭାବେ ବରଦାସ୍ତ କରାଯାଉଛି, ତାରି ନିରାକରଣ ପାଇଁ ବିଜ୍ଞ, ପଣ୍ଡିତ, ଧର୍ମରକ୍ଷକମାନେ ସ୍ୱର ଉତ୍ତୋଳନ କରିବା ଉଚିତ୍ । ମୁଁ କହିବାକୁ ଡରୁଥିଲେ ମଧ୍ୟ ମିଃ ଲାଓରୀ ବହୁ ଅଂଶରେ ସତ୍ୟ କଥା କହିବାକୁ ଯାଇ ସୂଚାଇ ଦେଇଥିଲେ ଯେ, ଓଡ଼ିଶାର ମନ୍ଦିରଗୁଡ଼ିକ ହେଲା ଘୃଣ୍ୟ, ଅନ୍ୟାୟଚାରର ଏକ ବସାଘର । “Vile nests of iniquity”

ଏକଥା କୁହାଯାଇଛି ଯେ, ପୁରୀକୁ ଯେଉଁ ଯାତ୍ରୀମାନେ ଆସନ୍ତି, ସେମାନେ ଫେରିଲା ବେଳେ ତାଙ୍କ ପାଖରେ ଗୋଟିଏ ହେଲେ ପଇସା, ଲୁଗାପଟା, ଏପରିକି ଲୋଟା ଖଣ୍ଡେ ନେଇ ଫେରିନଥାନ୍ତି । ଏହା ମଧ୍ୟ ବହୁଳ ଭାବେ ସତ ଯେ, ଯାତ୍ରୀମାନଙ୍କ ପାଖରୁ ସବୁ ନେଲା ପରେ ସେମାନଙ୍କୁ ଅତିରିକ୍ତ ସୁଧହାରରେ ଧାର କରି ଉଧାର ନେବା

ପାଇଁ ପୂଜକମାନେ ପ୍ରବର୍ତ୍ତାଇ ଥାନ୍ତି ଏବଂ ସେମାନେ ଦେଇଥିବା ଉଧାରକୁ ଆଦାୟ ମଧ କରିଥାନ୍ତି । ଯାତ୍ରୀମାନଙ୍କ ଯନ୍ତଣା ପାଇଁ ସେମାନଙ୍କର ଅଜ୍ଞତା, ଅଶିକ୍ଷଣତା ହିଁ ମୂଳ କାରଣ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । 'PRIMUS SAPIENTIAE GRADUS FALSA INTELLI GERE' କେହି ଭାବନ୍ତୁନି ଯେ, ମୁଁ ପୁରୀର ପଣ୍ଡା, ପଢ଼ିଆରୀ, ପୂଜକମାନଙ୍କ ଉପରେ ଅସୂୟାଭାବ ନେଇ ଏପରି ଲେଖୁଛି - ତା'ନୁହେଁ, ମୁଁ ସରକାରଙ୍କ ଆଗରେ ଯାତ୍ରୀମାନଙ୍କ ଦୁଃଖ, ଯନ୍ତଣା ସଂପର୍କରେ ଜଣେ ଦେଶୀୟ (Native) ଯାହା ତାଙ୍କ ଆର୍ଟିକିଲ୍‌ରେ ଲେଖିଥିଲେ ସେଇକଥା ହିଁ ପ୍ରତିପାଦନ କରୁଛି । ସେଇ ଲେଖାଟି ଦେଶୀୟ ପତ୍ରିକା 'ଦି ସୋମ ପ୍ରକାଶ' (The SHOM PROKASH) ରେ ୧୮୬୮ ମସିହା ମେ' ମାସ ୮ ତାରିଖରେ ପ୍ରକାଶ ପାଇଥିଲା । ତାର ଇଂରାଜୀ ଟ୍ରାନ୍‌ସଲେସନ ହେଲା 'ଡାଭିଡ୍ ସ୍ମିଥ୍‌ଙ୍କ ଇଂରାଜୀ ଅନୁବାଦନକୁ ଅବିକଳ ମୁଁ ଉପଯୁକ୍ତ ମଣିଲି' ।

**A TRUE ACCOUNT OF THE PILGRIMAGE TO POOREE**

"In consequence of the fearful famine, pilgrimage to Pooree ceased for two years. The intelligence that thousands of people were dying of starvation, and that no eatables were procurable on the way, **dried up the waters of piety**. Many were determined to go last year, but on account of the warning issued by the Government they could not undertake the journey. The wishes of the Government were not prohibitive, but the Police and Zillah Magistrates exceeded their powers, and turned back hundreds of misguided people from Oolooberiah. No one complained of that treatment-may, many were pleased at it. But all such reasons do not exist this year. The attractive power of Juggernauth, which the famine had dispersed, has now revived, and his priests, who, with eyes closed, managed to keep their bodies and souls together with the remnants of former offerings, are again looking lively. In fact, the rice exported to Orissa, which was purchased with 25 lacs of rupees from the Government coffers, has, in a manner, contributed to the revival of Juggernauth's glory and that of his priests. Multitudes of females, again, have felt Juggernauth's strings pulling them by the shoulders. In truth, many unfortunate women have cast away infant children from their own

breasts, and preferred the pundah's abuse, the scorching heat of the sun, rice like the Indian corn, and the cholera.

"Quite in keeping with the comely look of Juggernauth, his service, and the offerings made to him, are the Pooree pundahs ! I bear antipathy to no sect. I respect the man who, whatever his religion may be, believes in that religion, in sincerity. But, I am free to confess, my blood boils to look at those demi-devils who, with heads shaved, halfbald, and wearing caps that cover their ears (their foreheads being painted in the form of the half-moon), hold an umbrella of GOLEPATTA in one hand; who, clad in a semi-CHUPKAN of Madras cloth, and incessantly chewing PAN, bend forward under the weight of the Knapsacks which they carry on their backs, and trudge about from the month of Choitra to the middle of Jeisto, from one village to another. Brutes in manners clowns in education, and fools in conversation their mouths are full of the praises of Juggernauth, while in their hearts they regard none of his rules. They visit houses at an hour when their male inmates have gone out on business, and then they commence to ":gull" the females. Some of these are induced to leave their homes from superstitious motives, others with a view to break the shackles of the NENNA and breathe the airof liberty; while young widows make a plea of pilgrimage to satisfy their carnal desires. The pundahs, adepts in their made, pander to all sorts of motives and wishes of the pilgrims. Truth must be told. To keep silence, when mischief is perpetrated before our very eyes is surely not proper. I ask my countrymen if Juggernauth does not attract to his shrine, only females? Have males been observed to constitute even 5 percent of the pilgrims? The men have no faith in Juggernauth, neither does Juggernauth attract the man. There is good reason for this. With a larger proportion of male pilgrims, the earnings, as also the influence of the pundahs, would be on the wane.

"I doubt if all that transpires on the road to Pooree is well known to the reader. The pundahs are all attention to the pilgrims down as far as Oolooberiah, which place they no sooner leave than they assume quite a different mein. By nature they possess frames hard as iron. They travel regularly 40 miles a day, which it is beyond the power of females to do for 16 or 17 days together. But those wretches must needs drag them on. At night the pundah sleeps amongst the females. He is their protecting genius, and should confront danger to keep them from harm. He, however, tells them - "if one of you should die of snake bite, or be carried away by a tiger there would be no great harm done, but should I die, who would take the rest of you on to Juggernauth?" The pilgrims become quite exhausted at the end of the day's journey. but the ruthless guide will not give them rest. He must pick out one or two from amongst them to shampoo him. That a spirit of piety, even after the women have returned from Pooree, should continue to influence many of them long, it is unreasonable to expect. At dawn of day the pundah is ready to resume his journey, and then the pilgrims must leave their beds. The way is dangerous, skirted on both sides by woods infested with beasts of prey. Neither is delay possible. The pilgrims commence to move. The day draws, and the sun showers his poisonous rays (sic), when a delicate girl prays of the guide to stop for a few minutes under the shade of yonder tree. The language which the pundah uses to urge the poor creature on is simply too obscene for utterance. Those who have heard bullock-drivers urge forward their beasts of burden. When they succumb on the way, under the weight they are made to carry, can partially realise to themselves the language the pundahs use on occasions like the one alluded to above. At noon the pilgrims halt at a caravanserai. The reader should bear in mind that the eatables at these series are as inviting as is the idol of Juggernauth ! The pundah, upon taking his bath, satisfies his appetite with anything and everything good that he can find. He does not

pray, nor ever change his clothes, for three or four days running. This might disgust some sensitive females. But there is no helf for it. They have put their feet in the mire and must placed. The bulk of the pilgrims however, forgive the pundah's disregard of decency on the principle that 'nothing is evil on the way to juggernauth.' After the pundah has comforted himself the females commence to bathe promiscuously with the male in some tank, at a GHAT scarcely fer cubits broad, and how far they can preserve deoency under the circumstances the reader may well conceive. After taking food, the pilgirms resume their journey. If and in the meantime, should happen to be sick, they must be left behind to look after themselves. Their companious cannot wait, for juggernauth 'pulls his strings', which do not admit of delay. Rivers have to be crossed now and then. The boats of Orissa are unusually high, and to provide for safety, in case they should capsize in the strong, eddies a liberal supply of branches of trees is kept upon them; the boats are thus rendered higher, which makes it so much the more difficult for the pilgrims to embark. They must be pulled from above and pushed from below by helping hands. Those who would fly into a rage if an intruding hand dared to touch their wives at home should know that the former of the two operations mentioned above is done by the MANJEEs themselves, while the latter is undertaken by the pundah, who then resembles. Basookee supporting the earth ! Thus terminates the journey to Pooree. What do the pilgrims witness there? A place of Pilgrimage should help to liberate one from sin. Pilgrimage avails nothing if the passions be not our bed thereby and if the mind be not weaned from all thought of oarth, to religious contemplational ask again what do the pilgrims witness at Pooree? On the car of juggernatuth the temple of Juggernauth. on the walls of that temple, wherever they may cast their eyes, they see nothing but obscene representation and images. Thoughts of religion vanish at such sights. Some feel disgusted at them, many lose their sense of modesty, while other, with frail hearts,

take encouragement from them to sin. The pilgrims ..... ............... peeuniary as in a moral sense. The pundahs, on different pleas, fleece the pilgrims. The pleas they set up are numerous hosting of the flag, Rajah's fee, ritual presents, trusts for ATKAI or feeding beggars, & requiring from 5 to 50 rupees each. The pilgrims have besides to measure the .......with a long piece of cloth, which costs them 10 rupees each. This ceremony brings to the pundah a whole year's supply of clothes. Thus at every step the pilgrims have to pay heavily, and lest they should, on their return home, relate all the hardships and severe treatment experienced by them, the following precaution is resorted to by the pundahs to gag their mouths. At a certain place a person stands with a broom, the reception of a blow from which is represented to be a great act of piety, and for which the pilgrims have to pay two rupees all round. Before the recipient not to divulge what has transpired, or shall transpire on the way under penalty of forfeiture of all good acts performed. The women, blinded by superstition hold the in tongues from fear of punishment. At pooree the pilgrims sleep, just as they eat, promiscuously in the work houses of London and Manchester, the poor, male and female. sleep in the same room from necessity, whereas, at Pooree, the wives of Hindoos, even in a fluent circumstance sleep in the same room with perfect strangers of the opposite sex. A camp residing at Cuttack used to visit Pooree regularly every year, on the plea of Juggernauth's attractions, when his real object was to flirt with the female pilgrims.

"The above is not all the single stragglers on the way those that have been forsaken by their .......... meet with the greatest danger. At the Ruth Jatra, Poorees visited by DALALS from Central India, to whom the pundah sell those unfortunate females. They are told they have been pressed into the Company's service but when they pass jubbulpore. they become awarded to case of their real danger - that they are destined to enter a Mussulihan NENANA. The pundahs unable to resist the temptation, occasionally reserve one or

two of such females to live under their own protection. Those that discredit what we have stated may refer to the report of the Lunatic Asylum of Cuttack for 1866. A female was driven to insanity from being thus confined in the house of a pundah, hence the Police removed her to the Lunatic Asylum of Cuttack. Her revelations, upon her regaining lier mind. led to the conviction of the miscreant.

Such is the misery attending pilgrimage to Pooree - such the misconduct not to speak of the hardship, in diet and living. How many females meet an untimely death and thereby have their husbands and children in wretchedness ! How many more sacrifice honour, which to a female is more precious than existence, and live a life of misery, self-reproach, and humiliation to themselves, and griff to those who are dear to them ! The generation of our elders have lost their strength (SIG) neither are they advocates for visiting Pooree. I ask those who have gained bitter experience if they will allow their families to visit that place. If we have advanced beyond the rare name of eduction and civilization, if we have acquired the power to discriminate good from evil, we should close the way to Pooree. We could discontinue the pilgrimage if we chose. The question now is shall we do it or not? I entreat the Government to restrict this evil practice by instituting the issue of licenses to the pundahs of Juggernauth, as they have done with the Agents of Cooly Emigration. By doing so there car be no possible interference with the religion of the country."

## ତୀର୍ଥଯାତ୍ରୀମାନଙ୍କ ପ୍ରବେଶ ଉପରେ ନିଷେଧାଦେଶ ସଂପର୍କରେ ମୋର ମନ୍ତବ୍ୟ

ଭାରତୀୟ ତୀର୍ଥଯାତ୍ରାକୁ ସଂପୂର୍ଣ୍ଣ ଭାବେ ନିଷେଧ କରିବା ପାଇଁ ପ୍ରତ୍ୟେକ ରାଜ୍ୟ କାର୍ଯ୍ୟାନୁଷ୍ଠାନ କରୁ ବୋଲି କେତେକ ଅନୁରୋଧ କରିଛନ୍ତି । ମୋ ମତରେ ଏପରି ପ୍ରସ୍ତାବ ଅତ୍ୟନ୍ତ ଅବାସ୍ତବ ଏବଂ ନୃଶଂସ । ହିନ୍ଦୁ ଧର୍ମର ବହୁ ଆକାଂକ୍ଷିତ ଏବଂ ଅହାନିକାର ତୀର୍ଥଯାତ୍ରାକୁ ବନ୍ଦ କରିବା ପାଇଁ ସରକାରୀ ଉଦ୍ୟମ ହେଲେ, ବିଭିନ୍ନ ସଂପ୍ରଦାୟର

ଖ୍ରୀଷ୍ଟିଆନମାନେ ତାଙ୍କର ପୂଣ୍ୟ ପୀଠକୁ ଯିବା ଉପରେ ମଧ୍ୟ ନିଷେଧାଦେଶ ପ୍ରୟୋଗ କରାଯାଉ । ପ୍ରତ୍ୟେକ ଦେଶ ଇତିହାସର ଗୋଟିଏ ଅବସ୍ଥାରେ, ସେଇ ଦେଶର ଦେଶବାସୀଙ୍କର ତୀର୍ଥଯାତ୍ରାରେ ଯିବାର ଏକ ସ୍ୱାଭାବିକ ଉତ୍ସାହ ଦେଖାଦେଇଥାଏ । ମଣିଷର ମନ ମଧ୍ୟରେ ମହନୀୟତାର ପ୍ରକଟୀକରଣ ସେମାନଙ୍କର ସଭ୍ୟତାର ଏକ ନିର୍ଦ୍ଦିଷ୍ଟ ସମୟରେ ଘଟିବାର ଦୃଷ୍ଟାନ୍ତ ବିରଳ ନୁହଁ । ଏହା ମୂଳରେ ଅନ୍ଧବିଶ୍ୱାସ ଯେତେଦୂର ଜଡିତ ଥିଲେ ମଧ୍ୟ ତା'ଛଡା ଆହୁରି ଅନେକ କିଛି ଅଛି, ଯାହାକୁ ଆମେ ମଣିଷ ପ୍ରକୃତିର ବିରୋଚିତ ଏବଂ ପ୍ରଶଂସନୀୟ କାର୍ଯ୍ୟ ବୋଲି କହିଥାଉ । ଅଜ୍ଞତା ଏବଂ ଭ୍ରମ, ଯେତେଦୂର ପର୍ଯ୍ୟନ୍ତ ଏହା ସହିତ ଜଡିତ ଥିଲେ, ଏହା ସତ୍ୟ ସ୍ନେହ ସହୃଦୟତାରେ ଏସବୁକୁ ସହ୍ୟ କରାଯିବା ଉଚିତ୍ । ବହୁ ଦେଶର ଭିନ୍ନ ଭିନ୍ନ ସମୟର ତୀର୍ଥଯାତ୍ରାର ଇତିହାସ ମଣିଷ ମନର ଭାବନାକୁ ଯେଉଁପରି ଭାବେ କାର୍ଯ୍ୟକାରୀ କରି ରଖିଥିଲା, ତାହା ଶିକ୍ଷାପ୍ରଦ କାର୍ଯ୍ୟର ବିଷୟବସ୍ତୁ ହେବା ପାଇଁ ପ୍ରେରଣା ଦେବ । ଏପରିକି ପ୍ରଖ୍ୟାତ ହିନ୍ଦୁ ମନ୍ଦିରମାନଙ୍କ ପଛରେ ରହିଥିବା ଗପମାନ ମଧ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଚରିତ୍ର ହୋଇପାରିବ । ମୁଁ ଜାଣିନି, ଏ ସଂପର୍କରେ କୌଣସି ଲେଖକ ବିଶେଷ ଭାବେ କିଛି ଅନୁଧ୍ୟାନ କରିଛନ୍ତି କି ନାହିଁ, ମାତ୍ର ଏ ଦେଶର ଦର୍ଶନ ଏବଂ ପ୍ରତ୍ନତାତ୍ତ୍ୱିକ ସାହିତ୍ୟରେ ବହୁତ ପ୍ରକାର ସୂଚନା ବିଛେଇ ହୋଇ ରହିଛି । ମୋ' ପକ୍ଷରେ ଏସବୁର ଇତିହାସ ବର୍ତ୍ତମାନ କ୍ଷେତ୍ରରେ ଉପସ୍ଥାପନ କରିବାର କିଛି ଆବଶ୍ୟକତା ନାହିଁ ତଥାପି ସମାଜର ବିଭିନ୍ନ ଗୋଷ୍ଠୀ, ଜାତିର ଲୋକମାନେ ତୀର୍ଥଯାତ୍ରାରେ ଯିବା ପାଇଁ ଯେଉଁ ପ୍ରକାରେ ପ୍ରବର୍ତ୍ତାଇଥାନ୍ତି, ଯେଉଁ ଅବସ୍ଥାରେ ସେମାନେ ରାସ୍ତାକୁ ବାହାରିଥାନ୍ତି, ରାଜରାସ୍ତା ଉପରେ ଏକାଠି ହେବା, ବସା ଘର, ଶିବିର ଏବଂ ମନ୍ଦିର ପରିସରର ଜନଗହଳି ଭିତରେ ରହିବାର ପ୍ରତିଫଳ ହାନିକର ପରିବେଷ୍ଟନୀର ସେମାନଙ୍କ ଶରୀର ଉପରେ ପ୍ରଭାବ, ସର୍ବୋପରି ସେମାନେ ଯେଉଁପରି ଭାବେ ରୋଗ ଏବଂ ମୃତ୍ୟୁର ସମ୍ମୁଖୀନ ହୋଇଥାନ୍ତି, ସେସବୁ ବିଷୟରେ ସାଧାରଣ ଭାବେ ସୂଚନା ଦେବାକୁ ମୁଁ ଉଚିତ୍ ମନେ କରୁଛି । ପୃଥିବୀରେ ଏପରି ଦେଶ ନାହିଁ, ଯେଉଁଠି ତୀର୍ଥଯାତ୍ରୀମାନେ ଯିବା ଆସିବା କରିନଥାନ୍ତି ।

ଆଗରୁ କହିଛି, ତୀର୍ଥଯାତ୍ରାରେ ଯିବା ପାଇଁ ପ୍ରାୟ ପ୍ରତ୍ୟେକ ବ୍ୟକ୍ତିଙ୍କ ପାଖରେ ଆଗ୍ରହ ଥିବାର ଦେଖାଯାଏ । ଏହି ଭାବନାକୁ ସିସେରୋ ସୁନ୍ଦର ଭାବେ ବର୍ଣ୍ଣନା କରି କହିଛନ୍ତି ଯେ, "ଯାତ୍ରାରେ ଯିବା କଥା ଉଠିଲେ ସମସ୍ତଙ୍କ ମନରେ ଅଦମ୍ୟ ଉତ୍ସାହ ସୃଷ୍ଟି ହୋଇଥାଏ । ତାଙ୍କ କଥାକୁ ପରବର୍ତ୍ତୀ କାଳରେ ଗିବନ, ଟାସୋ ଏବଂ ଅନ୍ୟ ପ୍ରତିଷ୍ଠିତ ଲେଖକମାନେ ମଧ୍ୟ ସମର୍ଥନ କରିଥିଲେ । ଏପରିସ୍ଥଳେ, ଧାର୍ମିକ ଲୋକମାନଙ୍କ ମନରେ ତୀର୍ଥକରି ଯିବା ପାଇଁ ନିଶ୍ଚିତ ଭାବେ ଉତ୍ସାହ ଜାଗ୍ରତ ହେବ ହିଁ ହେବ । ଯେଉଁସବୁ ସ୍ଥାନର ପବିତ୍ରତା, ଯୁଗ ଯୁଗରୁ ବହୁ ମହନୀୟ ଧାର୍ମିକ ସଂସ୍ଥା, ଅନୁମୋଦନ କରିଆସିଛନ୍ତି,

ସେସବୁ ସ୍ଥାନକୁ ଭାରତୀୟ ଯାତ୍ରୀମାନେ, ଯେଉଁ ଅପୂର୍ବ ରହସ୍ୟାନୁଭୂତି ନେଇ ଯାତ୍ରା କରିଥାନ୍ତି, ସେଥିରେ ଆମେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଆଜିବି ଗ୍ରୀକ୍, ରୋମାନ, ଆରର୍ମେନିୟାନ ଚର୍ଚ୍ଚର ଅନୁଗାମୀମାନଙ୍କୁ ଜେରୁଜେଲମ ସାଙ୍କଚୁଆରୀ 'ଇଷ୍ଟର ଟାଇଡି' ନିକଟରେ ଏକତ୍ରିତ ହେବାକୁ ଯେଉଁ ଉତ୍ସାହ ଆଗେଇ ନେଉଛି, ଓଡ଼ିଆ, ବଙ୍ଗାଳୀ, ବନାରସର ବ୍ରାହ୍ମଣ, ରାଜପୁତ ଏବଂ ହଜାରାର ହିନ୍ଦୁମାନଙ୍କୁ 'ପୁରୀ ଯାତ୍ରା' କରିବାକୁ ସେଇ ପ୍ରକାର ପ୍ରୋତ୍ସାହନ ଦେଉଛି । ତୀର୍ଥଯାତ୍ରାରେ ପୁଣ୍ୟ ଅର୍ଜନ କରିବାର ସେଇ ବିଶ୍ୱାସ, ମନୋବାଞ୍ଛା ପୂରଣ ପାଇଁ ସେଇ ଦ୍ୱାହି ଆଉ ଭେଟି ଦେବାର ପ୍ରୟାସ, ଦୂରଦୂରାନ୍ତ ପବିତ୍ର ଭୂମି ପାଇଁ ସେଇ ପ୍ରକାର ଶ୍ରଦ୍ଧା, ଐତିହ୍ୟ ଓ ପରମ୍ପରା ଯେଉଁ ସ୍ଥାନକୁ ପବିତ୍ର ଭୂମିର ମାନ୍ୟତା ଦେଇଛି ସେହି ସ୍ଥାନରେ ପହଞ୍ଚିବାର ଆଗ୍ରହ, ସେଇ ପ୍ରକାର କଷ୍ଟ ଓ ସଂଯମ ବାଟଦେଇ ଯିବାର ପ୍ରସ୍ତୁତି, ବିପଦ ଓ କଷ୍ଟ ପ୍ରତି ସେଇ ପ୍ରକାର ଅନାଦର ଭାବ, ସେଇ ଅଦମ୍ୟ ଉତ୍ସାହ, ସେହି ତ୍ୟାଗ ମନୋବୃତ୍ତି, ସେଇ ପୁଣ୍ୟ ଅର୍ଜନ ପାଇଁ ମୃତ୍ୟୁକୁ ବେଖାତିର କରିବାର ଇଚ୍ଛା, ସେଇ ଆଶା ଭିତରେ ପାଲମକୁ ବୋହିବା ପାଲେଷ୍ଟାଇନର ସେଇ ପବିତ୍ର ଭୂମିରେ ପହଂ୍ଚିବା ପାଇଁ ଯେଉଁ କଷ୍ଟ, ଯନ୍ତ୍ରଣା ଦେଇ ଅଚିହ୍ନା, ଅଜଣା ଦେଶ ମଧ୍ୟରେ ଯାତ୍ରାପରି, ଆଜି ଭାରତୀୟ ତୀର୍ଥଯାତ୍ରୀମାନେ ଓଡ଼ିଶାର ସେଇ ପବିତ୍ର ଭୂମି ଯାଜପୁର, ଭୁବନେଶ୍ୱର, ପୁରୀର ସେହି ପବିତ୍ର ପୁଷ୍କରିଣୀ, ସର୍ବୋପରି ରହସ୍ୟଘେରା ପୁରୀର ଜଗନ୍ନାଥ ମନ୍ଦିର ଦର୍ଶନର ଅଭିଳାଷ ନେଇ ଦୀର୍ଘପଥ ଅତିକ୍ରାନ୍ତ କରି ଆସୁଛନ୍ତି ।

ବିଭିନ୍ନ ସମୟରେ ସେଇ ପ୍ରକାର ଉତ୍ସାହ ଯେପରି ବିଭିନ୍ନ ଦେଶର ଅଧିବାସୀମାନଙ୍କୁ ଏଫାସିୟସ କୋରିନ୍ଥ, ଡାଡୋନା, ଏଲ୍ୟୁସିସ୍, ଥେବେସ, ସ୍କେଟ୍, ମେମ୍ଫିସ୍, ଏଡଫୁ, ରୋମ, ଲରେଟୋ ଏବଂ ଯୋରଗେସା ପ୍ରଭୃତି ସ୍ଥାନକୁ ତୀର୍ଥଯାତ୍ରାରେ ଯିବାକୁ ଆକର୍ଷିତ କରିଛି, ବନାରସ, ଗୟା, ଆହ୍ଲାବାଦ, ହରିଦ୍ୱାର, ଗଙ୍ଗୋତ୍ରୀ ଏବଂ ବଦ୍ରିନାଥ, ସେହିପରି ଭାରତୀୟ ତୀର୍ଥଯାତ୍ରୀମାନଙ୍କୁ ଆକର୍ଷିତ କରିଥାଏ । ପ୍ରଫେଟ୍ ମହମ୍ମଦଙ୍କର ଲକ୍ଷ ଲକ୍ଷ ଅନୁଗାମୀମାନଙ୍କର ମକାର କାବାରେ ପହଞ୍ଚିବା ପାଇଁ ଯେପରି ଅଦମ୍ୟ ଲାଳସା ଥାଏ, ବ୍ରହ୍ମ ଉପାସକମାନଙ୍କୁ ଗଙ୍ଗାସାଗର ବୃନ୍ଦାବନ ଓ ସେତୁବନ୍ଧ ରାମେଶ୍ୱର ସେପରି ଆକର୍ଷିତ କରିଥାଏ । ଦକ୍ଷିଣରେ ପ୍ରତ୍ୟେକ ବର୍ଷ ଯେଉଁମାନେ କାଜିଂବରୁମ୍‌କୁ ଯାଇଥାନ୍ତି ସେମାନଙ୍କୁ ସେଇ ଅନିର୍ଦ୍ଦିଷ୍ଟ ପ୍ରଭାବ ଯେଉଁପରି ଭାବେ ଅନୁପ୍ରାଣୀତ କରିଥାଏ, ପଶ୍ଚିମରେ ଏଲିଫାଣ୍ଟା, ଏଲୋରା ପ୍ରଭୃତି ସ୍ଥାନ ମଧ୍ୟ ସେଇ ପ୍ରକାରେ ଅନୁପ୍ରାଣୀତ କରିଥାନ୍ତି ।

ଖ୍ରୀଷ୍ଟ ଧର୍ମର ଅନୁଗାମୀମାନେ ଯେପରି 'ପବିତ୍ର ମାଟିକୁ ଚୁମ୍ବନ ଦେଇଥାନ୍ତି, ପବିତ୍ର ଶବ୍ଦକୁ ଉଚ୍ଚାରଣ କରିଥାନ୍ତି ଏବଂ ପ୍ରଥା ଅନୁସାରେ ପାଲେଷ୍ଟାଇନ୍‌ର ଟେରା ମେଣ୍ଟା ନିକଟରେ ମୁଦ୍ରା ରଖିଥାନ୍ତି, ସେଇପରି ହିନ୍ଦୁମାନେ ବିଭିନ୍ନ ମନ୍ଦିରମାନଙ୍କରେ ଦାନ ଦକ୍ଷିଣା

ଦେଇଥାନ୍ତି ।' 'ସାଂକ୍‌ଟୁଆରୀ'ରେ ଉପସ୍ଥିତ ହୋଇ ପ୍ରାର୍ଥନା କରିବା ପୂର୍ବରୁ ଖ୍ରୀଷ୍ଟିଆନ ତୀର୍ଥଯାତ୍ରୀମାନେ ଯେପରି ଉପବାସ ରହି ସେଇ ଧାର୍ମିକ କାର୍ଯ୍ୟ ପାଇଁ ନିଜକୁ ପ୍ରସ୍ତୁତ କରିଥାନ୍ତି, ହିନ୍ଦୁ ଯାତ୍ରୀମାନେ ସେଇ ପ୍ରକାର କଠିନ ଧାର୍ମିକ ଶୃଙ୍ଖଳା ମଧ୍ୟରେ ରହି ସେଇ କାର୍ଯ୍ୟ କରିଥାନ୍ତି । ଖ୍ରୀଷ୍ଟିୟାନମାନେ ଯେତେବେଳେ ତୀର୍ଥରୁ ଫେରନ୍ତି, ସେମାନେ ଯେପରି ଖୁସି ମନରେ ପବିତ୍ର ମାଳି ଏବଂ ଶାମୁକା ନେଇ ଫେରିଥାନ୍ତି, ପୁରୀରୁ ଫେରନ୍ତା ଯାତ୍ରୀମାନେ ମହାପ୍ରସାଦ ସହ ଅନ୍ୟାନ୍ୟ ମୂଲ୍ୟବାନ ରେଲିକ୍ ଧରି ଫେରିଥାନ୍ତି । ପୁରାତନ ତୀର୍ଥ 'ଆଣ୍ଟିଓକ୍' (Antiocl) ଯେପରି ଥେଓପୋଲିସ୍ ବା ଈଶ୍ୱରଙ୍କ ସହର (Theopol is - the City of God) ଭାବେ ଜଣାଶୁଣା ଥିଲା, ସେହିପରି ପୁରୀର ଶ୍ରୀମନ୍ଦିର - ଜଗତର ନାଥ, ଜଗନ୍ନାଥଙ୍କ ମନ୍ଦିର ଭାବେ ଜଣା ।

ଯାହା ଦେଖୁଛେ, ପାଶ୍ଚାତ୍ୟ ଦେଶର ତୀର୍ଥଯାତ୍ରୀ ଏବଂ ହିନ୍ଦୁ ତୀର୍ଥଯାତ୍ରୀଙ୍କ ମଧ୍ୟରେ ସେଇ ଏକା ପ୍ରକାର ସାମଞ୍ଜସ୍ୟ ବହୁଳ ଭାବେ ଦେଖାଯାଏ । ପାଶ୍ଚାତ୍ୟ ଦେଶ ଯେ ଅପବ୍ୟବହାରରୁ ମୁକ୍ତ ଥିଲା, ଏକଥା କୁହାଯାଇ ନପାରେ । ଜଗନ୍ନାଥ ମନ୍ଦିରରେ ଗରିବ ଯାତ୍ରୀମାନଙ୍କୁ ଯେଉଁ ପ୍ରକାରେ ହୃଦୟହୀନ ଭାବେ କଷ୍ଟ ଦିଆଯାଏ ବୋଲି ଦର୍ଶାଯାଏ, ତା'ଠାରୁ ଅଧିକ ପରିମାଣ ପାଲେଷ୍ଟାଇନ୍ ଠାରେ ଯାତ୍ରୀମାନେ କଷ୍ଟ ପାଇବା କଥା ମଧ୍ୟ ମନେ ପକାଇ ଦିଆଯାଇପାରେ । ମୁଁ ଏକଥା କହିବାର ଏକମାତ୍ର ଉଦ୍ଦେଶ୍ୟ ହେଲା ମୋର ଯୁକ୍ତିକୁ ଅଧିକ ଶକ୍ତିଶାଳୀ କରି ଉପସ୍ଥାପିତ କଲାବେଳେ ମୁଁ କହିବାକୁ ଚାହେଁ ଯେ, ହିନ୍ଦୁ ଧର୍ମ ପ୍ରତି ଆମେ ସହିଷ୍ଣୁତା ଭାବ ପ୍ରକାଶ କରିବା ଉଚିତ୍ ଏବଂ ଭାରତୀୟ ତୀର୍ଥଯାତ୍ରୀମାନଙ୍କୁ ତୀର୍ଥଯାତ୍ରାରୁ ପ୍ରତିହତ କରିବା କଥା କ୍ଷଣିକ ପାଇଁ ମଧ୍ୟ ସରକାର ଚିନ୍ତା କରିବା ଉଚିତ୍ ନୁହଁ । ମିଃ ଗୋବନ ଆମକୁ ସୂଚେଇ ଦେଇ କହିଛନ୍ତି ଯେ, ଏହି ପବିତ୍ର ସହରର ବାସିନ୍ଦାମାନେ ଚୋରୀ, ନାରୀ, ବିଷାକ୍ତକରଣ, ହତ୍ୟା, ବ୍ୟଭିଚାର, ପିତୁଳା ପୂଜା ସବୁପ୍ରକାର କୁକର୍ମ ସହିତ ସୁପରିଚିତ । ସେ ମଧ୍ୟ ପଣ୍ଡା-ପଢ଼ିଆରୀମାନଙ୍କର ସ୍ୱାର୍ଥ, ସେମାନଙ୍କ ଉଦ୍ଦେଶ୍ୟ, ଚତୁରୀ ଏବଂ ଫନ୍ଦିଫିକର ବିଷୟରେ ବର୍ଣ୍ଣନା କରିଛନ୍ତି । ମିଚାଓ୍ୱାଡ୍ (Michaud) ତାଙ୍କର ପୁସ୍ତକ (History of CRUSADES-Vol-I) ଲେଖିଛନ୍ତି - ଆଣ୍ଟିକ୍ (Antioch) ଠାରେ ଖ୍ରୀଷ୍ଟିଆନମାନଙ୍କୁ ବହୁ ପ୍ରକାର ନିନ୍ଦନୀୟ କାର୍ଯ୍ୟ କରିବା ପାଇଁ ପ୍ରଲୋଭନ ଦେଖାଇ ପ୍ରଲୁବ୍ଧ କରାଯାଇଥାଏ । ସେ ବର୍ଣ୍ଣନା କରି ଲେଖିଛନ୍ତି 'ଜନସମାଗମ ଭିତରେ ଲମ୍ପଟ ତାର ଦୃଶ୍ୟ ଲୁଟ୍‌ତରାଜ, ହିଂସାକାଣ୍ଡ ଏପରିକି ହତ୍ୟାକାଣ୍ଡ ଆମ୍ଭମାନଙ୍କୁ ସୂଚାଇ ଦିଏ ଯେ, 'ଦୁର୍ନୀତିଗ୍ରସ୍ତ ବ୍ୟକ୍ତିମାନେ ସମାଜରେ କିପରି ପ୍ରାଧାନ୍ୟ ଲାଭ କରୁଛନ୍ତି ।' ଆଇନ୍‌ରେ କିପରି ଖରାପ ଉଦାହରଣ ସୃଷ୍ଟି ହେଉଛି । ତାଙ୍କ ପୁସ୍ତକରେ ଆଉ ଗୋଟିଏ ଜାଗାରେ ସେ ଉଲ୍ଲେଖ କରିଛନ୍ତି 'ଅନ୍ଧଦ୍ୱର ବଶବର୍ତ୍ତୀ ହୋଇ ଅନ୍ଧବିଶ୍ୱାସକୁ ଲାଇସେନ୍ସ ଦେଇ 'କ୍ରସ' ନାମରେ ସେମାନେ ଯେଉଁ ପ୍ରକାର ଅପରାଧ କରିଥାନ୍ତି, ତାହା

ମାନବ ହୃଦୟରେ ହୃତ୍‌କମ୍ପ ସୃଷ୍ଟିକରେ । ଆମେ ଜାଣିଛୁ, ଖ୍ରୀଷ୍ଟିଆନ ତୀର୍ଥଯାତ୍ରୀମାନେ ଦୂରଦୂରାନ୍ତ ତୀର୍ଥ ସ୍ଥାନମାନଙ୍କୁ ପରିବର୍ତ୍ତନ ପାଇଁ କୌତୁହଳ ମନ ନେଇ କିମ୍ବା ନିଜର ବଡିମା ଦେଖାଇବା ପାଇଁ ଯାଇଥାଆନ୍ତି । ଏକଥା ଏତେଦୂର ସତ ଯେ, ଏଇ ଲୋକମାନେ ଅଗଷ୍ଟାଇନ, ଗ୍ରୀଗୋରୀ ଏବଂ ଜେରୋମ୍ ପରି ବ୍ୟକ୍ତିଙ୍କ ରୋଷର ଶିକାର ହୋଇଛନ୍ତି । ଏବେବି ଆମେ କଣ ଦେଖୁଛେ ? ମୋ ପାଇଁ ଆଉ ଜଣଙ୍କୁ ମୁଁ କହିବାକୁ ଚାହୁଁଛି - 'କ୍ରସେଣ୍ଟ ଏବଂ କ୍ରସ' ପୁସ୍ତକର ଲେଖକ ଲେଖିଛନ୍ତି -

"It is a marvellous sight and one to make a spectator thoughtful to see those rival sectaries (American copts, Abyssinians and maronites) at Jerusalam, bending over the tomb whence all their hopes have risen, each setting his miserable yet complicated and intolerant heresy above the grand and general truth and exalting the bylaws of his sect above the magna charta of the soul" And again what can be said in defence of those who prostitutes the sacred mysteries to Mammon - who profane the very sepulchre with the foulest falcehood and blackest hypocrisy"

ଉପରୋକ୍ତ ଘଟଣାବଳୀରୁ ଆମେ ଯାହା ଦେଖୁଛେ, ଭାରତର ତୀର୍ଥଯାତ୍ରା ସହିତ ସେପରି କିଛି ଘୃର୍ଣ୍ଣିତ ବିଷୟ ସଂପୃକ୍ତ ନୁହେଁ । ଏତିକି କୁହାଯାଇପାରେ ଯେ, ସହନଶୀଳତାର ଆବଶ୍ୟକତା ଯଥେଷ୍ଟ ଅଛି, କାରଣ ବର୍ତ୍ତମାନ ସରକାର ଆଇନ ଦ୍ୱାରା ସମସ୍ତ ପ୍ରକାର ଅମାନବୀୟ ନିଷ୍ଠୁର ଘୃଣ୍ୟ ଲୋକାଚାର, ରକ୍ତରଞ୍ଜିତ ଆତ୍ମାହୁତିକୁ ସବୁଦିନ ପାଇଁ ବନ୍ଦ କରିବା ଦିଗରେ କାର୍ଯ୍ୟାନୁଷ୍ଠାନ କରିସାରିଲେଣି । ଓଡ଼ିଶାରେ ଜଣେ ଜଣାଶୁଣା ମିଶନାରୀ ମିଃ ପେଗ୍‌ସ ଲେଖିଛନ୍ତି, "ସରକାର ବର୍ତ୍ତମାନ ତାଙ୍କ ଶାସନାଧିନ ଭାରତୀୟ ମାନଙ୍କ ଧାର୍ମିକ ପ୍ରଥାରେ ହସ୍ତକ୍ଷେପ ନକରିବା ପାଇଁ ବଦ୍ଧପରିକର" ଯାହାକି ଅତ୍ୟନ୍ତ ସମ୍ମାନଜନକ । ତାଙ୍କ ମତାମତକୁ ମୁଁ ଭାବୁଛି ଭାରତୀୟ ବିଷୟରେ ଯେଉଁମାନଙ୍କର ଜ୍ଞାନ ଥିବ, ସେମାନେ ନିଶ୍ଚିତ ସମର୍ଥନ ଦେବେ । ମୋତେ ଲାଗୁଛି ଏହା ନ୍ୟାୟସଂଗତ ଏବଂ ଆଉ ଟିକିଏ ଅଧିକା କହିବାକୁ ଯାଇ କହିଲେ, ମାନବିକତା ଏବଂ ନ୍ୟାୟର ଅଲଂଘ୍ୟ ନୈତିକ ଦାୟିତ୍ୱକୁ ଯେତେବେଳ ପର୍ଯ୍ୟନ୍ତ ବିରୋଧରେ କରାଯାଇ ନାହିଁ ଲୋକମାନେ ତାଙ୍କର ଧର୍ମ ପାଳନ କିପରି ଭାବେ କରିବେ, କିପରି ଭାବେ ନକରିବେ ସେ ସଂପର୍କରେ ନିଷ୍ପତ୍ତି ନେବା ପାଇଁ ସରକାରଙ୍କର କୌଣସି ଅଧିକାର ନାହିଁ । ସତୀଦାହ ପ୍ରଥା ବିଲୋପ କଲାବେଳେ ଲର୍ଡ ଉଇଲିୟମ ବେଣ୍ଟିକ୍ ଏହି କଥା କହିଥିଲେ । (Preamble to act

xvii of 1892) ମୋ ମତରେ ଧାର୍ମିକ ନିର୍ଯାତନା ଦେବା ଅପେକ୍ଷା ହଇଜାରେ କ୍ଷତିଗ୍ରସ୍ତ ହେବା ଭଲ । ତୀର୍ଥ ଭ୍ରମଣରେ ଯିବା, ସ୍ୱର୍ଗାରୋହଣ ପାଇଁ ଏକ ପ୍ରକାର ପାସପୋର୍ଟ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ତାର ସମସ୍ତ ପାପରୁ ମୁକ୍ତି ପାଇବ ଏବଂ ସେ ବିଶ୍ୱାସ କରୁଥିବା ଦେବତାଙ୍କ କୃପା ଲାଭ କରିବା ବିଶ୍ୱାସ ନେଇ ସେ ଏହି ଯାତ୍ରା କରିଥାଏ । ସେ ବିଶ୍ୱାସ କରେ, ଏହାଦ୍ୱାରା ସେ କରୁଣାମୟ, ଦୟାମୟ ପ୍ରଭୁଙ୍କର ଶ୍ରଦ୍ଧା, ପ୍ରେମ ଲାଭ କରିବା ସଂଗେ ଦୈନନ୍ଦିନ ଜୀବନଚର୍ଯ୍ୟାରେ ତାର ଆଚରଣ ମଧ୍ୟ ତାଙ୍କର ଭାବନାରେ ନିୟନ୍ତ୍ରଣ ହୋଇଥାଏ । ଶାସ୍ତ୍ର କୁହେ, ତୀର୍ଥଯାତ୍ରା ପରଜନ୍ମ ପାଇଁ ସୁଖ, ଶାନ୍ତି ଆଣିଥାଏ । ଏପରି ବିଶ୍ୱାସ ଅନ୍ତତଃ ଅକପଟ, ଯଦିଓ ଯୁକ୍ତିସିଦ୍ଧ ନୁହେଁ, ଯାହାକୁ ନୈଷ୍ଠିକ ଜ୍ଞାନୋଦୟ ବୋଲି କୁହାଯାଏ ତାଙ୍କୁ ବିଶ୍ୱାସ କରିବାକୁ ଅନୁମତି ଦିଆଯାଉ ଏବଂ ସ୍ୱାଧୀନ ଭାବେ ସେଇ ବିଶ୍ୱାସ ନେଇ କାର୍ଯ୍ୟ କରୁ, କାରଣ ଜଣେ ଇଂରେଜ ଲେଖକ କହିବା ଅନୁସାରେ 'ଯଦି ଜଣେ ବ୍ୟକ୍ତି ତାର ନିଜସ୍ୱ ବିବେଚନା ଉପରେ ତାର ମତ ଗଠନ କରିବା ପାଇଁ ବାଧ୍ୟ; ଯଦି ନିଜସ୍ୱ ବିବେଚନା ପ୍ରୟୋଗ କରିବା, ଉଭୟ କର୍ତ୍ତବ୍ୟ ଆଉ ଅଧିକାର ହୁଏ, ପୂର୍ବରୁ ସେ କେଉଁ ପ୍ରକାର ଉପସଂହାରରେ ନିଶ୍ଚିତ ଭାବେ ପହଞ୍ଚୁଛି, ସେପରି ବିହିତ କରିବା ଅଯୌକ୍ତିକ, ଗୋଟିଏ ଉତ୍ତମ ଭୁଲ୍‌କୁ ଅପରାଧର ଛାପ ଦେବା ସଦୃଶ ।' ସତ କହିବାକୁ ଗଲେ, ତୀର୍ଥଯାତ୍ରା ଗୋଟିଏ ଲୋକାଚାର, ଯାହାକୁ କୌଣସି ପ୍ରକାର ନିଷିଦ୍ଧାଦେଶ ଦ୍ୱାରା ସପ୍ରେସ୍ କରାଯାଇ ପାରିବନି । ଏହା ଖରାପ ହୋଇପାରେ, ମାତ୍ର ତାର ମୂଳ ଜାତୀୟ ଅଜ୍ଞତା ପାଖରେ ରହିଛି । କାଲି ଯଦି ଆମେ ଏହି ଲୋକଚାରକୁ ଉଚ୍ଛେଦ କରିଦେବା, ତାର ସ୍ପିରିଟ୍ (ଭାବ) ତଥାପି ଉଜ୍ଜୀବିତ ହୋଇ ରହିବ । ସାଧାରଣ ଶିକ୍ଷା ଏବଂ ଜ୍ଞାନବୃଦ୍ଧି ହିଁ ଏହାର କେବଳ ମୂଳୋତ୍ପାଟନ କରିପାରିବ । ତୀର୍ଥଯାତ୍ରୀମାନଙ୍କ ବର୍ତ୍ତମାନ ଅବସ୍ଥାର ଉନ୍ନତି କଳ୍ପେ ଏବଂ ସେମାନଙ୍କୁ ନ୍ୟାୟ ଏବଂ ଉପଦେଶ ଦେବା ଛଳରେ ମୁଁ ମୋର ଏତିକି ମନ୍ତବ୍ୟ ଦେଇ କହିବାକୁ ଚାହେଁ ଯେ, ସରକାର 'ଯାତ୍ରୀକର' ବସେଇବେ କି ନାହିଁ ତାର ନିଷତ୍ତି ଶୀଘ୍ର ଗ୍ରହଣ କରିବା ଉଚିତ୍ ।

**ଶେଷ ମନ୍ତବ୍ୟ:**

ଏହି ରିପୋର୍ଟର ପୂର୍ବଭାଗମାନଙ୍କରେ ମୁଁ ବିଭିନ୍ନ ଭାବେ କହିଛି ଯେ, ଯଦି ରାଜ୍ୟ ରାଜସ୍ୱରୁ ପ୍ରତ୍ୟେକ ବର୍ଷ ୨ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇପାରନ୍ତା, ତେବେ ଜଗନ୍ନାଥ ଧାମକୁ ଯେଉଁ ଯାତ୍ରୀମାନେ ଆସୁଛନ୍ତି ଏବଂ ତୀର୍ଥଯାତ୍ରା ସହ ଯେଉଁ ପ୍ରକାର ଅସତକର୍ମ ଜଡିତ ହୋଇ ରହିଛି, ସେସବୁ ବହୁଳ ଭାବେ ଦୂର ହୋଇପାରନ୍ତା- ସେ ବିଶ୍ୱାସ ମୋର ଅଛି ।

କେହି କେହି କହିପାରନ୍ତି, ଏହା ପୁନରୁତ୍ପାଦକ କାମ ନୁହେଁ । ଯେଉଁମାନେ ଏପରି ମତ ଦିଅନ୍ତି, ମୁଁ ତାଙ୍କ ସଂଗେ ଏକମତ ନୁହେଁ । ଯଦି ଉପଯୁକ୍ତ ଭାବେ କାର୍ଯ୍ୟକାରୀ ହୁଏ, ମୁଁ ବିଶ୍ୱାସ କରେ, କର୍ମ, ଅର୍ଥ, ପ୍ରଗତି, ସର୍ବୋପରି ଲୋକଙ୍କ ମନରେ ଆନନ୍ଦ ଦେବାରେ ଏହା ବହୁଳ ଭାବେ ଜୀବନ ଯାତ୍ରାରେ ପୁନରତ୍ପାଦକ ହୋଇପାରିବ । ସେମାନଙ୍କ ଅକୁହା କୃତଜ୍ଞତା, ଇଚ୍ଛାକୃତ ଭାବେ ସେମାନଙ୍କୁ ବନ୍ଧୁତାପୂର୍ଣ୍ଣ ସହାୟତା ଦେବା ପାଇଁ ଆଗ୍ରହ ଏବଂ ସେମାନଙ୍କ ଦୁଃଖ ଦୁର୍ଦ୍ଦଶା ଦୂର କରିବା ପାଇଁ ଆନ୍ତରିକତା ସହ କାର୍ଯ୍ୟ କରୁଥିବା ସରକାରଙ୍କ ପ୍ରତି ସେମାନଙ୍କର ସଦ୍‌ଇଚ୍ଛା ସବୁବେଳ ପାଇଁ ରହିବ ।

ସରକାରଙ୍କ ଅଖଣ୍ଡ କ୍ଷମତା ଅଛି, ଚାହିଁଲେ କେନ୍ଦ୍ରୀୟ ରାଜସ୍ୱରୁ କିଛି ଅର୍ଥ ଏପରି କାର୍ଯ୍ୟ ପାଇଁ ନିୟୋଜିତ କରିପାରିବେ । ସେହିପରି ଲୋକମାନେ ମଧ୍ୟ ନିଜ ନିଜ ମଧ୍ୟରେ ସହାୟତା ବଢ଼ାଇବା ପାଇଁ ଆଗ୍ରହ ପ୍ରକାଶ କରିବା ଦରକାର । ଏସବୁ କାର୍ଯ୍ୟ ପାଇଁ ଓଡ଼ିଶା ଓ ବଙ୍ଗଳାର ଧନୀ ବ୍ୟକ୍ତିମାନେ ଆଗଭର ହେବା ଉଚିତ୍ । ସେମାନେ ସମସ୍ତେ ଏକତ୍ର ହୋଇ ତୀର୍ଥଯାତ୍ରାରେ ପୁରୁଷୋତ୍ତମ କ୍ଷେତ୍ରକୁ ଯିବାରେ ଯେଉଁସବୁ ପ୍ରତିବନ୍ଧକ ଦେଖାଦେଇଛି, ତୀର୍ଥଯାତ୍ରାକୁ ଯେପରି ଅପବ୍ୟବହାର କରାଯାଉଛି, ତାର ସିଧାସଳଖ ବିରୋଧ କରନ୍ତୁ । ଯେଉଁ ସମସ୍ତ କାର୍ଯ୍ୟ ସମ୍ମାନ, ଦାନଶୀଳତା ଏବଂ ସଭ୍ୟତାର ବିରୋଧୀ, ସେସବୁକୁ ସେମାନେ ସର୍ବସାଧାରଣରେ ସମର୍ଥନ ନକରନ୍ତୁ । ଶ୍ରଦ୍ଧାଳୁ ଭକ୍ତମାନଙ୍କ ଦୂର ଦେବସ୍ଥାନକୁ ତୀର୍ଥଯାତ୍ରାରେ ଯିବାର ସୁବିଧା ପାଇଁ ସେମାନେ ସଂଘ, ସମିତି ଗଠନ କରି ଏହି କାର୍ଯ୍ୟକୁ ପ୍ରୋତ୍ସାହନ ଦେବା ପାଇଁ ଆଗେଇ ଆସନ୍ତୁ । ଦେଶରେ ଲୋକମାନଙ୍କ ଶାରୀରିକ ଓ ନୈତିକ ଅଭିବୃଦ୍ଧି ପାଇଁ ସେମାନଙ୍କୁ ପ୍ରବର୍ତ୍ତାଇବା, ଦେଶୀୟ ସମିତିମାନଙ୍କର ପ୍ରମୁଖ ଉଦ୍ଦେଶ୍ୟ ହେଉ । ଆମ ଭିତରେ ବହୁତ ବ୍ୟକ୍ତି ଅଛନ୍ତି, ଯେଉଁମାନେ ସେମାନଙ୍କ ବଦାନ୍ୟତା ଲାଗି ନମସ୍ୟ । କଲିକତା ଓ ବମ୍ବେ ନଗରୀରେ ଏପରି ବ୍ୟକ୍ତିବିଶେଷ ଅଛନ୍ତି ଯେଉଁମାନେ ଧାର୍ମିକ ଦାନଶୀଳ କାର୍ଯ୍ୟ କରିବାକୁ ଉତ୍ସର୍ଗୀକୃତ, ଯେଉଁମାନଙ୍କ ସାହାଯ୍ୟ, ବଦାନ୍ୟତା, ବହୁ ଗରିବ, ଦୁଃଖୀଙ୍କ ଦୁଃଖ, ଦୁର୍ଦ୍ଦଶା ଓ ନିର୍ଦ୍ଧନତା, କେବଳ ଭାରତରେ ନୁହେଁ ଇଂଲଣ୍ଡରେ ମଧ୍ୟ ହରଣ କରିବାରେ ସାହାଯ୍ୟ କରିଛି । ଏହି ବ୍ୟକ୍ତମାନଙ୍କ ମହାନ ହୃଦୟତା, ସାତ ସମୁଦ୍ର ପାର ହୋଇ, ମାଞ୍ଚେଷ୍ଟର ସହରରେ ମଧ୍ୟ ପ୍ରଶଂସିତ ହୋଇଛି । ଓଡ଼ିଶାର ରାଜପଥରେ ହଜାର ହଜାର ତୀର୍ଥଯାତ୍ରୀମାନେ ଯେଉଁପରି ଭାବେ ଦୁର୍ଦ୍ଦଶାଗ୍ରସ୍ତ ହେଉଛନ୍ତି, ଚାହିଁଲେ ତାହା ସେମାନେ ଦୂର କରିପାରିବେ । ଯାତ୍ରୀମାନଙ୍କର ଦୟନୀୟ ଅବସ୍ଥା କଥା ମନେ ପଡିଲା ବେଳେ ମୁଁ ସୂଚେଇ ଦେବାକୁ ଚାହେଁ ଯେ, ସରକାର ବେଶ୍ କିଛି ଅର୍ଥ ସାହାଯ୍ୟ କରିବାକୁ ଇଚ୍ଛୁକ ଅଛନ୍ତି, ମୁଁ ଦେଶୀୟ ଧନୀବ୍ୟକ୍ତିମାନଙ୍କୁ ପ୍ରାର୍ଥନା କରୁଛି, ସେମାନେ ସେମାନଙ୍କର ଶକ୍ତି ମୁତାବକ ସାହାଯ୍ୟ ପ୍ରଦାନ କଲେ,

ଯାତ୍ରୀମାନଙ୍କ ସୁବିଧା ପାଇଁ ବହୁ ପ୍ରତୀକ୍ଷିତ ସଂସ୍କାର ଅଣାଯାଇପାରନ୍ତା । ସରକାରଙ୍କ ସହାୟକ ଅନୁଦାନ ମୁଁ ଆଶା କରୁଛି, ଭାରତର ବିଭିନ୍ନ ଅଞ୍ଚଳରୁ ଆସୁଥିବା ଜଗନ୍ନାଥ ଦର୍ଶନାଭିଳାଷୀଙ୍କୁ ରୋଗବ୍ୟାଧି ଦୁଃଖଦୁର୍ଦ୍ଦଶା, ଅଭାବ ଅସୁବିଧାରୁ କେତେକାଂଶରେ ଲାଘବ କରିପାରିବ କିନ୍ତୁ ଦେଶର ଜ୍ଞାନୀ, ଗୁଣି ବ୍ୟକ୍ତିମାନେ ଯଦି ସରକାରଙ୍କ ସାଙ୍ଗରେ ଏକତ୍ର ହୋଇ କାର୍ଯ୍ୟ କରନ୍ତେ, ତେବେ ଯାତ୍ରୀମାନେ ପଣ୍ଡା ପଢ଼ିଆରୀମାନଙ୍କ ବାକ୍‌ଚାତୁରୀ କବଳରୁ ଏବଂ ଅନ୍ଧବିଶ୍ୱାସରୁ ବହୁଳ ଭାବେ ମୁକ୍ତ ପାଆନ୍ତେ । ମୁଁ ଆଶାକରେ, ଦେଶୀୟ ସମାଜରୁ ପ୍ରତିଜ୍ଞାବଦ୍ଧ, ନିର୍ଭିକ ଯୁବକମାନେ ବାହାରିବେ, ଯେଉଁମାନେ ଏପରି କୁକାର୍ଯ୍ୟର ପ୍ରତିବାଦ, ପ୍ରତିରୋଧ କରିବାକୁ ପଛାଇବେ ନାହିଁ । ରେଗିନାଲ୍‌ଡ ହିବରଙ୍କ ଭାଷାରେ 'ପୁରୁଣା ମନ୍ଦିର ପରିସର ମଧ୍ୟରୁ କିଛି ରଦ୍ଦିକୁ ଓଳେଇ ବାହାର କରିଦେବା ।'

ଉଦାର ନୀତିର ପ୍ରଭାବରେ ଓଡ଼ିଶାର ସମ୍ବଳକୁ ସରକାର ଯଥେଷ୍ଟ ପରିମାଣରେ ପୂରଣ କରିବେ । ମୁଁ ଗଭୀର ବିଶ୍ୱାସ ଓ ପ୍ରତ୍ୟୟ ସହକାରେ ଏକଥା ଲେଖୁଛି । ଏହାର ଶେଷ ପର୍ଯ୍ୟାୟରେ ପହଞ୍ଚିବାକୁ ହେଲେ ସମୟ, କର୍ଯ୍ୟ ଏବ ଅର୍ଥ ଦରକାର । ଯେତେଶୀଘ୍ର ଅର୍ଥ ସହ କାର୍ଯ୍ୟ ହେବ, ସେତେ କମ୍ ସମୟ ଲାଗିବ । ଓଡ଼ିଶାର ଅତୀତ ଇତିହାସର ପ୍ରତ୍ୟେକ ପୃଷ୍ଠା ତାର ଦାରିଦ୍ର୍ୟତାକୁ ଧୋକା ଦେଇଆସିଛି ତଥାପି ତାର ସୀମା ଭିତରେ ଏକ ନୂତନ ଗୌରବ ଦୃଶ୍ୟ ହେବ ଯଦି ଅଧିକ ଆର୍ଥିକ ସାହାଯ୍ୟ ଏବଂ ବୈଜ୍ଞାନିକ କୌଶଳ ମାଧ୍ୟମରେ ତାର ବର୍ତ୍ତମାନର ସ୍ଥିତାକୃତିକ ଅବସ୍ଥା (Topographical) ଓ ସାମାଜିକ ବାଧାବିଘ୍ନକୁ ହଟାଇ ଦିଆଯାଇପାରିବ, ଯାହାକୁ ଲଂଘନ କରିବା ବଡକଥା ନୁହେଁ, କିନ୍ତୁ ସେଇସବୁ "ଲଗାତର ପ୍ରାକୃତିକ ଦୁର୍ବିପାକ ଏବଂ ଓଡ଼ିଆଙ୍କ ସୁଖସମୃଦ୍ଧି" ଭିତରେ ଯେତେପ୍ରକାର ଭିନ୍ନତା ଦେଖାଯାଉଛି, ତାକୁ ଶାଶ୍ୱତ କରି ରଖିଛି । ଏ ସଂପର୍କରେ ମୋର ଉତ୍ସାହକୁ ଲଗାମଛଡା ଉତ୍ସାହ ବୋଲି ଦୋଷାରୋପଣ କରିବାର ସମ୍ଭାବନା ଥିଲେ ମଧ୍ୟ ମୁଁ ସରକାରଙ୍କୁ ଅନୁରୋଧ କରୁଛି, ଓଡ଼ିଶା ପାଇଁ ଅଧିକ ଅର୍ଥ ଖର୍ଚ୍ଚ କରନ୍ତୁ । ଓଡ଼ିଶାବାସୀଙ୍କ ପାଇଁ ବୃହତ୍ତର ସମୃଦ୍ଧି ଓ ସୁଖର ଦିନ ଯାହା ସେମାନେ ଆଜି ପର୍ଯ୍ୟନ୍ତ ଜାଣିନାହାଁନ୍ତି, ଦେଖିନାହାଁନ୍ତି ସେସବୁ ସେମାନଙ୍କ ପାଇଁ ଗଚ୍ଛିତ ହୋଇଅଛି । ମୋର ସେ ଆଶା ଓ ବିଶ୍ୱାସ ଅଛି । ମୁଁ ସଂପୂର୍ଣ୍ଣ ବିଶ୍ୱାସ କରେ, ଏ ଜାତିର ସୁନ୍ଦର ଭବିଷ୍ୟତ ପାଇଁ ଏ ଦେଶରେ ସମସ୍ତ ପ୍ରକାର ମୌଳିକବସ୍ତୁ ଅଛି । ଯଦି ଏହି ରାଜ୍ୟ ପାଇଁ ଅର୍ଥ ବିବେକୋଚିତ ଭାବେ ଖର୍ଚ୍ଚ କରାଯାଏ, ତା'ହେଲେ ଏହାର ବାସିନ୍ଦାମାନଙ୍କ ମୁହଁରେ କେବଳ ହସ ଫୁଟିବନି, ସରକାର ମଧ୍ୟ ପ୍ରଭୁତ ଭାବେ ଲାଭବାନ ହେବେ ।

ଶିକ୍ଷାର ପ୍ରସାର, ସ୍ୱାଧୀନ ସମ୍ବାଦପତ୍ର, ରେଳଯାତ୍ରା, କେନାଲ, ଜଳସେଚନ ଏବଂ ପରିମଳ ବ୍ୟବସ୍ଥା ଉପରେ ଓଡ଼ିଶାର ସମୃଦ୍ଧି ନିର୍ଭର କରେ । ଅତୀତରେ ଏ ଜାତି

ଯେଉଁପରି ଭାବେ ଦାରୁଣ ଦୁର୍ଦ୍ଦିନ ସଂଗେ ସଂଗ୍ରାମ କରିଆସିଛି, ସେଥିରୁ ବାହାରି ଆସିବାକୁ ଆଉ କୌଣସି ସମ୍ଭାବ୍ୟ ବାଟ ଦେଖାଯାଉ ନାହିଁ । ଏ ସମସ୍ତ ବ୍ୟବସ୍ଥାକୁ ଯଦି ଜୋରଦାର ଭାବେ ଆଗକୁ ଠେଲି ନିଆଯିବ ତେବେ ଦୁଃଖ, ଦାରିଦ୍ର୍ୟତା ମଧ୍ୟରେ ମଧ୍ୟ ଏକ ନୂତନ ଜୀବନ ସଂଚାର ହେବା ସଂଗେ ଭବିଷ୍ୟତ ସଭ୍ୟତାର ଭିତ୍ତିପ୍ରସ୍ତର ସ୍ଥାପନ ହୋଇପାରିବ । ଐତିହାସିକ ଆଲିସନଙ୍କ ମତରେ "ବେଙ୍ଗଲ ଓ ମାଡ୍ରାସ ମଧ୍ୟରେ ଓଡ଼ିଶା ହେଉଛି ଡାଇରେକ୍ଟ ଲିଙ୍କ୍ - ଏକ ଛୋଟ ସଂଯୋଗ ହୋଇପାରେ ମାତ୍ର ମୂଲ୍ୟବାନ" ଯାହାକି ଆଜିପର୍ଯ୍ୟନ୍ତ, ଯେପରି ଦୃଷ୍ଟି ଆକର୍ଷଣ କରିବା କଥା, ସେପରି କରିପାରିନି । ଏହାର ଭୌଗୋଳିକ ସ୍ଥିତି ଏହାର ଗୁରୁତ୍ୱକୁ ସୂଚେଇ ଦିଏ । କିନ୍ତୁ ସାଧାରଣ ଜ୍ଞାନ ଥିବା ଲୋକଟିଏ ଆଙ୍ଗୁଳି ଦେଖାଇ କହିହେବ ଯେ, ଏ ରାଜ୍ୟରେ ସବୁଥାଇ କିପରି ଏ ରାଜ୍ୟ ଏକ ଅଦରକାରୀ ପଡିଆ ଭାବେ ପଡିଛି । ଏକଥା ଲେଖିଲା ବେଳେ ମୁଁ ସଚେତନ ଯେ ଭାରତ ବର୍ଷରେ ଓଡ଼ିଶାର ଗୋଟିଏ ଉତ୍ପନ୍ନକ୍ଷମ କୃଷି ପ୍ରଧାନ ରାଜ୍ୟ । ସଭ୍ୟତା ଦୃଷ୍ଟିରୁ ଏହି ରାଜ୍ୟ ମଧ୍ୟ ଅତ୍ୟନ୍ତ ପଛୁଆ । ଧାନର ଅମାର ଥିଲେ ଯେ, ଗୋଟିଏ ଦେଶ ପ୍ରକୃତରେ ଧନୀ ହୋଇଯାଏ, ଏକଥା ନୁହଁ । ଆୟରଲ୍ୟାଣ୍ଡରେ ଦୁର୍ଭିକ୍ଷ ପଡ଼ିବା ବେଳେ ଜଣେ ଲେଖକ 'ଏଡିଏନ୍‌ବରା ରିଭ୍ୟୁ'ରେ ଲେଖିଥିଲେ - 'ଯେଉଁମାନେ କେବଳ ଆଳୁ ଖାଇ ବଞ୍ଚୁଛନ୍ତି, ସେମାନେ ତ ଜୀବନ ନିର୍ବାହର ଶେଷ ସମୟରେ ପହଞ୍ଚି ଯାଉଛନ୍ତି ତାଙ୍କୁ ଯଦି ତାଙ୍କର ଅଭ୍ୟସ୍ତ ଖାଦ୍ୟରୁ ବଞ୍ଚିତ କରାଯିବ, ତା'ଠାରୁ ଆଉ କଣ ଶସ୍ତା ଜିନିଷ ମିଳିବ ଯେ, ସେମାନେ ତାର ଆଶ୍ରୟ ନେବେ ? ଖସି ଖସି, ସେମାନେ ଯେତେବେଳେ ସର୍ବନିମ୍ନ ପଏଣ୍ଟ୍‌ରେ ପହଞ୍ଚିଲେଣି, ତାଙ୍କ ପାଇଁ ଅନାହାର ଏବଂ ଭିକ୍ଷାବୃତ୍ତି ଛଡା ଆଉ କଣ ଥାଇପାରେ ।' ଏଇ କଥାଟି ବିଚିତ୍ର ଭାବେ ଓଡ଼ିଶା ପାଇଁ ପ୍ରଯୁଜ୍ୟ, କାରଣ ଏଠାରେ ପ୍ରଚୁର ପରିମାଣରେ ଧାନ ଉତ୍ପନ୍ନ ହୁଏ । ଲୋବଡେନ୍ ଆଳୁକୁ 'ଦାରିଦ୍ର୍ୟତାର ମୂଳ' ବୋଲି କହିଛନ୍ତି । ସେହି ଦୃଷ୍ଟିରେ ଦେଖିଲେ ଓଡ଼ିଶାର ଗର୍ବ ବୋଲି କୁହାଯାଉଥିବା 'ଧାନ' ମଧ୍ୟ ଦୁର୍ଭିକ୍ଷର ବହୁପ୍ରସୁ ଉତ୍ସ । ମୁକ୍ତ ଏବଂ ଉଦାର ହୃଦୟର ସରକାରୀ ନୀତି, ଯାହା ଓଡ଼ିଶା ଏପର୍ଯ୍ୟନ୍ତ ଜାଣିନି, ତାହାହିଁ କେବଳ ଏ ରାଜ୍ୟକୁ ପୁନର୍ଜିବିତ କରିବା ସଂଗେ ସମୃଦ୍ଧ କରିପାରିବ ।

ସାର ଷ୍ଟାଫୋର୍ଡ ନର୍ଥ କୋଟ୍ ପାର୍ଲାମେଣ୍ଟରେ ଘୋଷଣା କରିଛନ୍ତି, ବିଗତ ବର୍ଷର ରାଜସ୍ୱ, ଦେଢ଼ ମିଲିୟନ ଷ୍ଟର୍ଲିରେ ପହଞ୍ଚି ପାରିଛି । ମୁଁ ଆଶା କରୁଛି, ବର୍ଦ୍ଧିତ ରାଜସ୍ୱର କିୟତ ଅଂଶ ସମଗ୍ର ଓଡ଼ିଶାର ପରିମଳ ବ୍ୟବସ୍ଥା ଏବଂ ଓଡ଼ିଶାବାସୀଙ୍କ ଦୁଃଖଦୁର୍ଦ୍ଦଶା ଦୂର କରିବା ପାଇଁ ମୁଖ୍ୟତଃ ଜଗନ୍ନାଥ ପୁରୀକୁ ଆସୁଥିବା ରାସ୍ତାର ଉନ୍ନତି ପାଇଁ ସମର୍ପିତ କରାଯାଇ ପାରନ୍ତା । ସମଗ୍ର ଓଡ଼ିଶାରେ ତୀର୍ଥଯାତ୍ରୀମାନଙ୍କୁ ନେଇ ହଇଜା ରୋଗ, ଯେଉଁପରି ଭାବେ ମହାମାରୀ ରୂପ ଧାରଣ କରି ହଜାର ହଜାର ଯାତ୍ରୀଙ୍କ ମୃତ୍ୟୁର କାରଣ ହୁଏ, ମୋ

ମତରେ ଏହାର ଦୂରୀକରଣ ଓ ନିରାକରଣ ପାଇଁ ଅଧିକ ଆର୍ଥିକ ସମ୍ବଳର ବ୍ୟବସ୍ଥା କରିବା ସଂଗେ ଏକ ଦୃଢ଼ ସରକାର ନୀତି, ସବୁ ଦିଗକୁ ବିଚାରକରି ପ୍ରଣୟନ କରିବାର ଆବଶ୍ୟକତା ଅଛି । ଦୁର୍ଭିକ୍ଷ ଯେପରି ଭାବେ ମାଡିଆସି ସମାଜକୁ କବଳିତ କରେ, ରୋଗର ଜୀବାଣୁମାନେ ଯେପରି ସମୁଦ୍ର ଢେଉ ପରି ମାଡି ଆସିଥାନ୍ତି ଓ ଜନଜୀବନକୁ କବଳିତ କରିଥାନ୍ତି, ଏଥିପାଇଁ ବ୍ୟାପକ କାର୍ଯ୍ୟାନୁଷ୍ଠାନ ଦରକାର । କେତେକ ଦୃଷ୍ଟିରୁ ମୁଁ କହିବାକୁ ଚାହେଁ, ଯାହା ମଧ୍ୟ ନିଷ୍ଠୁର ସତକଥା 'ଓଡ଼ିଶା ତା ନିଜ ଦୁଃଖ ଦୁର୍ଦ୍ଦଶାକୁ ନିଜେ ଦେଖୁ, ତାର ପ୍ରତିକାର ମଧ୍ୟ ଓଡ଼ିଶା ଭିତରୁ ଏବଂ ଯେଉଁମାନେ ଏଥିରେ ଆକ୍ରାନ୍ତ ହେଉଛନ୍ତି, ସେଇମାନଙ୍କ ନିକଟରୁ ବାହାରୁ' ଯାହାକୁ ସୁସ୍ଥ ରାଜନୈତିକ ଅର୍ଥନୀତି ବୋଲି କୁହାଯାଏ, ତାରି ଉପରେ ସବୁ ପର୍ଯ୍ୟବେସିତ । କିନ୍ତୁ ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱ ଇତିହାସ ଆମକୁ ଶିକ୍ଷା ଦେଇଛି ଯେ, ଯଦିଓ ଓଡ଼ିଶାର ପ୍ରଶାସନିକ ଅଧିକାରୀମାନେ ଆଗ୍ରହର ସହ ଓଡ଼ିଶା, ଓଡ଼ିଶାବାସୀ ଏବଂ ଓଡ଼ିଶାକୁ ଆସୁଥିବା ଯାତ୍ରୀମାନଙ୍କ ମଙ୍ଗଳାର୍ଥେ କିଛି ଭଲ କାମ କରିଛନ୍ତି ମାତ୍ର ସେମାନଙ୍କର ସୁସ୍ଥ ରାଜନୈତିକ ନୀତି ପ୍ରତି ନିଷ୍ଠଭିଗତ ଆନୁଗତ୍ୟ, ଓଡ଼ିଶା ବର୍ତ୍ତମାନ ଯାହା ଦରକାର କରୁଛି ତା'ପାଇଁ କିଛି ଫଳପ୍ରଦ ହେଉନି । ବାହାର ସହାୟତା, ବର୍ତ୍ତମାନ ଓଡ଼ିଶାର ସବୁଠାରୁ ବଡ ଆବଶ୍ୟକତା । ବିଗତ ବର୍ଷମାନଙ୍କର ରାଜ୍ୟର ଇତିହାସ ଆମକୁ ମୂଲ୍ୟବାନ ଶିକ୍ଷାଦାନ କରିଛି ଯେ ନିଗୁଢ଼ ନୀତି ଯେତେ ଭଲ ହେଲେ ମଧ୍ୟ ସେଥିରେ ପରିବର୍ତ୍ତନର ଆବଶ୍ୟକତା ପଡିପାରେ । ଲୋକମାନେ ପ୍ରାକୃତିକ ବିପତ୍ତିର ଶିକାର ହୋଇପାରନ୍ତି ଯାହାର ପ୍ରତିକାର ତାଙ୍କ ପାଖରୁ ବହୁ ଦୂରରେ ଥିଲେ ମଧ୍ୟ ତାହା ତାଙ୍କ ଶାସକମାନଙ୍କ କ୍ଷମତା ପରିସର ବାହାରେ ନୁହଁ । କୁହାଯାଇପାରେ 'ଯେଉଁମାନେ ସିଧାସଳଖ ଭାବେ ଉପକୃତ ହେବେ, ସେମାନେ ତାର ମୂଲ୍ୟ ଦେବା ସମିଚୀନ ହେବ' ସତ ଏହାଠାରୁ ବଳି ଉପଯୁକ୍ତ ପ୍ରସ୍ତାବ ନଥାଇପାରେ କିନ୍ତୁ ଗୋଟିଏ ସରକାର ତାଙ୍କର ପ୍ରଜା, ଯେଉଁମାନେ କି ଦୁଃଖ ଦୁର୍ଦ୍ଦଶା, ଅଭାବ ଅନଟନ ମଧ୍ୟ ଦେଇ ଗତି କରୁଛନ୍ତି ସେମାନଙ୍କ ପାଖରୁ ଏପରି ଆଦାୟ କରିବା, ସାଧାରଣ ଦୃଷ୍ଟିରୁ ସମିଚୀନ ହେବନି ।

୧୮୬୬ ମସିହାରେ ଯେତେବେଳେ ଓଡ଼ିଶାର ଗରିବ ଲୋକମାନେ ମୁଠିଏ ଚାଉଳ କିଣିବାକୁ ସକ୍ଷମ ନଥିଲେ - ଚାଉଳ ଦର ଆକାଶଛୁଆଁ ଥିଲା - ଅର୍ଥ ଓ ଖାଦ୍ୟ ଯେତେବେଳେ ଅତ୍ୟାବଶ୍ୟକ ହୋଇପଡିଥିଲା, ସେତେବେଳେ ଦୂରାବସ୍ଥା ସଂପର୍କରେ ଅନୁସଂଧାନ କରିବା ତ ଦୂରକଥା ବରଂ ଯେଉଁମାନେ ଚାହିଁବେ ବାହାରୁ ସାହାଯ୍ୟ କରିବା ପାଇଁ କୁହାଯାଉଥିଲା । ନିଜକୁ ବଞ୍ଚାଇବା ନିଜ ଉପରେ ନିର୍ଭର କରିଥିଲା । ସରକାରଙ୍କ ଏଇ ନୀତି, କେତେଦୂର ପ୍ରଯୁଜ୍ୟ ହେଲା ତାର ଫଳାଫଳ ପ୍ରମାଣ କରିଦେଇ ସାରିଛି । ସେତେବେଳେ ଦୁର୍ଭିକ୍ଷ ପଡିଥିଲା ସତ ମାତ୍ର ସବୁବେଳେ ଓଡ଼ିଶା ଭାଗ୍ୟରେ ସେଇ ପ୍ରକାର ଦୁଃଖ ଦୁର୍ଦ୍ଦଶା, ରୋଗ, ମହାମାରୀ ଲାଗି ରହିଛି । କ୍ରମାଗତ ଅଭାବ ଓ ମାନସିକ ଦୁଃଶ୍ଚିନ୍ତାଗ୍ରସ୍ତ

ହୋଇ ଓଡ଼ିଶାର ଲୋକମାନେ ଏପରି ଏକ ଅବସ୍ଥାରେ ପହଞ୍ଚିଲେଣି ଯେ, ସେମାନେ ଆଉ ତାଙ୍କ ନିଜ ପାଇଁ କିଛି କରିବାକୁ ସକ୍ଷମ ନୁହଁନ୍ତି - ସେମାନଙ୍କ ଚତୁର୍ଦ୍ଦିଗରେ ଘେରି ରହିଥିବା ଅବସ୍ଥା ଉପରେ ତାଙ୍କର ଆଉ କର୍ତ୍ତୃତ୍ୱ ନାହିଁ । ସେମାନେ ଖୁବ୍‌ଶୀଘ୍ର ସରକାରଙ୍କ ସାହାଯ୍ୟ ଓ ଅନୁଦାନ ଉପରେ ସିଧାସଳଖ ନିର୍ଭର କରିବେ । ରାଜ୍ୟ ସରକାର କେବଳ ସେମାନଙ୍କର ପ୍ରଜ୍ଞା ଅନୁଦେଷ୍ଟା ନହୋଇ, ବିପଦ ବେଳେ ବନ୍ଧୁ ସାଜନ୍ତୁ, ତା'ନହେଲେ ଭବିଷ୍ୟତରେ ସେମାନଙ୍କ ଉପରେ ମହା ବିପତ୍ତି ପଡିବ; ଯେପରି ବିପତ୍ତି ପଡିଥିଲା ।

ଓଡ଼ିଶାକୁ ଆସୁଥିବା ତୀର୍ଥଯାତ୍ରୀଙ୍କ ସୁବିଧା ଏବଂ ପରିମଳ ବ୍ୟବସ୍ଥାକୁ ନିୟନ୍ତ୍ରଣ କରିବା ପାଇଁ ସରକାର ଆବଶ୍ୟକୀୟ ଅନୁଦାନ ପ୍ରଦାନ କରି ସ୍ଥାନୀୟ ସମ୍ବଳକୁ ବର୍ଦ୍ଧିତ କରନ୍ତୁ । ଆସନ୍ତା ୩/୪ବର୍ଷ ପାଇଁ ବର୍ଷକୁ ୧ ଲକ୍ଷ ଟଙ୍କା ଏ ବାବଦରେ ଆଲର୍ଟ୍ କରିବାକୁ ମୁଁ କହିଛି, ଯାହାକି ବେଶୀ କିଛି ନୁହଁ । ସରକାର ଏହି ଅର୍ଥକୁ ବଜେଟ୍‌ରେ ବରାଦ କରନ୍ତୁ, ପୁରୀ ସହର ପାଇଁ ଜଣେ ହେଲ୍‌ଥ ଅଫିସର ନିଯୁକ୍ତି ପାଆନ୍ତୁ, ଯେ ପୁରୀ କଲେକ୍ଟର, କଟକ କଲେକ୍ଟର ଓ କମିଶନର, ଓଡ଼ିଶାର ସମସ୍ତ ସିଭିଲ୍ ଅଫିସର ଏବଂ ସିଭିଲ୍ ସର୍ଜନମାନଙ୍କ ସଂଗେ ବିଚାର ବିମର୍ଶ କରି ଗୋଟିଏ ନିର୍ଦ୍ଦିଷ୍ଟ ସ୍କିମ୍ ପ୍ରସ୍ତୁତ କରିବେ, ଯେପରି ଏହି ଅଞ୍ଚଳର ପ୍ରତ୍ୟେକ ପଇସା ଉପଯୁକ୍ତ ଭାବେ ଭାରତର ଅସଂଖ୍ୟ ଯାତ୍ରୀମାନଙ୍କ ଅଶେଷ ସୁବିଧା ପାଇଁ ଖର୍ଚ୍ଚ କରାଯାଇପାରିବ ଏବଂ ସେମାନେ ଜଗନ୍ନାଥ ଧାମକୁ ଆସିବାରେ ଆନନ୍ଦ ଅନୁଭବ କରିବେ ।

ମୋର ଏଇ ରିପୋର୍ଟରେ କେବଳ ସ୍ୱାସ୍ଥ୍ୟରକ୍ଷା ଓ ପରିମଳ ବ୍ୟବସ୍ଥା ସଂପର୍କରେ ଉଲ୍ଲେଖ କରିବା ପରିବର୍ତ୍ତେ ସାଧାରଣ ରାଜନୈତିକ ଅର୍ଥନୀତି ଯେଉଁ ବିଷୟରେ ମୁଁ ଅଜ୍ଞ ବୋଲି ଧରାଯାଇପାରେ, ଉଲ୍ଲେଖ କରିଥିବା ଯୋଗୁଁ ଏହା ବିତର୍କ ମଧ୍ୟକୁ ଟଣାହେବା ସଂପର୍କରେ ମୁଁ ସଚେତନ । ଏକଥା ମନେ ରଖିବା ଉଚିତ୍ ଯେ, ଥରେ ନୁହଁ, ବହୁବାର ସରକାର ମୋତେ ଏ ସଂପର୍କରେ ପ୍ରଶ୍ନ ପଚାରିଛନ୍ତି । ବର୍ତ୍ତମାନ ଯେଉଁ ବିଷୟରେ ଆଲୋଚନା କରୁଛି, ଏ ସଂପର୍କରେ ମଧ୍ୟ ମୁଁ ମୋର ନୀତିଗତ ନିଷ୍ପତ୍ତି ଦେବାରେ ଦ୍ୱିଧା ପ୍ରକାଶ କରୁନାହିଁ ।

ଓଡ଼ିଶାର ତୀର୍ଥଯାତ୍ରୀମାନଙ୍କୁ ନେଇ ଯେଉଁସବୁ ଛତୁ ଫୁଟିଲା ଭଳି ଏବଂ ବିଶ୍ୱାସ କରାଯାଇଥିବା ଭଳି ସ୍କିମ୍‌ମାନ ପ୍ରସ୍ତୁତ କରାଯାଉଛି, ସେସବୁକୁ ପରିହାର କରି ଆନ୍ତର୍ଜାତିକ ସାନିଟାରୀ କନଫରେନ୍ସରେ ସ୍ୱାସ୍ଥ୍ୟ ଓ ପରିମଳ ସଂପର୍କରେ ଯେଉଁସବୁ ନିଷ୍ପତ୍ତି ଗ୍ରହଣ କରାଯାଇଛି, ସେସବୁକୁ କାର୍ଯ୍ୟକାରୀ କରିବା ପାଇଁ ଆଗ୍ରହ ପ୍ରକାଶ କରି ଆବଶ୍ୟକୀୟ ଆର୍ଥିକ ବ୍ୟବସ୍ଥା କରାଯାଉ । ଏହି ପରିପ୍ରେକ୍ଷୀରେ ମୁଁ ଅନୁଭବ କରୁଛି, ମୋର ଏହି ରିପୋର୍ଟ ଶେଷ କରିବା ପୂର୍ବରୁ କନଷ୍ଟାଣ୍ଟିନୋପୁଲ କନଫରେନ୍ସରେ ଯେଉଁ ନିଷ୍ପତ୍ତି ଗ୍ରହଣ

କରାଯାଇଛି, ଯାହାକୁ କି ମୁଁ ଅନ୍ତର ସହିତ ସମର୍ଥନ କରେ, ସେ ବିଷୟରେ ପଦେ ଉଦ୍ଧାର କରିବା ଶ୍ରେୟସ୍କର ହେବ ।

ପୃଥିବୀର ପ୍ରତ୍ୟେକ ରାଷ୍ଟ୍ରର ପ୍ରଶାସନ, ସେମାନଙ୍କ ଦୁଃଖଦ ଅନୁଭୂତିରୁ ହୃଦ୍‌ବୋଧ କଲେଣି ଯେ, ପ୍ରତିଷେଧକ ବ୍ୟବସ୍ଥା ପାଇଁ ଆର୍ଥିକ ବ୍ୟବସ୍ଥା ଅନିବାର୍ଯ୍ୟ ଯାହାକି ବିଶେଷ ଭାବେ ଫଳପ୍ରଦ ।

"The public administration of every country in the world has become convinced, by reason as well as by cruel experience, that the expenditure necessitated by preventive measures is eminently reproductive. This conviction will pass to masses and everybody will end by admitting with us, that L.O. hygienic measure is ever too costly and that the disbursement of even largest sums in carrying out measures of health is simply equal to laying out money at a very considerable interest. Enormous sums have been spent in bringing the means of destruction to perfection. can here be any hesitation to spend something for hygienic, which is the art of preservation, the art of sustaining life and wanding off disease and death?"

ମୋର କହିବା କଥା, ମୁଁ ଆଶା କରୁଛି ସରକାର ବିନା ଦ୍ୱିଧାରେ ମୁଁ ଯେଉଁ ଯୁକ୍ତି ଉପସ୍ଥାପନା କରିଛି, ତାର ସୁବିଚାର କରନ୍ତୁ ।





**ବଟକୃଷ୍ଣ ତ୍ରିପାଠୀ**

ଜନ୍ମ : ଅଗଷ୍ଟ ୨୩, ୧୯୪୦

ଶିକ୍ଷା : ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ସ୍ନାତକ

ବୃତ୍ତି : ଭାରତୀୟ ପୁଲିସ ସେବାରୁ ଅବସର

ଅବସର ପରେ : ଦିନଲିପି ଦୈନିକ ସମ୍ବାଦପତ୍ରର ମୁଖ୍ୟ ସମ୍ପାଦକ ଏବଂ ସମାଜ ସେବା

